# ଜାତୀୟ ଭାବଧାରା ଓ ଅନ୍ୟାନ୍ୟ ପ୍ରବନ୍ଧ



ଭୂପେନ୍ ମହାପାତ୍ର

# ଜାତୀୟ ଭାବଧାରା
# ଓ ଅନ୍ୟାନ୍ୟ ପ୍ରବନ୍ଧ

ପ୍ରଥମ ପ୍ରକାଶନ :

୨୦୦୨

ଲେଖକ :

**ଭୂପେନ ମହାପାତ୍ର**

ପ୍ରକାଶକ :

**ଅରୁଣକାନ୍ତି ଦାସ**

ରାଇଟର୍ସ ୱାର୍କସପ୍

ଉଦିତନଗର, ରାଉରକେଲା - ୧୨

ମୁଦ୍ରଣ :

**ରାଇଟର୍ସ ୱାର୍କସପ୍,**

ଉଦିତନଗର,

ରାଉରକେଲା - ୭୬୯ ୦୧୨

ମୂଲ୍ୟ - ଷାଠିଏ ଟଙ୍କା

**JATIYA BHABADHARA O...**
**ANYANNYA PRABANDHA**

FIRST EDITION :
2002

AUTHOR :
***BHUPEN MAHAPATRA***
PUBLISHER :
**ARUNKANTI DAS**
WRITERS' WORKSHOP
UDITNAGAR, ROURKELA - 12

PRINTER :
**WRITERS' WORKSHOP**
UDITNAGAR,
ROURKELA - 769 012

**PRICE : Rs.60/-**

## ସୂଚୀପତ୍ର

**ସମୟ -**



**ସଂବାଦ -**

**ସମାଜ -**



**ପ୍ରଗତିବାଦୀ-**



**ଅନୁପମ ଭାରତ -**



❑ ❑ ❑

# ନିଜ କଥା

୧୯୯୦ ମସିହାର କଥା । ମୁଁ ସେତେବେଳେ ଆସାମରେ । ସେଠି ଏପରି କେତେକ କଥା ମୁଁ ପ୍ରତ୍ୟକ୍ଷ କଲି ଯାହା ଓଡ଼ିଶାର ପାଠକମାନେ ଜାଣିବା ଉଚିତ ବୋଲି ମୁଁ ଭାବିଲି । ସେଇଠୁ ଆରମ୍ଭ ହେଲା ଏ ଲେଖା । ଆସାମର ସାହିତ୍ୟ, ସଂସ୍କୃତି, ରାଜନୀତି ଓ ସମାଜନୀତି ଉପରେ ମୋର ଲେଖା ଗୁଡ଼ିକ ଯେତେବେଳେ 'ସଂବାଦ' ଓ 'ରାଉରକେଲା ରିପୋର୍ଟର'ରେ ପ୍ରକାଶ ପାଇଲା ସେତେବେଳେ ମୁଁ ପ୍ରଚୁର ପାଠକୀୟ ଆଦୃତି ପାଇଲି । ଏ ସବୁ ମୋତେ ଖୁବ୍ ଉତ୍ସାହିତ କଲା । ଗଳ୍ପ, ଉପନ୍ୟାସ ଓ ନାଟକ ପରି ଏହା ଯେ ଏକ ଶକ୍ତିଶାଳୀ ମାଧ୍ୟମ ଏ କଥା ମୁଁ ଅନୁଭବ କଲି । ବୋଧହୁଏ ଏଇଥି ପାଇଁ ଖାଲି ଆମ ଦେଶର ନୁହେଁ ପୃଥିବୀର ବହୁ ଲେଖକ ସଂବାଦପତ୍ର ମାନଙ୍କରେ ନିୟମିତ ସ୍ତମ୍ଭ ଲେଖନ୍ତି । ଜଣେ ଗଳ୍ପ ଲେଖକ ହିସାବରେ ମୁଁ ସେତେବେଳେ ଅନୁଭବ କଲି ଯେ ଏବର ସମାଜ ବ୍ୟବସ୍ଥା, ଶାସନ ଓ ରାଜନୀତି ମଣିଷର ଜୀବନ ଜିଜ୍ଞାସା, ଯନ୍ତ୍ରଣା ଏ ସବୁକୁ ଲୋକଙ୍କ ସାମନାରେ ଟୋଳି ଧରିବାକୁ ହେଲେ ସାହିତ୍ୟର ମୌଳିକ ଶିଳ୍ପ କର୍ମଗୁଡ଼ିକ ଯଥେଷ୍ଟ ହେଉ ନାହିଁ । ପାଠକ ତା' ଅପେକ୍ଷା ଯଥେଷ୍ଟ ବେଶି ଆଶା କରୁଛନ୍ତି । ତା ସତ୍ତ୍ୱେ ଏ କଥା କହିବାକୁ ଦ୍ୱିଧା ନାହିଁ ଯେ ସଂବାଦ ପତ୍ରର ସ୍ତମ୍ଭ ଏବଂ ସାହିତ୍ୟର ସୂକ୍ଷ୍ମ କଳା କୌଶଳ ଭିତରେ ଗୋଟିଏ ବିରାଟ ବ୍ୟବଧାନ ରହିଛି । କିନ୍ତୁ ଏବର ବିଶିଷ୍ଟ ଲେଖକମାନେ ଯେଉଁ ପରି ଭାବରେ ଜାତୀୟ ସଂବାଦପତ୍ର ମାନଙ୍କରେ ସ୍ତମ୍ଭ ଲେଖୁଛନ୍ତି ସେଥିରୁ ମନେ ହେଉଛି ସେ ବ୍ୟବଧାନ ଧୀରେ ଧୀରେ ସଂକୁଚିତ ହୋଇ ଆସୁଛି । ତାହା ପାଠକୀୟ ରୁଚି ଉପରେ ପ୍ରଚଣ୍ଡ ଚାପ ସୃଷ୍ଟି କରୁଛି । ହୁଏତ ଏହା ସାହିତ୍ୟର ଏକ ନୂଆ ଦିଗ ଆଡ଼କୁ ଗତି କରୁଛି ।

ମୋର ଲେଖାଗୁଡ଼ିକ ଖୁବ୍ ଶାଣିତ ଏବଂ ବେଳେ ବେଳେ ନଗ୍ନ ହେଇ ଯାଉଛି ବୋଲି କେତେକ ଅଭିଯୋଗ ମୁଁ ପାଇଛି । ମୁଁ ତାକୁ ସ୍ୱୀକାର କରୁଛି । ସମାଜର ଶତ୍ରୁ ଉପରେ ଆକ୍ରମଣ କରିବାକୁ ହେଲେ ଅସ୍ତ୍ର ମଧ୍ୟ ସେମିତି ତୀକ୍ଷ୍ଣ ହୋଇଥିବା ଆବଶ୍ୟକ । 'ସାପ ମରିବ ନାହିଁ, ବାଡ଼ି ଭାଙ୍ଗିବ ନାହିଁ' କଥାରେ ମୁଁ ବିଶ୍ୱାସ କରେ ନାହିଁ । ମୁଁ ତେଣୁ ସ୍ତମ୍ଭ ଲେଖନରେ ଭାଷାର ସଂଯମତାରେ ଯତ୍ନ ନେଇ ନାହିଁ । ଏବଂ

ହୁଏତ ସେତକ କରି ନାହିଁ ବୋଲି ମୁଁ ଆନନ୍ଦର ସହିତ କହୁଛି ଯେ ମୋ ଲେଖାରେ ପ୍ରଶଂସା ଓ ନିନ୍ଦା (ବରଂ ତାକୁ ଗାଳି ଓ ଅଭିଶାପ ବୋଲି କହି ହେବ) ଅଜାଡି ହୋଇ ପଡ଼ିଛି । ଉଭୟ ନିନ୍ଦା ଓ ପ୍ରଶଂସାକୁ ମୁଁ ଚନ୍ଦନ ପରି ଦେହରେ ବୋଳି ଦେଇଛି ।

ଗତ ୧୨ ବର୍ଷ ଭିତରେ ବିଭିନ୍ନ ସଂବାଦପତ୍ର ଓ ପତ୍ର ପତ୍ରିକାରେ ଯେତିକି ସ୍ତମ୍ଭ ମୁଁ ଲେଖିଛି ତାର ସଂଖ୍ୟା ଦୁଇ ଶହରୁ କମ ହେବ ନାହିଁ । ମୋର ବଂଧୁ ଓ ପ୍ରିୟ ପାଠକମାନଙ୍କ ଅନୁରୋଧ କ୍ରମେ ଏ ସବୁକୁ ଏକତ୍ର କରିବା ଏକା ଥରକେ ସମ୍ଭବ ହୋଇ ପାରିଲା ନାହିଁ । ଅତି ନିଷ୍ଠୁର ଭାବରେ ସେ ସବୁକୁ ବାରମ୍ବାର ବଛା ବଛି କରି ନେଇ ପ୍ରକାଶକଙ୍କ ପାଖକୁ ଗଲାବେଳକୁ ତାଙ୍କ ବିକଳ ଆଖି ମୋତେ ପୁଣି ଥରେ ବ୍ୟସ୍ତ ବିବ୍ରତ କରି ପକାଇଲା । ଯା ହେଉ ଶେଷରେ ଆମେ ଗୋଟାଏ ରାଜିନାମାରେ ପହଞ୍ଚିଲୁଁ । ଆଜି ସେଇ ସବୁ ଲେଖା ପୁସ୍ତକାକାରରେ ପ୍ରକାଶ ପାଉଥିବା ଅବସରରେ ସେହି ସବୁ ସଂବାଦପତ୍ରର ସଂପାଦକମାନଙ୍କ ଠାରେ କୃତଜ୍ଞତା ସ୍ୱୀକାର କରୁଛି । ଏ ସବୁ କାମରେ 'ରାଇଟର୍ସ ୱାର୍କସପ୍' ର ଯୁବ ପରିଚାଳକ ଶ୍ରୀମାନ ଅରୁଣକାନ୍ତି ଦାସଙ୍କ ପ୍ରଚେଷ୍ଟାକୁ ଭୁଲିଗଲେ ଚଳିବ ନାହିଁ । ମୁଁ ତାଙ୍କ ଠାରେ ମଧ ମୋର ଶ୍ରଦ୍ଧା ନିବେଦନ କରୁଛି ।

- ଭୂପେନ୍ ମହାପାତ୍ର -

# ଅନେକ ଅସମାହିତ ସମସ୍ୟାର ଅନ୍ୟନାମ
# ଉତ୍କଳ ସମ୍ମିଳନୀ

ଏବେ ଏବେ ଗତ ନଭେମ୍ବର ୭ ଓ ୮ ତାରିଖ ଦୁଇଦିନ ଧରି ଉତ୍କଳ ସମ୍ମିଳନୀର ଏକ ବିଶେଷ ଅଧିବେଶନ ଝାରସୁଗୁଡ଼ା ଠାରେ ମହାସମାରୋହରେ ଅନୁଷ୍ଠିତ ହୋଇ ଯାଇଛି । ଝାରସୁଗୁଡ଼ା ପରି ଏକ ଉପାନ୍ତ ଅଞ୍ଚଳ ଯେଉଁଠି ଓଡ଼ିଆଙ୍କ ଅପେକ୍ଷା ଅଣଓଡ଼ିଆଙ୍କ ସଂଖ୍ୟା ଯଥେଷ୍ଟ ବେଶୀ ସେଠି ଉତ୍କଳ ସମ୍ମିଳନୀର ବିଶେଷ ଅଧିବେଶନ କଥା ଚିନ୍ତା କରିବା ନିଶ୍ଚିତପକ୍ଷେ ଏକ ଦୁଃସାହସିକ ପଦକ୍ଷେପ । ଯେ କୌଣସି ଲୋକ ଆଖି ବୁଜି କହି ଦେବ ସମ୍ମିଳନୀର ସଫଳତା ସେଠି ନିର୍ଭର କରେ କେବଳ ଅଣ ଓଡ଼ିଆଙ୍କ ଉପରେ । ଓଡ଼ିଆଙ୍କ ବୀର ଭୂଇଁରେ ଓଡ଼ିଆମାନେ ସେଠି ବେଞ୍ଚ ଦଖଲ କରି ନ ପାରି ପଛ ବେଞ୍ଚରେ ନୀରବରେ ବସିଥାନ୍ତି । ଅତିଥିଙ୍କ ସାଦର ଅଭ୍ୟର୍ଥନା ଠାରୁ ଆରମ୍ଭ କରି ଖିଆପିଆର ଆୟୋଜନ ଏବଂ ସର୍ବୋପରି ମଞ୍ଚମଣ୍ଡନ ପର୍ଯ୍ୟନ୍ତ ସବୁରି ମୂଳରେ ଅଣଓଡ଼ିଆମାନେ ଜାଗା ଆବୋରି ବସି ଥାଆନ୍ତି ।

ଏଥିରୁ ଆମେ କେମିତି କହିବା ସେମାନଙ୍କର ଓଡ଼ିଆ ମାଟି ପ୍ରତି ମମତା ନାହିଁ ? କେମିତି କହିବା ସେମାନଙ୍କର ଆମ ଭାଷା ପ୍ରତି ଶ୍ରଦ୍ଧା ନାହିଁ ? ସମ୍ମାନ ନାହିଁ ? ଯେଉଁମାନେ ବାହାରୁ ଆସି ମଧ୍ୟ ଆମ ଭାଷା ଓ ସାହିତ୍ୟକୁ ଆପଣାର କରି ନେଇଛନ୍ତି, ଆମର 'ଭାଇ ଭାଇ' ଡାକରେ ଯେଉଁମାନେ 'ଓ' କରି ପାରିଛନ୍ତି ସେମାନଙ୍କୁ ଆମେ 'ପ୍ରଥମ ଓଡ଼ିଆ'ର ମାନ୍ୟତା କାହିଁକି ନ ଦେବା ? ମୁଁ ଭାବୁଚି ଆମେ କଥାଟାକୁ ଏବେ ଏମିତି ଭାବରେ ଭାବିବାର ବେଳ ଆସିଚି ।

ଉତ୍କଳ ସମ୍ମିଳନୀରେ ପହଞ୍ଚିବା ପରେ ଏହା ହିଁ ଥିଲା ମୋର ପ୍ରଥମ ଅନୁଭବ । କଥାଟାକୁ ଆଉ ଟିକିଏ ଗଭୀର ଭାବରେ ଚିନ୍ତା କରାଯାଉ । ପୃଥିବୀରେ ଯେଉଁଠି ଭୂଗୋଳର ସୀମାରେଖା ଅଙ୍କିତ ହେଇଚି ସେଠି ସୀମାର ଦୁଇ ପାଖର କେବଳ ମଣିଷ ନୁହେଁ, ପଶୁମାନଙ୍କ ଭିତରେ ମଧ୍ୟ ଗୋଟାଏ ବୁଝାମଣା ରହି ଆସିଚି । ଗାର କାଟି ବା ପାଚେରି ଉଠେଇ ପୃଥିବୀରେ କେବେ ମଣିଷକୁ ମଣିଷ ଠାରୁ ଅଲଗା କରାଯାଇ ନାହିଁ । କଳ୍ପନାର ସେ ସୀମାରେଖା ସବୁବେଳେ କଳ୍ପନାରେ ହିଁ ରହି ଯାଏ । ମଣିଷ ମଣିଷ ଭିତରେ ସମ୍ପର୍କ ଯେମିତି ଥାଏ ସେମିତି ରହି ଯାଏ । ତାକୁ କେହି ବଦଳେଇ ପାରେନା ।

ଝାରସୁଗୁଡ଼ା ସମ୍ମିଳନୀରେ ପ୍ରଥମେ ତାହା ହିଁ ଦେଖିଲି । ଯେଉଁମାନଙ୍କୁ ଆମେ ବିଦେଶୀ କହୁଛୁଁ, ମନେ ମନେ ନାକ ଟେକୁଛୁଁ, ସେମାନେ ଆସି ଆମ କାମ ବେଳେ

ଆମ ପାଖରେ ସାହାଯ୍ୟର ହାତଟିଏ ବଢ଼େଇ ଦେଇଛନ୍ତି । କିଏ ଓଡ଼ିଆ ? କିଏ ଅଣଅଡ଼ିଆ ? ଭାଷାରୁ ଓଡ଼ିଆ ଅଣଓଡ଼ିଆ ଚିହ୍ନା ଯାଏନି । ଚିହ୍ନାଯାଏ ସେମାନଙ୍କର ଆନ୍ତରିକତାରୁ । ହୃଦୟ ଦିଆନିଆରୁ । ତେଣୁ ଯେଉଁମାନେ ଆମ ମାଟିରେ ରହି ଆସିଛନ୍ତି, ଆମ ସୁଖ ଦୁଃଖରେ, ହାନିଲାଭରେ ଆମ ପାଖରେ ଠିଆ ହେଇଚନ୍ତି, ସେମାନେ ସମସ୍ତେ ଓଡ଼ିଆ ।

ଦୀର୍ଘ ଦୁଇ ଦିନର ସମ୍ମିଳନୀରେ ମୁଁ ପୂରାପୂରି ନିଜକୁ ମିଶାଇ ଦେଲି । ଗୋଷ୍ଠୀ ଆଲୋଚନା ଠାରୁ ଆରମ୍ଭ କରି ବିଶେଷ ଅଧିବେଶନ ଯାଏ ସବୁ ସ୍ତରରେ ନିଜକୁ ହଜାଇ ଦେଲି । ପ୍ରତ୍ୟେକଙ୍କ ସହିତ ମିଶିଲି । ଆଲୋଚନା କଲି । ସଭାର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ନଟୁ ପରି ଘୂରି ଆସିଲି । ଏପରିକି ଅନେକଙ୍କ ସହିତ ଆରମ୍ଭରୁ ଆଜିଯାଏ ସମ୍ମିଳନୀର ଅତୀତ ଓ ବର୍ତ୍ତମାନ କଥା ମଧ ବିଚାର ଆଲୋଚନା କଲି । ଯାହା ଦେଖିଲି ସମଗ୍ର ଅଧିବେଶନର ଆଲୋଚନାର ବିଷୟବସ୍ତୁ ଥିଲା ଗୋଟିଏ । ଗୋଟିଏ ପ୍ରକାର । ତା'ର ପ୍ରକାରଭେଦ ଏକରୁ ଅଧିକ ହେବ ନାହିଁ । ଅର୍ଥାତ ସବୁକୁ ମିଶେଇ ଦେଲେ ତା'ର ନିର୍ଯାସ ହେବ ଗୋଟିଏ ।

''ଆମର ଓଡ଼ିଆତ୍ୱ କମି ଯାଉଚି । ଭାଷା ଓ ସାହିତ୍ୟ ମରି ମରି ଆସୁଚି । ଆମେ ଦୁର୍ବଳ ହେଉ ଯାଉଚେ । ଆମ ଦେହ ଖଣ୍ଡ ବିଖଣ୍ଡ ହେଇ ଯାଉଚି । ଅନ୍ୟମାନେ ଆମକୁ ଚାପି ଦେଉଚନ୍ତି । ଆମ ସଂସ୍କୃତିକୁ ହତ୍ୟା କରୁଚନ୍ତି ଇତ୍ୟାଦି ଇତ୍ୟାଦି । ଏବଂ ଶେଷରେ 'ସରକାର ଆମ ପାଇଁ କିଛି କରୁନାହିଁ' ।''

ଏ ସବୁର ବିଷଦ ବ୍ୟାଖ୍ୟା କରିବାକୁ ଗଲେ ଉତ୍କଳ ସମ୍ମିଳନୀର ଜନ୍ମ ଠାରୁ(୧୯୦୩) ଆଜି ପର୍ଯ୍ୟନ୍ତ ସବୁ ପ୍ରସ୍ତାବକୁ ଏକାଠି କରିବାକୁ ହେବ । ସମ୍ମିଳନୀର ନେତୃମଣ୍ଡଳୀର ସମସ୍ତଙ୍କ ଭାଷଣ ମିଶେଇ ତା'ର ସାରାଂଶ ବାହାର କରିବାକୁ ହେବ । ଶେଷରେ ତା'ର କ୍ରମ ପରିଣାମର ଧାରା ଉପରେ ମଧ ଆଲୋକପାତ କରିବାକୁ ପଡ଼ିବ । ଯଦି ଅତି ନିଷ୍ଠୁର ଭାବରେ ନିରପେକ୍ଷ ଆଲୋଚନାଟିଏ କରିବାକୁ ହୁଏ ତେବେ ଦେଖାଯିବ ଯେ, ମୂଳରୁ ଆଜିଯାଏ ସବୁ ନେତାଙ୍କ ଭାଷଣ ଏବଂ ଗୃହୀତ ସମସ୍ତ ପ୍ରସ୍ତାବର ସ୍ୱର ଓ ସ୍ୱପ୍ନ ଗୋଟିଏ । ଆଜି ପ୍ରାୟ ଶହେ ବର୍ଷ ଭିତରେ ସେ କଥାବସ୍ତୁର ବା ସେ ପ୍ରସ୍ତାବଗୁଡ଼ିକର ସାମାନ୍ୟତମ ପରିବର୍ତ୍ତନ ମଧ ହେଇନାହିଁ । ଯାହା ଦିନେ ମଧୁସୂଦନ କହିଥିଲେ, ସେଦିନ ମହା ସଚିବ ଶ୍ରୀ ବସନ୍ତ ପାଣିଗ୍ରାହୀ ମଧ ସେଇକଥା କହିଲେ । ସେଦିନ ମଧୁବାବୁ ଯେମିତି ବାଷ୍ପାକୁଳିତ କଣ୍ଠରେ ବିଶାଳ ଜନତାକୁ ଆହ୍ୱାନ ଦେଉଥିଲେ, ଆଜିର ମହା ସଚିବଙ୍କ କଣ୍ଠ ସେମିତି ଥରଥର ହୋଇ ଉଠିଥିଲା । ଖାଲି ସେତିକି ନୁହେଁ ସେଦିନ ଏହି ସମ୍ମିଳନୀରେ ଭାଷଣ ଦେଲାବେଳେ ପଣ୍ଡିତ ଗୋପବନ୍ଧୁ କି ପାରଳା ମହାରାଜା ଯେମିତି ଓ ଯାହା କହିଥିଲେ ଆଜି ବିଶିଷ୍ଟ କବି ଓ ଲେଖିକା 'ସମାଜ'ର ସମ୍ପାଦିକା

ଶ୍ରୀମତୀ ମନୋରମା ମହାପାତ୍ର ମଧ୍ୟ ସେଇକଥା ଆଉଥରେ ଆଉଡାଇ ଆଣିଲେ । ସମୟର ପାର୍ଥକ୍ୟ ଯା ଭିତରେ ଅନେକ ବଢ଼ି ଯାଇଥିଲେ ମଧ୍ୟ, ଆମର ସ୍ଥିତି ଓ ପରିସ୍ଥିତିରେ ପର୍ଯ୍ୟାପ୍ତ ପରିବର୍ତ୍ତନ ଦେଖା ଯାଇଥିଲେ ମଧ୍ୟ ମୋର ମନେହେଲା ଏ ଦୁଇଟି ସ୍ୱର ଏକାପରି ।

ଏଥିରୁ ଗୋଟିଏ କଥା ଅନ୍ତତଃ ସ୍ପଷ୍ଟ ହେଇଯାଉଚି ଯେ ଗତ ପ୍ରାୟ ଶହେ ବର୍ଷ ଭିତରେ ଆମେ ଗୋଟିଏ ପାଦ ମଧ୍ୟ ଆଗକୁ ଯାଇ ନାହୁଁ । କିନ୍ତୁ ଏ ଦୁଇଟି ଭିତରେ ପାର୍ଥକ୍ୟ ଏତିକି ଯେ, ସେତେବେଳେ ଆମେ ଆମର ଗୁହାରି ସବୁକୁ ଉପସ୍ଥାପିତ କରୁଥିଲୁଁ ବିଦେଶୀମାନଙ୍କ ପାଖରେ, ଯେଉଁମାନେ ଆମର, ନା ଭାଷା ବୁଝୁଥିଲେ ନା ଆମ ପ୍ରତି ସେମାନଙ୍କର ଦରଦ ଥିଲା । ଆମେ ସେତେବେଳେ ଯାହାକୁ ଗୁହାରି କରୁଥିଲୁଁ ସେମାନେ ଆସିଥିଲେ ବେପାର ବଣିଜ କରି ଆମକୁ ଲୁଟ୍ କରିବାକୁ, ଆମକୁ ଶୋଷି କେଳେଇ ଖାଇବାକୁ, ଆମକୁ ଶାସନ କରି ସ୍ଥାୟୀ ଭାବରେ ରହିବାକୁ ସେମାନେ ଆସି ନ ଥିଲେ । କିନ୍ତୁ ଆଜି ଆମେ ଯାହାକୁ ଗୁହାରି କରୁଚୁଁ ସେମାନେ ଆମର ନିଜ ଲୋକ । ଆମେ ତାଙ୍କୁ ଆମକୁ ଶାସନ କରିବାକୁ ସିଂହାସନରେ ବସେଇଚୁଁ । ଆମର ଭଲ ମନ୍ଦ ବୁଝିବାକୁ ଆମେ ତାଙ୍କୁ ଅଧିକାର ଦେଇଚୁଁ ।

ଏ ଦୁଇ ପ୍ରକାର ଶାସକଙ୍କ ଭିତରେ ଫରକ ଏତିକି, ଯେଉଁମାନେ ବିଦେଶୀ ସେମାନେ ଆମର ଗୁହାରି ଶୁଣିଲେ । ଆମ ରାଜ୍ୟଟାକୁ ଅଲଗା କରି ଆମକୁ ଦେଇ ଦେଲେ । କିନ୍ତୁ ଯେଉଁମାନେ ଆମ ନିଜ ଲୋକ ସେମାନେ ଆଜିଯାଏ ଖଣ୍ଡେ ଗାଁକୁ ମଧ୍ୟ ଆଣି ଆମ ମାଟି ସହିତ ମିଶେଇ ପାରିଲେନି । ସେମାନେ ଏ ଅନ୍ୟାୟ ବିରୋଧରେ କିମ୍ବା ଆମ ପ୍ରସ୍ତାବ ସପକ୍ଷରେ ଟିକିଏ ସ୍ୱର ଉତ୍ତୋଳନ ମଧ୍ୟ କରି ପାରିଲେନି ।

ଆଜି ଯଦି ମଧୁସୂଦନ ବଞ୍ଚି ଥାଆନ୍ତେ, ଫକୀରମୋହନ ବଞ୍ଚି ଥାଆନ୍ତେ, ପାରଳା ମହାରାଜା ଜୀବିତ ଥାଆନ୍ତେ, କ'ଣ କହି ଥାଆନ୍ତେ ଆମ ନେତାମାନଙ୍କୁ ? କେଉଁ ଭାଷାରେ ସେମାନଙ୍କୁ ସମ୍ବୋଧିତ କରି ଥାଆନ୍ତେ ସେମାନଙ୍କର ଏ ନୀରବ ନିଥର ନପୁଂସକତାକୁ ଦେଖି ? ଆଉ କଅଣ ବା କହିଥାନ୍ତେ ଆମକୁ ? କଅଣ କହନ୍ତେ ଆମର ଏ କାପୁରୁଷତାର କ୍ରନ୍ଦନକୁ ଦେଖି ? ସେମାନେ କଅଣ ଆମକୁ ସେମାନଙ୍କର ଯୋଗ୍ୟ ଦାୟାଦ ହିସାବରେ ସ୍ୱୀକୃତି ଦେଇ ଥାଆନ୍ତେ ? ହୁଏତ ସେମାନେ କହି ଥାଆନ୍ତେ, ଆଉ କେତେ ବର୍ଷ ଲାଗିବ ? ଶତାବ୍ଦୀ ବିତିବାକୁ ବସିଲାଣି । ତମେ ଗୋଟିଏ ପାଦ ମଧ୍ୟ ଆଗେଇ ପାରିଲନି । ଯୋଉ ପାଦ ଉଠେଇଥିଲ ତାକୁ ମଧ୍ୟ ତଳେ ଥାପି ପାରିଲନି । ତେବେ ଆଗାମୀ ଶତାବ୍ଦୀରେ ତମେ ଏ ମାଟିରେ ଠିଆହୋଇ ପାରିବ ତ ? ଥିବ ଏ ମାଟି ତମ ପାଦ ତଳେ ? ଖସି ଯାଇ ନ ଥିବ ଆଉ ଏକ ଅଜଣା ଜାଗାକୁ ?

ଆହୁରି କହନ୍ତେ, ସେବେଠୁ ତ ପାଟି କରୁଥିଲି, ନିଦ ପଛେ ନ ଭାଙ୍ଗୁ ଆଖିଟା ଖୋଲ । ସେତକ ମଧ୍ୟ ହେଲାନାହିଁ । ସେ କୁମ୍ଭକର୍ଣ୍ଣର ନିଦ ତୋ ଆଖିପତାକୁ ଜାବୁଡି

ଧରିଚି । ସେ ପତା ଆଉ ଫିଟିବନି କେବେ ? ତେବେ କଅଣ ପାଇଁ ଏ ଆସ୍ଫାଳନ ? କଅଣ ପାଇଁ ଏ ପ୍ରଦୀପ ପ୍ରଜ୍ୱଳନ ? ସାରା ରାଇଜଟା ଅନ୍ଧାର ଘୋଟି ଯାଇଥିଲା ବେଳେ ତୋର ଏ ପ୍ରଦୀପ ତୋତେ କିପରି ସାହାଯ୍ୟ କରି ପାରିବ ?

ମୁଁ ଜାଣେ ଆମ ପାଖରେ ତା'ର କୌଣସି କୈଫିୟତ ନାହିଁ ।

'ଉତ୍କଳ ସମ୍ମିଳନୀରେ ସେଦିନ ଯେଉଁମାନେ ଭାଷଣରେ ଶିହରଣ ସୃଷ୍ଟି କଲେ, ସେମାନେ ବିଶେଷ କରି ଯାହାସବୁ କହିଲେ ତା'ର ସାରାଂଶ ହେଉଛି, ଆମ ସଂସ୍କୃତି ମରି ଯାଉଛି, ଆମ ଚିନ୍ତା ଓ ଚେତନାରେ ପ୍ରହାର କରି ଆମ ଗର୍ବ ଓ ଗୌରବକୁ କ୍ଷୁର୍ଣ୍ଣ କରି ଦିଆ ଯାଉଛି, ଉତ୍କଳୀୟ ପୂଜା ପାର୍ବଣକୁ ଭୁଲି ଅନ୍ୟଆଡୁ ଆସୁଥିବା ସଂସ୍କୃତିକୁ ଆଦରି ନିଆ ଯାଉଛି ଏବଂ ଜାଣିଶୁଣି ଅନ୍ୟ ଭାଷାକୁ ଆମ ଉପରେ ଲଦି ଦିଆ ଯାଉଛି, ଆମ ଭାଷାର ସ୍କୁଲ ସବୁକୁ ବନ୍ଦ କରି ଦିଆ ଯାଉଛି ଏବଂ ଏଥିପାଇଁ ସରକାର ମୋଟେ କିଛି କରୁ ନାହାଁନ୍ତି ଇତ୍ୟାଦି ।

ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ପାଇଁ ବେଶ୍ କେତେକ ରାଜନୈତିକ ପ୍ରଶ୍ନ ମଧ୍ୟ ଉଠିଲା । ବ୍ୟକ୍ତିଗତ ରାଜନୀତି ଭିତରେ ସେ ସବୁ ପ୍ରଶ୍ନଗୁଡ଼ିକ ସେମାନଙ୍କର ଅସ୍ତିତ୍ୱ ଜାହିର କରିବାକୁ କେତେଦୂର ସହାୟକ ହେବ ସେ କଥା ମୁଁ ଜାଣେନା । କିନ୍ତୁ ସବୁଠୁ ବେଶୀ କୌତୂହଳ ସୃଷ୍ଟି ହେଲା ଯେତେବେଳେ ଅଧିବେଶନରେ ଯୋଗ ଦେଇଥିବା ଜଣେ ମନ୍ତ୍ରୀ ଦୃପ୍ତ କଣ୍ଠରେ ଘୋଷଣା କରି କହିଲେ, ''ମୁଁ ଆସନ୍ତା ଅଧିବେଶନକୁ ଯଥାସାଧ୍ୟ ସାହାଯ୍ୟ କରିବି'' । ଗୁଞ୍ଜରଣ ସୃଷ୍ଟି ହେଲା ସଭାସ୍ଥଳରେ । ଲୋକେ ସ୍ୱାଭାବିକ ଭାବେ ପ୍ରଶ୍ନ କଲେ, ତୁମେ ତ ରାଜସ୍ୱ ମନ୍ତ୍ରୀ ଥିଲାବେଳେ ଆମ କଥାକୁ ମୁହଁମୋଡି ଦେଇଥିଲ, ଗାଁ କେଇଟାର ସର୍ଭେ ମଧ୍ୟ କରି ପାରିଲନି । ଆଜି ତୁମେ ଆମକୁ କଅଣ ସାହାଯ୍ୟ କରିବ ? ଆଉ କେହି କେହି କହିଲେ ଏବେ ତୁମେ ଗୋଟାଏ ମୁତ୍‌ଫରକା ଡ଼ିପାର୍ଟମେଣ୍ଟ ଦାୟିତ୍ୱରେ ଅଛ । ତାକୁ ବି ସମ୍ଭାଳି ପାରୁନ । ସେଥିପାଇଁ ଏବେ ଜନତାର ଅସନ୍ତୋଷ ବଢି ବଢି ଚାଲିଛି । ତମେ ସେଠି ଲୋକଙ୍କୁ ନ୍ୟାୟ ଦେଇ ପାରୁ ନ ଥିଲା ବେଳେ ଆମ ପାଇଁ କଅଣ କରି ପାରିବ ? 'ଉତ୍କଳ ସମ୍ମିଳନୀ' ନାଁ ରେ ସେ ଟ୍ରେନ୍‌ଟା ବନ୍ଦ ହୋଇ ଯାଇଥିଲା ବେଳେ ତମେ ସେଇ ନାମରେ ଖଣ୍ଡେ ବସ୍ ଚଳାଇବ କି ?

କିନ୍ତୁ ସେ ପ୍ରଶ୍ନସବୁ ପ୍ରଶ୍ନରେ ରହିଗଲା । କାରଣ ମନ୍ତ୍ରୀଙ୍କ ପ୍ରତିଶ୍ରୁତିକୁ ଆଜିକାଲି ସାଧାରଣ ଭାବେ ଏକ ମୂଲ୍ୟହୀନ କଥା ବୋଲି ସମସ୍ତେ ଗ୍ରହଣ କଲେଣି । ତେଣୁ ତା'ର କିଛି ଗୁରୁତ୍ୱ ନଥାଏ ।

ଭାଷା ଓ ସଂସ୍କୃତି ଉପରେ ଦାବିଗୁଡ଼ିକ ସାଧାରଣତଃ ଚିନ୍ତା ଉଦ୍ରେକ କରନ୍ତି । ସତକଥା କହିବାକୁ ଗଲେ ଭାଷା ଓ ସଂସ୍କୃତିର ସୁରକ୍ଷା ପାଇଁ ସରକାରଙ୍କ ଭୂମିକା

ଗୌଣ । ସେ ଭୂମିକା ଟିକକ କେବଳ ସରକାରୀ ସ୍ତରରେ ଭାଷାକୁ ଗ୍ରହଣ କରିବା ଭିତରେ ସୀମାବଦ୍ଧ । ତା'ଠୁ ଅଧିକା ଗୋଟାଏ ସରକାର ଆଉ କଅଣ କରି ପାରିବ ?

କଥାରେ ଅଛି, 'ଘୋଡାକୁ ଜଣେ ବାନ୍ଧି ଆଣି ପୋଖରୀ କୂଳରେ ଛିଡା କରେଇ ପାରେ । କିନ୍ତୁ ତାକୁ ପାଣି ପିଇବାକୁ ବାଧ କରି ପାରିବ ନାହିଁ ।' ସେମିତିକା କଥା ଇଏ । ଲୋକେ ଯଦି ଓଡ଼ିଆ ମିଡିଅମ୍ ସ୍କୁଲକୁ ତାଙ୍କ ପିଲାମାନଙ୍କୁ ନ ପଠାଇ ଇଂରାଜୀ ମିଡିଅମ୍ ସ୍କୁଲକୁ ପଠାନ୍ତି ସେଥିରେ ସରକାର ବା କଅଣ କରି ପାରିବେ ? ମୋ ଜାଣିବାରେ ଏକଥା ଥୋକେ କେବଳ କହିବା ପାଇଁ କହନ୍ତି । କାରଣ ଯେଉଁମାନେ ଏ କଥା କହନ୍ତି ସେମାନେ ମଧ୍ୟ ତାଙ୍କ ପିଲାମାନଙ୍କୁ ଓଡ଼ିଆ ମିଡିଅମ୍ ସ୍କୁଲକୁ ପଠାନ୍ତି ନାହିଁ । ଏହା ହିଁ ସତ୍ୟ । ସେମାନେ କାହିଁକି ଗୋଟାଏ କଥା କହନ୍ତି ଏବଂ ଆଉ ଗୋଟାଏ କଥା କରନ୍ତି ତାହା ଏକ ଭିନ୍ନ ପ୍ରଶ୍ନ । ତା'ର ଆଲୋଚନା ଏଠି ସମ୍ଭବ ନୁହେଁ ।

ଏବେ ସଂସ୍କୃତି କଥା ବିଚାର କରାଯାଉ । ଏକଥା ସମସ୍ତେ ଜାଣନ୍ତି ଗୋଟାଏ ଜାତିର ସଂସ୍କୃତିର ସୁରକ୍ଷା କ୍ଷେତ୍ରରେ ନାରୀମାନଙ୍କର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । କିଏ କେଉଁ ପର୍ବପର୍ବାଣିକୁ ବେଶୀ ଆନ୍ତରିକତାର ସହିତ ପାଳନ କରିବ ତାହା ସେମାନଙ୍କ ଉପରେ ନିର୍ଭର କରେ ଏ କ୍ଷେତ୍ରରେ ସରକାରର କିଛି କରିବାର ନ ଥାଏ । ଖୁବ୍ ବେଶୀରେ ସରକାର ସେଇ ଦିନଟିକୁ ଛୁଟିଦିନ ବୋଲି ଘୋଷଣା କରି ପାରିବେ । କିନ୍ତୁ ସେପରି କଲେ ତା'ର ଅନ୍ୟ ଦିଗଟିକୁ ମଧ୍ୟ ଦେଖିବାକୁ ପଡ଼ିବ । ଗୋଟିଏ ଦେଶ ତା'ର ପର୍ବପର୍ବାଣିରେ ଯେତିକି ବେଶୀ ମାତି ରହିବ, ଯେତିକି ଉତ୍ସବ ଉଲ୍ଲାସରେ ଦିନ କଟାଇବ ସେତିକି ତା'ର କର୍ମ ଦିବସ ନଷ୍ଟ ହେବ । ଯେତିକି କର୍ମ ଦିବସ ନଷ୍ଟ ହେବ ସେତିକି ଉତ୍ପାଦନ ନଷ୍ଟ ହେବ ଏବଂ ରାଜ୍ୟର ଅର୍ଥନୀତି ଉପରେ ତାହା ଗୁରୁତର ଚାପ ସୃଷ୍ଟି କରିବ ।

ଓଡ଼ିଶାରେ ହେଉ ବା ଭାରତରେ ହେଉ ଏବେ ଯେତିକି ଛୁଟି ଦିବସ ଆମ ସରକାର ଘୋଷଣା କରିଛନ୍ତି ତାହା ପୁଞ୍ଜିବାଦୀ ରାଷ୍ଟ୍ରରେ ମଧ୍ୟ ନ ଥାଏ । ଆମ ସରକାରଙ୍କ ଶସ୍ତା ଲୋକପ୍ରିୟ ନୀତି ଯୋଗୁଁ ଆସ୍ତେ ଆସ୍ତେ ୱାର୍କ କଲଚର୍ ଦ୍ରୁତ ମରି ଯାଉଥିଲା ବେଳେ ଅଧିକ ଛୁଟି ଘୋଷଣା ଆମ ନିଜ ବେକରେ ଫାଶ ଲଗେଇଲା ପରି ହେବ । ଓଡ଼ିଶା କଥାତ ଆଉ ନ କହିବା ଭଲ । କୃଷିପ୍ରଧାନ ଓଡ଼ିଶା ରାଜ୍ୟ ଏବେ ଖାଦ୍ୟପଦାର୍ଥ ଠାରୁ ଆରମ୍ଭ କରି ଶିଳ୍ପଜାତ ପ୍ରତ୍ୟେକ ଦ୍ରବ୍ୟ ପାଇଁ ବାହାର ରାଜ୍ୟ ଉପରେ ନିର୍ଭର କରୁଛି । ସକାଳ ଠାରୁ ସନ୍ଧ୍ୟା ଯାଏ ଯାହା ଯାହା ଆମର ଆବଶ୍ୟକ ତାହା ବାହାରୁ ନ ଆସିଲେ ଆମ ହାତଗୋଡ଼ ଅଚଳ ହୋଇ ଯାଉଛି । ଆମ ଅର୍ଥନୀତି ସେଇ ସ୍ତରକୁ ଆସିଥିବା ବେଳେ ଆମେ ଆମ ସଂସ୍କୃତିର ସୁରକ୍ଷା କଥା କେମିତି ଚିନ୍ତା କରିବା ?

ଏସବୁ ସତ୍ତ୍ୱେ ଆମ ନାରୀମାନେ କିପରି ଭାବରେ ଆମ ଭାଷା, ସାହିତ୍ୟ ଓ

ସଂସ୍କୃତିର ସୁରକ୍ଷାରେ ଗୋଟାଏ ବିଶେଷ ଭୂମିକା ଗ୍ରହଣ କରିପାରିବେ ତା'ର ଗୋଟିଏ ଛୋଟ ଉଦାହରଣ ଏଠାରେ ଦେବା ଅପ୍ରାସଙ୍ଗିକ ହେବନାହିଁ ।

ଆସାମ ଆମରି ପରି ଗୋଟିଏ ରାଜ୍ୟ । ତା'ର ଲୋକସଂଖ୍ୟା, ସାକ୍ଷରତା ଓ ମୋଟ ଆୟ ଆମ ସହିତ ପ୍ରାୟ ସମାନ । ଆମ କଥା ଓ କାହାଣୀରେ ଆସାମକୁ ଗୋଟିଏ ମନ୍ତ୍ର ତନ୍ତ୍ର ଓ ଗୁଣି ଗାରେଡ଼ିର ଦେଶ ବୋଲି ବର୍ଣ୍ଣନା କରା ଯାଇଛି । କିନ୍ତୁ ସେଠାକାର ଲୋକଙ୍କ ଭାଷା, ସାହିତ୍ୟ ଓ ସଂସ୍କୃତି ପ୍ରୀତି ଦେଖିଲେ କେହି ତାକୁ ମନ୍ତ୍ରତନ୍ତ୍ରର ଦେଶ ବୋଲି କହିବ ନାହିଁ ।

ଆସାମରେ ଏପରି କୌଣସି ପର୍ବପର୍ବାଣି ନାହିଁ ଯେଉଁଥିରେ ନାରୀମାନେ ସେମାନଙ୍କର ପାରମ୍ପରିକ ପୋଷାକ 'ମେଖଳା'(ଠିକ୍ ଶାଢ଼ି ପରି ଏକ ବସ୍ତ୍ର) ନ ପିନ୍ଧି ଅନ୍ୟ କିଛି ପିନ୍ଧନ୍ତି । କହି ଦେବା ଉଚିତ ହେବ, ଆସାମରେ ପର୍ବପର୍ବାଣି ସୀମିତ । ଏହି ପର୍ବଗୁଡ଼ିକୁ ସେମାନଙ୍କର ଜାତୀୟ ପର୍ବ ବୋଲି ମଧ୍ୟ କୁହାଯାଇ ପାରେ । ଏହି ଜାତୀୟ ପର୍ବ ଭିତରେ 'ଶିଳ୍ପୀ ଦିବସ' (ଯାହାକି ଜଣେ କବିଙ୍କ ଜନ୍ମ ଦିବସରେ ପାଳିତ ହୁଏ) ମଧ୍ୟ ଅନ୍ତର୍ଭୁକ୍ତ । ତା'ଛଡ଼ା 'ଆସାମ ସାହିତ୍ୟ ସଭା' ଏ ଜାତିର ସାହିତ୍ୟ ଓ ସଂସ୍କୃତିର ଗୋଟାଏ ବିରାଟ/ମହାନ ପୀଠ । ସେଠି ଜଣେ କବି ବା ଶିଳ୍ପୀଙ୍କୁ ଯେପରି ଉଚ୍ଚ ସମ୍ମାନ ଦିଆଯାଏ ତାହା ଭାରତରେ ଏପରିକି ସମଗ୍ର ପୃଥିବୀରେ ମଧ୍ୟ ବିରଳ । ସେଇ ପବିତ୍ର ପୀଠରେ କବି ବା ସାହିତ୍ୟିକମାନଙ୍କୁ ସମ୍ବର୍ଦ୍ଧନା ଦେବାରେ ନାରୀମାନେ ଏକ ସ୍ୱତନ୍ତ୍ର ଭୂମିକା ଗ୍ରହଣ କରନ୍ତି ।

ଆମପରି ସେଠି ସାହିତ୍ୟ ସଭାକୁ ମନ୍ତ୍ରୀ ବା ସରକାରୀ ଅଫିସରଙ୍କୁ ମୋଟେ ଡକା ଯାଏନା । କିନ୍ତୁ 'ସାହିତ୍ୟ ସଭା'ର ସଭାପତିଙ୍କୁ ଯେପରି ଭାବରେ ସମ୍ବର୍ଦ୍ଧନା ଦେଇ ପାଛୋଟି ନିଆଯାଏ ତାହା ନ ଦେଖିଲେ ବିଶ୍ୱାସ କରିହେବ ନାହିଁ । ସୁସଜ୍ଜିତ ହାତୀ ଉପରେ ସଭାପତି ବସିବେ ଏବଂ ତାଙ୍କ ଆଗରେ ପ୍ରାୟ ଶହେ ଖଣ୍ଡେ ମେଖଳା ପରିହିତା ନାରୀ ଶଙ୍ଖ ହୁଳହୁଳି ଦେଇ ତାଙ୍କୁ ସଭାସ୍ଥଳକୁ ପାଛୋଟି ନେଉଥିବେ । ତା'ପରେ ସେମାନଙ୍କୁ ଅନୁସରଣ କରୁଥିବେ ହଜାର ହଜାର ନରନାରୀ । ଏ ଶୋଭାଯାତ୍ରା କେବେ ଦୁଇ ତିନି ମାଇଲରୁ କମ୍ ହୁଏନାହିଁ । ଏଠି ଏ କଥା ମଧ୍ୟ ଦେଖାଯାଏ ଯେ, ଏଥିରେ ଯୋଗ ଦେଉଥିବା ପ୍ରତ୍ୟେକ ନାରୀ ସେମାନଙ୍କ ମେଖଳା ସହିତ ନାଲି ବ୍ଲାଉଜ୍ ଛଡା ଅନ୍ୟ ରଙ୍ଗର ବ୍ଲାଉଜ୍ ମୋଟେ ପିନ୍ଧନ୍ତି ନାହିଁ । ତାହା ହିଁ ସେମାନଙ୍କ ପର୍ବପର୍ବାଣିର ଚିହ୍ନ । ଜାତୀୟତାର ଚିହ୍ନ । ଏଥିରୁ ଦୁଇଟି କଥା ହୁଏ । ଏକରେ, ସେମାନଙ୍କର ଜାତୀୟତା ଓ ସଂସ୍କୃତିର ସୁରକ୍ଷା ହୁଏ ଏବଂ ଦୁଇରେ, ସେମାନଙ୍କର ହସ୍ତତନ୍ତ ଶିଳ୍ପ ପ୍ରସାର ଲାଭ କରେ । ଆମେ ଜାଣୁଁ ଆସାମର ହସ୍ତତନ୍ତ ଶିଳ୍ପ ଅନନ୍ୟ ।

ବର୍ଷକୁ ଶହ ଶହ କୋଟି ଟଙ୍କା ସେଥିରୁ ସେମାନେ ଆୟ କରନ୍ତି ।

ଅସମୀୟାମାନେ ସାଧାରଣତଃ ଶାଢ଼ି ପିନ୍ଧିବାକୁ ଭଲ ପାଆନ୍ତି ନାହିଁ । ତେଣୁ ଅପର ଆସାମରେ କେତେକ ସହରରେ ଶାଢ଼ି ଦୋକାନ ନାହିଁ କହିଲେ ଚଳେ । ଶାଢ଼ି ଅସମୀୟା ସଂସ୍କୃତିର ବିରୋଧ କରେ ବୋଲି ଅଶୀ ଦଶକରେ ଯେଉଁ ଭାଷା ବିରୋଧି ଆନ୍ଦୋଳନ ଆରମ୍ଭ ହୋଇଥିଲା ସେତେବେଳେ ଆନ୍ଦୋଳନକାରୀମାନେ ଶାଢ଼ି ଦୋକାନସବୁ ପୋଡ଼ି ଦେଇଥିଲେ । ତେବେ ଏବେ କେତେକ ଶିଳ୍ପାଞ୍ଚଳରେ ମିଶ୍ର ସଂସ୍କୃତିର ପ୍ରଭାବ ଥିବାରୁ ଶାଢ଼ି ଦୋକାନମାନ ଖୋଲିଲାଣି ଏବଂ ସମୟ ସମୟରେ (ବିଶେଷ କରି ଲୋଅର ଆସାମରେ) ଅସମୀୟା ନାରୀମାନେ ଶାଢ଼ି ବ୍ୟବହାର କଲେଣି । କିନ୍ତୁ ପର୍ବପର୍ବାଣିରେ ଶାଢ଼ିର ପ୍ରଶ୍ନ ଉଠୁନାହିଁ ।

ଆସାମ ସାହିତ୍ୟ ସଭାରେ ପ୍ରତ୍ୟେକ ପରିବାର କିଛି ନା କିଛି ବହି ଓ ପତ୍ରପତ୍ରିକା କିଣିଥିବାର ଦେଖାଯାଏ । ସାହିତ୍ୟ ସଭାର ସ୍ମରଣିକା ଖଣ୍ଡେ ପାଇବାକୁ ଏତେ ଭିଡ଼ ହୁଏ ଯେ, ସେଠି ଲମ୍ବା ଲାଇନ୍ ଲାଗିଯାଏ । ଏକାଧିକ କାଉଣ୍ଟର ଥାଇ ମଧ୍ୟ ସେଠି ପତ୍ରିକା ଖଣ୍ଡକ ପାଇଁ ସେମାନଙ୍କୁ ଅନେକ ସମୟ ଅପେକ୍ଷା କରିବାକୁ ପଡ଼େ । ପତ୍ରିକା ଖଣ୍ଡକ ମିଳିଗଲେ ସେମାନଙ୍କ ମୁହଁର ପ୍ରସନ୍ନତା ଦେଖିବାର କଥା ।

ଆମ ଓଡ଼ିଶା ପରି ସେଠି ଶହ ଶହ ସାହିତ୍ୟାନୁଷ୍ଠାନ ନାହିଁ । 'ଆସାମ ସାହିତ୍ୟ ସଭା' ଛଡ଼ା ସେଠି ଦ୍ୱିତୀୟ ଅନୁଷ୍ଠାନ ନାହିଁ । ତା'ର ଶାଖା ପ୍ରଶାଖା ପଞ୍ଚାୟତ ସ୍ତର ପର୍ଯ୍ୟନ୍ତ ଲମ୍ବି ଯାଇଥାଏ । ସମସ୍ତେ ଗୋଟିଏ ସୂତ୍ରରେ ବନ୍ଧା । ରାଜନୀତିର ପ୍ରଶ୍ନ ଉଠେନା ସେଠି । ଜାତି ବର୍ଣ୍ଣର ଚିହ୍ନବର୍ଣ୍ଣ ମଧ୍ୟ ନଥାଏ । ସରକାରୀ ଅଫିସର କିମ୍ବା ରାଜନେତାମାନଙ୍କୁ ସେଠି ସାହିତ୍ୟ ସଭାକୁ ନିୟନ୍ତ୍ରଣ କରା ଯାଏନା । କାରଣ 'ସଭା' ସେଠି ସରକାର ଠାରୁ ଗୋଟିଏ ପଇସା ଗ୍ରହଣ କରେନା ।

ଏସବୁ ହେଲା ଆମ ପଡ଼ୋଶୀ ରାଜ୍ୟର କଥା । ଆମ ଉତ୍କଳ ସମ୍ମିଳନୀ ପାଇଁ ଏ ସବୁ ଉଦାହରଣ ଆବଶ୍ୟକ କି ନା ସେ କଥା ସେମାନେ ଚିନ୍ତା କରନ୍ତୁ । ତେବେ ଏହା ମଧ୍ୟ ଜଣାଶୁଣା ଯେ, ଓଡ଼ିଆ ଜାତି ତା'ର ସୃଷ୍ଟି ଆରମ୍ଭରୁ ଦୁଇଜଣଙ୍କ ଉପରେ ସଂପୂର୍ଣ୍ଣ ନିର୍ଭର କରିଥାଏ । ଗୋଟିଏ ହେଲା ତା'ର ଈଶ୍ୱର ବା ଜଗନ୍ନାଥ ଏବଂ ଅନ୍ୟଟି ହେଲା ତା'ର ସରକାର । ଏ ଦୁଇଟି ତା'ର ଆଶାବାଡ଼ି । ତାକୁ ଛାଡ଼ି ତା'ର ଅସ୍ତିତ୍ୱ ନାହିଁ ବୋଲି ସେ ମନେ କରେ । ସେ ପଙ୍ଗୁ ।

ଏ ଯୁଗରେ ସେ ଥିଓରି କିନ୍ତୁ ଅର୍ଥହୀନ ହୋଇ ଯାଇଛି । ଯେଉଁ ଜାତି ତା'ର ନିଜର ଶକ୍ତି ବଳରେ ସଂଗ୍ରାମ କରି ସ୍ୱାଧୀନତା ହାସଲ କରି ପାରିଲା ସେ ଜାତି ଆଜି ସ୍ୱାଧୀନତା ହାସଲ ପରେ ନିଜ ଗୋଡ଼ରେ ଠିଆ ହେବାର ଶକ୍ତି ହରେଇବା ଦୁଃଖ ଓ କ୍ଷୋଭର କଥା । ଯେଉଁ ଜାତି ନିଜର ଅନ୍ତର୍ନିହିତ ଶକ୍ତି ଉପରେ ଭରସା ରଖି ପାରେନା, ସବୁବେଳେ ଅନ୍ୟ ପାଖରେ କେବଳ ପ୍ରାର୍ଥନା ହିଁ ଉପସ୍ଥାପିତ କରିଆସେ, ସେ ଜାତି କେବେ ବି ଉପରକୁ ଉଠି ପାରେନା । ଏ ସତ୍ୟକୁ ଅସ୍ୱୀକାର କରିହେବ ନାହିଁ । ■

(ସମୟ- ୨୦.୧୧.୯୮)

# ପବ୍ଲିକ୍ ମନି

ଇଂଲଣ୍ଡର ରାଣୀ ଏବେ ବଡ଼ ଅଡୁଆରେ ପଡ଼ି ଯାଇଛନ୍ତି । ପୃଥିବୀର ଅନ୍ୟତମ ଧନଶାଳୀ ରାଜ୍ୟର ଶାସନମୁଖ୍ୟ ରାଣୀ ଏଲିଜାବେଥ ଏବେ ଅର୍ଥାଭାବର ଅଜଣା ଯନ୍ତ୍ରଣାକୁ ମର୍ମେ ମର୍ମେ ଅନୁଭବ କରୁଛନ୍ତି । ତାଙ୍କ ପକ୍ଷେ ପରିବାର ଚଳେଇବା କଷ୍ଟ ହେବ ବୋଲି କୁହା ଯାଉଛି ।

ଇଂଲଣ୍ଡ ପୃଥିବୀର ଅଳ୍ପ କେତୋଟି ଧନତାନ୍ତ୍ରିକ ଦେଶ ଭିତରୁ ଗୋଟିଏ । ତା'ର ମହାରାଣୀ, ଯେ କି ଶହ ଶହ ବର୍ଷ ଧରି ଦେଶର ସର୍ବୋଚ୍ଚ ସମ୍ମାନର ଅଧିକାରୀ, ଯାହାଙ୍କ ବିରୋଧରେ ଆଜିଯାଏ ଗୋଟିଏ ଶବ୍ଦ ମଧ୍ୟ ସାଧାରଣରେ ଉଚ୍ଚାରିତ ହୋଇନାହିଁ, ସେ ଆଜି ତାଙ୍କ ନିଜ ଦେଶର ଏବଂ ତାଙ୍କରି ଦସ୍ତଖତରେ ତିଆରି ହେଇଥିବା ଆଇନ ଓ ନିୟମ କାନୁନ୍ ପାଖରେ ମୁଣ୍ଡ ନୁଆଇଁ ଦେଇଛନ୍ତି । ସେ ଆଜି କହୁଛନ୍ତି 'ହେ ମୋର ପ୍ରିୟ ଦେଶବାସୀ, ହେ ମୋର ପାର୍ଲାମେଣ୍ଟକୁ ନିର୍ବାଚିତ ମହାନ ପ୍ରତିନିଧିମାନେ, ତୁମ୍ଭେମାନେ ମୋତେ କ୍ଷମା କର । ମୋତେ ଅଳ୍ପ କିଛି ଦିନ ସମୟ ଦିଅ, ମୁଁ ମୋର ପରିବାରକୁ, ରାଜପ୍ରାସାଦକୁ, ପ୍ରାସାଦର ହଜାର ହଜାର କର୍ମୀଙ୍କୁ ଟିକିଏ ସଜାଡ଼ି ନିଏ' ।

କଥାଟା ଆଉ ଟିକିଏ ଫିଟେଇ କହିବା ଉଚିତ ହେବ । ରାଣୀଙ୍କୁ ସେଠି ସରକାରଙ୍କ ତରଫରୁ ତାଙ୍କ ପ୍ରାସାଦର ତଥା ତାଙ୍କ ପରିବାରର ଖର୍ଚ୍ଚ ଯଥେଷ୍ଟ କମ୍ କରିବାକୁ ନିର୍ଦ୍ଦେଶ ମିଳିଚି । ସରକାରୀ ନିର୍ଦ୍ଦେଶରେ କୁହାଯାଇଛି, ରାଣୀ ମହୋଦୟା ! ଆମ ସରକାରୀ ହସାବ ଅନୁସାରେ ଗତ ଦଶ ବର୍ଷରେ ଆପଣଙ୍କୁ ଆମ ରାଜକୋଷରୁ ଯେତିକି ଅର୍ଥ ଖର୍ଚ୍ଚ କରିବାକୁ କୁହାଯାଇଥିଲା, ତାଠୁ ଯଥେଷ୍ଟ ବେଶି ଆପଣ ଓ ଆପଣଙ୍କ ପରିବାରବର୍ଗ ମିଶି ଖର୍ଚ୍ଚ କରି ଦେଇଛନ୍ତି । ଏହା ଏକ ଅନୁଚିତ କାର୍ଯ୍ୟ । ଆଇନ ଦୃଷ୍ଟିରୁ ଏହି ଅଧିକା ଖର୍ଚ୍ଚକୁ ଗ୍ରହଣ କରି ହେବନାହିଁ । କାରଣ ଏହା ଆମ ଦେଶର କୋଟି କୋଟି କରଦାତାଙ୍କ ଅର୍ଥ । ଏ ଅର୍ଥ ଆମର ବ୍ୟକ୍ତିଗତ ନୁହେଁ ଯେ ଆମେ ଇଚ୍ଛା କଲେ ଆପଣଙ୍କୁ ଦେଇ ପକେଇବୁଁ ।

ମହାରାଣୀ ସାହେବା ! ଆମ ଅର୍ଥ ବିଭାଗ ହିସାବ କରି ଦେଖିଲେ ଯେ, ଆପଣ ପ୍ରାୟ ୨୦ ମିଲିଅନ ପାଉଣ୍ଡ ବଜେଟ୍ ବାହାରେ ଖର୍ଚ୍ଚ କରି ସାରିଲେଣି । ଆମ ସରକାରୀ ଖଜଣାଖାନାର ଚାନ୍‌ସେଲର ଏବେ ଏହି ଅଧିକା ଖର୍ଚ୍ଚ କିପରି ଓ କାହିଁକି ହେଲା ତା'ର ତଦନ୍ତ ପାଇଁ ମଧ୍ୟ ପ୍ରସ୍ତାବ ଦେଇଛନ୍ତି । ସେ ଏ କଥା ମଧ୍ୟ କହିଛନ୍ତି ଯେ, ଆଗରୁ

ରାଜପ୍ରାସାଦର ସମସ୍ତ ଖର୍ଚ୍ଚ ଯେପରି ପ୍ରତି ଦଶ ବର୍ଷରେ ଥରେ ସମୀକ୍ଷା ହେଉଥିଲା, ତାହା ଏହି ପରିବର୍ତ୍ତିତ ପରିସ୍ଥିତିରେ ପ୍ରତି ତିନିବର୍ଷରେ ଥରେ ହେବା ଉଚିତ । ଏହା ଫଳରେ ମୂଲ୍ୟବୃଦ୍ଧି ଫଳରେ ଯଦି କେଉଁଠି କିଛି ଖର୍ଚ୍ଚ ବେଶି କମ୍ ହେଇଥାଏ ତେବେ ତାକୁ ଠିକଣା ସମୟରେ ବିଚାରକୁ ନିଆଯାଇ ପାରିବ । ତାଙ୍କ ରିପୋର୍ଟ ଏ କଥା ମଧ୍ୟ ଦର୍ଶାଇଛି ଯେ, ସମସ୍ତ ଖର୍ଚ୍ଚର ହିସାବକୁ ୭ ପରସେଣ୍ଟର ମୂଲ୍ୟ ବୃଦ୍ଧିକୁ ଭିତ୍ତିକରି ହିସାବ କରା ଯାଇଥିଲା । କିନ୍ତୁ ପରେ ତାହା ୩ ପରସେଣ୍ଟକୁ ଖସି ଆସିଚି । ତେଣୁ ଆପଣଙ୍କୁ ଭୁଲ୍‌ରେ ଅଧିକ ଅର୍ଥ ଦେଇ ଦିଆ ଯାଇଛି । ଏବେ ଏହି ସମସ୍ତ ବଜେଟ ବର୍ହିଭୁତ ଖର୍ଚ୍ଚକୁ ଆମେ ଆପଣଙ୍କୁ ଦିଆ ଯାଉଥିବା ଦରମା, ଭତ୍ତା ଓ ଅନ୍ୟାନ୍ୟ ଖର୍ଚ୍ଚରୁ କାଟ କରିବା ଫଳରେ ଆପଣ ନିଷ୍ଚୟ କିଛି ପରିମାଣରେ ଅସୁବିଧାରେ ପଡ଼ିବେ । କିନ୍ତୁ ଆମ ପକ୍ଷେ ଅନ୍ୟ ଉପାୟ ନାହିଁ । ଆପଣ ଏବେ ଏହି ଅସୁବିଧାର କିପରି ଭାବରେ ସମ୍ମୁଖୀନ ହେବେ ତା'ର ବ୍ୟବସ୍ଥା କରନ୍ତୁ ।

ଏ ଖବର ପାଇଲା ପରେ ରାଣୀ ମୁଣ୍ଡରେ ହାତ ଦେଇ ବସିଗଲେ । ସେ ନିଜସ୍ୱ ଏକ ଅପରାଧବୋଧରେ ମର୍ମାହତ ହେଇ ପଡ଼ିଲେ । ରାଣୀ ନିଜେ ଟ୍ୟାକ୍ସ ପେୟରଙ୍କ ଅର୍ଥକୁ ବେଆଇନ ଭାବେ ନେଇ ନିଜ ଖର୍ଚ୍ଚରେ ଲଗେଇ ଦେଇଛନ୍ତି ଏବଂ ତାକୁ ଏବେ ସରକାର ଅଡ଼ିଟ୍ କରି ଧରି ପାରିଛନ୍ତି, ଏହାଠାରୁ ଦୁଃଖର କଥା ଆଉ କଅଣ ଅଛି ? ଏ କଳଙ୍କର ବୋଝ ରାଜ ପରିବାର ମୁଣ୍ଡକୁ ଯୁଗେ ଯୁଗେ ତଳକୁ କରିଦେବ । ଦେଶବାସୀ ତାଙ୍କୁ ଶହ ଶହ ବର୍ଷ ଧରି ଯେଉଁ ଅମାପ ସମ୍ମାନ ଦେଇ ଆସୁଥିଲେ ତାହା ଆଉ ଦେବେ ତ ? ସେମାନଙ୍କ ଆଗରେ ସେ ଆଉ ମୁଣ୍ଡ ଟେକି ଠିଆ ହେଇ ପାରିବେ ତ ? କେଉଁ ମୁହଁରେ ସେ ଆଉ ସେମାନଙ୍କ ଠାରୁ ଶ୍ରଦ୍ଧା ଓ ସମ୍ମାନ ଦାବି କରିବେ ? ହୁଏତ କେହି ସାମନାରେ କିଛି କହି ନ ପାରନ୍ତି । କିନ୍ତୁ ପଛରେ କହିବାକୁ ତ ବାଧା ନାହିଁ ।

ରାଣୀ କିମ୍ବା ତାଙ୍କ କର୍ମଚାରୀମାନେ ଯେ କିଛି ଜାଣିଶୁଣି ଭୁଲଟାଏ କରି ପକାଇଛନ୍ତି ତା' ନୁହେଁ । ସେମାନେ ମିଛ ବିଲ୍ ଦେଇ ମଂଜୁରୀ ନେଇ ଆସିଛନ୍ତି ତା' ମଧ୍ୟ ନୁହେଁ । ସେ କିଛି ଚୋରି ମଧ୍ୟ କରି ନାହାଁନ୍ତି । ଏକ ଭୁଲ ହିସାବରୁ ଏହା ଘଟି ଯାଇଛି । ତାହା ମଧ୍ୟ ଇଚ୍ଛାକୃତ ନୁହେଁ । ମୂଲ୍ୟବୃଦ୍ଧିର ହାର ଯେ ଯା ଭିତରେ କମି ଗଲାଣି ସେ କଥାଟା ରାଣୀ କେମିତି ଜାଣନ୍ତେ ? ସେ କଅଣ ଥଳି ନେଇ ବଜାରକୁ ବଜାର ସଉଦା କରିବାକୁ ଯାଆନ୍ତି ନା ତା'ର କୌଣସି ହିସାବ ରଖନ୍ତି ? ସେ ମଧ୍ୟ ସରକାରୀ ମୂଲ୍ୟବୃଦ୍ଧିର ଚାର୍ଟ ଦେଖନ୍ତି ନାହିଁ କି ତାଙ୍କ ପକ୍ଷେ ଦେଖିବାର ଆବଶ୍ୟକତା ପଡ଼େ ନାହିଁ । ତେଣୁ ସେ ଏଥିପାଇଁ କାହିଁକି ଦାୟୀ ହେବ ?

ରାଣୀ ଚାହିଁଥିଲେ ସେ ଚାର୍ଟକୁ କ୍ୟାନ୍‌ସେଲ୍ କରି ଆଉ ଏକ ଚାର୍ଟ ତିଆରି କରିବାକୁ ନିର୍ଦ୍ଦେଶ ଦେଇପାରି ଥାଆନ୍ତେ । କାରଣ ସେ ହିଁ ଆଇନର ସର୍ବୋଚ୍ଚ କର୍ତ୍ତ୍ରୀ ।

ସେ ଚାହିଁଥିଲେ ପ୍ରଧାନମନ୍ତ୍ରୀଙ୍କୁ ଡକାଇ ଆଣି କହି ପାରି ଥାଆନ୍ତେ ଯେ ମୋ ପ୍ରାସାଦର ଖର୍ଚ୍ଚ ଯା' ଭିତରେ ଅନେକ ବଢ଼ି ଯାଇଛି । ମୋର ଫୁଲ ବଗିଚା, ଡେକୋରେଟର, କେଶ ସଜ୍ଜା ଓ ରୂପ ଚର୍ଯ୍ୟାର ବିଭିନ୍ନ ବିଭାଗ ପାଇଁ ବିଭିନ୍ନ ଦେଶରୁ ଯେଉଁ ସାମଗ୍ରୀମାନ ଆସୁଛି, ସେଥିରେ ମଧ୍ୟ ଅନେକ ଖର୍ଚ୍ଚ ବଢ଼ିଛି ଏବଂ ଏବେ ଆହୁରି ବଢ଼େଇବାର ଆବଶ୍ୟକ ହେଉଛି । ତେଣୁ ତୁମେ ସେ ଅଧିକା ଖର୍ଚ୍ଚକୁ ମଂଜୁରୀ ଦେଇ ଦିଅ ଏବଂ ଆସନ୍ତା ବର୍ଷକୁ ବଜେଟ୍ ମଧ୍ୟ ଆହୁରି ବଢ଼େଇ ଦିଅ ।

କିନ୍ତୁ ଇଂଲଣ୍ଡର ରାଣୀ ଶାସନମୁଖ୍ୟ ହେଲେ ମଧ୍ୟ ସେ ଦେଶ ଏକ ଗଣତାନ୍ତ୍ରିକ ଦେଶ । ସେଠାରେ ଗଣତନ୍ତ୍ରର ମୂଳଦୁଆ ଅନେକ ପୁରୁଣା । ସେ ଗଣତନ୍ତ୍ରରେ ପବିତ୍ରତା ହିଁ ପ୍ରଥମ ଓ ପ୍ରଧାନ । ପରମ୍ପରା ସେମାନଙ୍କର ଶାସନର ମୂଳ ଭିତ୍ତି । ତେଣୁ ସେଠାରେ ଲିଖିତ ସମ୍ବିଧାନ ନ ଥାଇ ମଧ୍ୟ ତା'ର ମହାନତା, ତା'ର ବିଶାଳତା, ତା'ର ଲୋକତାନ୍ତ୍ରିକ ଚରିତ୍ର ପୃଥିବୀର ଅନ୍ୟ ଅନେକ ଦେଶଠାରୁ ଊର୍ଦ୍ଧ୍ୱରେ । ମିଥ୍ୟାଚାର କିମ୍ବା ଅନାଚାର ସେ ଦେଶର ଶାସନ ତନ୍ତ୍ରରେ ସ୍ଥାନ ପାଏନା । ରାଣୀ ତ ଦୂରର କଥା ମନ୍ତ୍ରୀ କିମ୍ବା ଲୋକ ପ୍ରତିନିଧିମାନେ ମଧ୍ୟ ମିଥ୍ୟାକୁ ପ୍ରଶୟ ଦିଅନ୍ତି ନାହିଁ । ରାଜନୀତିରେ ନୀତିହୀନତା କଥା ସେମାନେ ଚିନ୍ତା ମଧ୍ୟ କରିପାରନ୍ତି ନାହିଁ । ବ୍ୟକ୍ତିଗତ ଜୀବନରେ ସେମାନଙ୍କର ସାମାନ୍ୟ ସ୍ଖଳନ ହେଇଥିଲେ ସେମାନେ ତାହା ସ୍ୱୀକାର କରି ଯାଆନ୍ତି ଏବଂ ସଂଗେ ସଂଗେ ଇସ୍ତଫା ଦେଇ ଶାସନରୁ ଅପସରି ଯାଆନ୍ତି । ତା'ପରେ ସେ କଥାରେ ସେଇଠି ପୂର୍ଣ୍ଣଚ୍ଛେଦ ପଡ଼େ । ଆମ ପରି ସେଠାରେ ପ୍ରହେଳିକା ସୃଷ୍ଟି କରି ହଜାରେ ତଦନ୍ତ କରି ବର୍ଷ ବର୍ଷ ଯାଏ ସରକାରୀ ଟ୍ରେଜେରୀକୁ ଲୁଟ୍ କରା ଯାଏନି ।

ଇଂଲଣ୍ଡର ରାଣୀ ସେଇ ମହାନ ତଥା ପବିତ୍ର ପରମ୍ପରାର ଅଧିଶ୍ୱରୀ । ଏକ ଚିରନ୍ତନୀ ସତ୍ୟର ପ୍ରତୀକ । ପୃଥିବୀର ସେ ବୋଧେ ଏକମାତ୍ର ରାଣୀ ଯେ କି, ରାଜନୀତି କରନ୍ତି ନାହିଁ । ତାଙ୍କ ପ୍ରାସାଦ ଭିତରେ ରାଜନୀତି ଛଡ଼ା ଆଉ ସମସ୍ତଙ୍କର ପ୍ରବେଶାଧିକାର ଥାଏ । ସେଇ ସେତକ ତାଙ୍କୁ ଓ ତାଙ୍କ ପରିବାରକୁ ମହାନ ଓ ମହିମା ମଣ୍ଡିତ କରିଛି ।

ରାଣୀ ତେଣୁ ସେଇ ପବିତ୍ରତମ ପରମ୍ପରାକୁ ସମ୍ମାନ ଦେବା ପାଇଁ ସଂଗେ ସଂଗେ ସରକାରଙ୍କୁ ଜଣେଇ ଦେଲେ ଯେ, ଯେଉଁ ୨୦ ମିଲିଅନ୍ ପାଉଣ୍ଡ ମୁଁ ଓ ମୋ ପରିବାର ପାଇଁ ବଜେଟ୍ ବାହାରେ ଖର୍ଚ୍ଚ ହେଇଯାଇଛି ମୁଁ ତାକୁ ମୋ ପ୍ରାସାଦର ସମସ୍ତ ଖର୍ଚ୍ଚକୁ କମେଇ ଭରଣା କରିଦେବି । ମୁଁ ଦୁଃଖିତ ଯେ ଆମେ ଭୁଲରେ ସେ ଅର୍ଥ ଖର୍ଚ୍ଚ କରି ଦେଇଛୁଁ । ମୁଁ ସେଥିପାଇଁ ପ୍ରାସାଦର ପ୍ରଶାସନ ବିଭାଗକୁ ସତର୍କ କରି ଦେଉଛି । ସେମାନେ ଯେପରି ପବ୍ଲିକ୍ ମନି ସହିତ ଆଉ ଭବିଷ୍ୟତରେ ଖେଳ ଖେଳିବେ ନାହିଁ । ତା'ର ପବିତ୍ରତା ସେମାନେ ନିଶ୍ଚୟ ରକ୍ଷା କରିବେ ।

ରାଣୀ ଯେ ଖାଲି ଏତକ ତାଙ୍କ ସରକାରଙ୍କୁ ଜଣେଇ ଦେଲେ ତା'ନୁହେଁ ସେ ସଂଗେ ସଂଗେ ତାକୁ କାର୍ଯ୍ୟରେ ମଧ୍ୟ ପରିଣତ କଲେ । ସେ ତାଙ୍କ ପ୍ରାସାଦର ରକ୍ଷଣାବେକ୍ଷଣ ବା ମରାମତି, ଗାଡିର ବ୍ୟବହାର, ବିଦ୍ୟୁତ୍ ଖର୍ଚ୍ଚ, ଏପରିକି ରୋଷେଇ ଘରୁ ଗ୍ୟାସ୍ ଖର୍ଚ୍ଚ ମଧ୍ୟ କମେଇ ଦେଲେ । ନିଜର ତଥା ପରିବାରର ଗସ୍ତ ଖର୍ଚ୍ଚ କମେଇ ଦେଲେ । ପ୍ରାସାଦର ସାଜସଜ୍ଜା, ଅତିଥି ଅଭ୍ୟାଗତଙ୍କ ଖର୍ଚ୍ଚ ମଧ୍ୟ କମେଇ ଦେଲେ । ସମସ୍ତ ପ୍ରକାର ଆର୍ଥିକ କଟକଣା ଭିତରେ ଦୀର୍ଘ ଏକ ବର୍ଷ ରହିଲା ପରେ ସେ ଦେଖିଲେ ସେ ମାତ୍ର ପାଞ୍ଚ ମିଲିଅନ ପାଉଣ୍ଡ ବଞ୍ଚେଇ ପାରିଛନ୍ତି, ୨୦ ମିଲିଅନ ପାଉଣ୍ଡରେ ପହଞ୍ଚିବାକୁ ତାଙ୍କୁ ଆହୁରି କେତେକ ବର୍ଷ ଲାଗିବ ସେ କଥା ଅନୁମାନ କରା ଯାଇପାରେ ।

ରାଣୀଙ୍କ ପକ୍ଷେ ଏହା ଅସହ୍ୟ ହେଇ ଉଠିଲା । ସେ ଯେତେ ଶୀଘ୍ର ସମ୍ଭବ ଏଥିରୁ ମୁକ୍ତି ପାଇବାକୁ ଚିନ୍ତା କଲେ । ସେ ସରକାରଙ୍କୁ ପ୍ରସ୍ତାବ ଦେଲେ ତାଙ୍କ ପ୍ରାସାଦର ଅଭ୍ୟନ୍ତରର କିଛି ଅଂଶ ଜନସାଧାରଣଙ୍କ ଦର୍ଶନ ପାଇଁ ରଖାଗଲେ ସେଥିରୁ କିଛି ଆୟ ହେଇ ପାରିବ । ସେ ଟଙ୍କା ସେ ସରକାରଙ୍କୁ ମଜୁରା କରି ପାରିବେ । ତାକୁ ମଧ୍ୟ ସରକାର ମଂଜୁର କଲେ । ତା'ଛଡା ଅନ୍ୟ ଉପାୟ ନଥିଲା । ଇଚ୍ଛା ନ ଥିଲେ ମଧ୍ୟ ପବ୍ଲିକ୍ ମନିର ସୁରକ୍ଷା ପାଇଁ ସେତକ କରିବାକୁ ପଡ଼ିଲା ।

କିନ୍ତୁ ଘଟଣାଟା ସେତିକିରେ ଶେଷ ହେଲା ନାହିଁ । ଏ କଥା ସମ୍ବାଦପତ୍ର ମାନଙ୍କରେ ପ୍ରକାଶ ପାଇଲା । କେହି କେହି ରାଜପ୍ରାସାଦ ବେପରୁଆ ଭାବେ ଖର୍ଚ୍ଚ ବଢ଼େଇ ଚାଲିଛନ୍ତି ବୋଲି କହିଲାବେଳେ ଆଉ କେହି କେହି ଏଥିପାଇଁ ସରକାରଙ୍କୁ ଦୋଷ ଦେଲେ । ସେମାନେ କହିଲେ ସରକାର ଏଥିପାଇଁ ଯେତିକି ସତର୍କତା ଅବଲମ୍ବନ କରିବାର କଥା ତାହା କରି ପାରି ନାହାନ୍ତି । ଆଉ କେହି କେହି ରାଜପ୍ରାସାଦକୁ ଜନସାଧାରଣଙ୍କ ପାଇଁ ଖୋଲି ସେଥିରୁ ଅର୍ଥ ଆଦାୟକୁ ପରମ୍ପରା ବିରୋଧୀ ବୋଲି କହିଲେ ଏବଂ ଆଉ କେହି କେହି କଥାଟାକୁ ପବ୍ଲିକ୍ ଫୋରମ୍‌କୁ ନେବାକୁ ପ୍ରସ୍ତାବ ଦେଲେ ।

ଏବେ ପ୍ରସଙ୍ଗକ୍ରମେ ଆମ ଦେଶର ପବ୍ଲିକ୍ ମନି କଥା କିଛି କହିବା ଆବଶ୍ୟକ ଯଦିଓ ଏ କଥାଟାକୁ ସମସ୍ତେ ଜାଣନ୍ତି । ଆମ ଦେଶର ପବ୍ଲିକ ମନିଟାକୁ ଆମ ନେତାମାନେ ନାଁ ବଦଳେଇ ପ୍ରାଇଭେଟ୍ ମନି କରି ଦେଇଛନ୍ତି । ସମସ୍ତଙ୍କ ସୁବିଧା ପାଇଁ ସରଳୀକରଣର ଆବଶ୍ୟକତା ପଡ଼ିଲା । ସରଳୀକରଣ ହେଲାପରେ ଜଣେ ପ୍ରାକ୍ତନ ପ୍ରଧାନମନ୍ତ୍ରୀ ଏଇ ନୂଆ ଯୋଜନା ଅନୁଯାୟୀ ମାସ ମାସ କାଳ ଯାଇ ବିଦେଶରେ ଚିକିତ୍ସା ନାଁରେ ସପରିବାର ଏବଂ ସବାନ୍ଧବେ ରହି ପାରିବେ । ଏଥିରେ ଯଦି ମାସକୁ କୋଟି କୋଟି ଆମ ଗରିବଙ୍କ କରରୁ ଚାଲିଯାଏ ସେଥିରେ କାହାର କଅଣ ଯାଏ ? ଖାଲି ପ୍ରାକ୍ତନ ପ୍ରଧାନମନ୍ତ୍ରୀ ନୁହଁନ୍ତି, ଏ ସୁବିଧା ଏବେ ସବୁ ପ୍ରାକ୍ତନ ମନ୍ତ୍ରୀ, ସାଂସଦଙ୍କ

ଠାରୁ ଆରମ୍ଭ କରି ବିଧାୟକ ଓ ଜିଲ୍ଲା ପରିଷଦ ଯାଏ ଲମ୍ବି ଗଲାଣି । ଏବେ ନିର୍ବାଚନ ମଧ୍ୟ ବର୍ଷେ ଦୁଇବର୍ଷରେ ଥରେ ହେଲାଣି । ଅନ୍ୟ ଦିଗରେ ଆମେ ଏବେ ନୂଆ ନିୟମ କଲେ ଯେ, ଜଣେ ବିଧାୟକ ମାତ୍ର ଗୋଟାଏ ବର୍ଷ ପଦରେ ରହିଲେ(ବିଧାନସଭା ଥରେ ଦେଖନ୍ତୁ କି ନ ଦେଖନ୍ତୁ) ସାରା ଜୀବନ ୨ ହଜାର (ଆଗକୁ ବଢ଼ିବାର ସୁବିଧା ଅଛି) ଟଙ୍କା ପେନ୍‌ସନ୍ ମଧ୍ୟ ପାଇବେ । ଅନ୍ୟାନ୍ୟ ସୁଖ ସୁବିଧା ମଧ୍ୟ ଅଛି । ଏଥିରୁ ଗୋଟିଏ କଥା ଅନ୍ତତଃ ସ୍ପଷ୍ଟ ହେଉଛି ଯେ ଆଉ ଆଠ ଦଶ ବର୍ଷ ପରେ ଆମର ମୋଟ ବଜେଟର ପ୍ରାୟ ଅଧାଅଧି କେବଳ ଏଇ ମହାନ ପ୍ରାକ୍ତନମାନଙ୍କ ପାଇଁ ଚାଲିଯିବ । ବାକି ଅଧିକ ଋଣ ସୁଝିବାରେ ଯିବ । ସେ ଅବସ୍ଥା ତ ଏବେଠୁ ଆରମ୍ଭ ହେଲାଣି । ସେମାନଙ୍କ ପେମେଣ୍ଟଟା ପ୍ରଥମେ କରି ଦେବାକୁ ହେବ । ତା'ପରେ ଆଉ ଅର୍ଥ ବଳିଲେ ଯିନା ସରକାରୀ ଚାକିରିଆମାନେ ଦରମା ପାଇବେ ।

ଗୋଟାଏ ଗଣତନ୍ତ୍ରରେ ଏଥିପାଇଁ ଶକ୍ତିଶାଳୀ ଜନମତ ଆବଶ୍ୟକ । ଜନମତ ଗଢ଼ି ତୋଳିବା ପାଇଁ ଗଣମାଧ୍ୟମର ଗୁରୁଦାୟିତ୍ୱ ଅଛି । କିନ୍ତୁ ଆମ ଦେଶରେ ତାକୁ ମଧ୍ୟ ଚଳୁ କରି ଦିଆ ଯାଇଛି । ତେଣୁ ପବ୍ଲିକ୍ ଓପିନିଅନକୁ ଆମ ଦେଶରେ ବୋକାଙ୍କ ବଡ଼ପଣ ବୋଲି କୁହନ୍ତି । ତା'ର ଅର୍ଥ ତମେ ଯେତେ ଯାହା କହିଲେ ମଧ୍ୟ ସେ କଥା ଶୁଣୁଛି କିଏ ? ବରଂ କହିବାଟା ବୋକାମିର ପରିଚୟ ଦିଏ । ଏଇଟା ତ ଆଉ ଇଂଲଣ୍ଡ ନୁହେଁ, ଜନମତକୁ ସମ୍ମାନ ଦିଆଯିବ । 

( ସମୟ - ୩୦.୮.୯୯)

# ଶିକ୍ଷକ ଆନ୍ଦୋଳନ କାହା ସ୍ୱାର୍ଥରେ ?

ଓଡ଼ିଶାର ଶିକ୍ଷକ ମାନେ ଗତ ବର୍ଷାଧିକ କାଳ ଆନ୍ଦୋଳନ କରି ଆସୁଚନ୍ତି । ଏହି ଆନ୍ଦୋଳନରେ ସବୁ ଶ୍ରେଣୀର ଶିକ୍ଷକମାନେ ଯୋଗ ଦେଇଚନ୍ତି । ପ୍ରାଥମିକ ବିଦ୍ୟାଳୟ ଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ସମସ୍ତେ ଏଥିରେ ଅଛନ୍ତି । ସମସ୍ତଙ୍କର ଆନ୍ଦୋଳନ ଅବଶ୍ୟ ଗୋଟିକରେ ପରିଣତ ହୋଇନାହିଁ । ହେବାଟା ସମ୍ଭବ ନୁହେଁ । କାରଣ ପ୍ରତ୍ୟେକଙ୍କର ସମସ୍ୟା ଅଲଗା ଏବଂ ସମାଧାନର ପନ୍ଥା ମଧ ଏକ ନୁହେଁ । ତଥାପି କେତେକ କ୍ଷେତ୍ରରେ ସେମାନେ ଏକ ହେଇ ଯାଇଚନ୍ତି । ସେମାନେ ଗୋଟିଏ ହେବା ଦ୍ୱାରା ସମାଧାନର ରାସ୍ତାଟା ସରଳ ହୋଇଯାଇଚି ।

ଯେତେବେଳେ ଆନ୍ଦୋଳନଟା ଜୋର୍‌ଦାର ହୋଇଯାଏ ଏବଂ ଗଣ ଆନ୍ଦୋଳନରେ ପରିଣତ ହୋଇଯାଏ ସେତେବେଳେ ହିଁ କେବଳ ସମାଧାନର ରାସ୍ତା ଟିକିଏ ସହଜ ହେଇଯାଏ ।

ଶିକ୍ଷକ ଆନ୍ଦୋଳନର କାରଣଟାକୁ ଯଦି ଆଲୋଚନା କରାଯାଏ ତେବେ ଦେଖାଯିବ ଯେ ସେମାନଙ୍କର ଦାବିଟା ସେମାନଙ୍କର କି ଆଉ କାହାର । ସରକାର କହୁଚନ୍ତି ଶିକ୍ଷାକୁ ସଂକୋଚିତ କରିବାକୁ ହେବ । ସରକାରଙ୍କ ପାଖରେ ଏତେ ଅର୍ଥ ନାହିଁ । ତେଣୁ ସ୍କୁଲ କଲେଜକୁ ଗ୍ରାଣ୍ଟ ଦେଇ ହେବନି । ଏତେ ଶିକ୍ଷକ ମଧ ଆବଶ୍ୟକ ନାହିଁ । ସ୍କୁଲ କଲେଜ ଆବଶ୍ୟକ ନାହିଁ । ଦରମା ଦେଇ ହେବ ନାହିଁ । ବିଶ୍ୱ ବ୍ୟାଙ୍କ ପଇସା ଦେଉନାହିଁ । ସ୍କୁଲ କଲେଜ ସଂଖ୍ୟା କମେଇଲେ, ଶିକ୍ଷକ ସଂଖ୍ୟା କମେଇଲେ ସେମାନେ କିଛି ପଇସା ଦେବେ । ସେମାନେ କୁଆଡ଼େ ହିସାବ କରି କହି ଦେଇଚନ୍ତି ଓଡ଼ିଶା ପରି ଗୋଟିଏ ଛୋଟିଆ ରାଜ୍ୟରେ ଏତେ ପରିମାଣରେ ସ୍କୁଲ କଲେଜର ଆବଶ୍ୟକତା ନାହିଁ ।

ଏବେତ ବିଶ୍ୱବ୍ୟାଙ୍କ ଆମର ସବୁକିଛି । କିଏ ମାନୁ କି ନ ମାନୁ ତାଙ୍କରି ପରାମର୍ଶରେ ଆମ ବଜେଟ ତିଆରି ହେଉଚି । ସେମାନଙ୍କ ନିର୍ଦ୍ଧାରିତ ନୀତି ହିଁ ଆମ ବଜେଟରେ ପ୍ରତିଫଳିତ ହେଉଚି । ତାଙ୍କ ଛଡା ଆମର ଅନ୍ୟ ଗତି ନାହିଁ । ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ଶିଳ୍ପ ଓ ବାଣିଜ୍ୟ ସବୁ କ୍ଷେତ୍ରରେ ଏବେ ବିଶ୍ୱ ବ୍ୟାଙ୍କର ଅନୁମତି ବିନା ଅନ୍ୟ ଉପାୟ ନାହିଁ । ସଂକ୍ଷେପରେ ଏତିକି କୁହାଯାଇପାରେ ଯେ ଆମେ ପୁଣି ଥରେ

ଉପନିବେଶୀୟ ଅବସ୍ଥାକୁ ଫେରି ଯାଇଚୁଁ ଏବଂ ପ୍ରତ୍ୟେକ ବାସ୍ତବତାକୁ ଆଖି ଆଗରେ ରଖିଲେ ଆମେ ଏବେ ପ୍ରାକ୍ ସ୍ୱାଧୀନତା ସମୟ ଅପେକ୍ଷା ବେଶୀ ପରାଧୀନ ହେଇ ପଡ଼ିଚୁଁ । ସେତେବେଳେ ଇଂରେଜମାନେ ସିନା ଆମକୁ ଶାସନ କରୁଥିଲେ । କିନ୍ତୁ ଏବେ ସେମାନେ ନ ଥିଲେ ମଧ ଆମେ ସେମାନଙ୍କ ଅର୍ଥନୈତିକ ଉପନିବେଶବାଦ ପାଖରେ ପୂରାପୂରି ନିଜକୁ ସମର୍ପଣ କରି ଦେଇଚୁଁ । ସ୍ୱାଧୀନତା ପୂର୍ବ ଓ ପରର ଭାରତବର୍ଷ ଭିତରେ ତାହ ହିଁ ପାର୍ଥକ୍ୟ ।

ଆମର ଶିକ୍ଷାନୀତି ସେମାନଙ୍କ ଦ୍ୱାରା ପ୍ରଣୀତ ହେବାକୁ ଯାଉଚି । ଆଉ କିଛିଦିନ ପରେ ସେଇମାନେ ହିଁ ଆମ ପିଲାଙ୍କର ପାଠ ବହି ପ୍ରସ୍ତୁତ କରିବେ । ଏବେ ଯେ ହେଉନାହିଁ ସେ କଥା ନୁହେଁ । ବିଶ୍ୱବିଦ୍ୟାଳୟ, ଉଚ୍ଚତର ଗବେଷଣା ଓ ଟ୍ରେନିଂ ପାଇଁ ଆମେ ଏବେ ତାଙ୍କ ନୀତିକୁ ବା ପାଠ୍ୟକ୍ରମକୁ ବେଶୀ ପ୍ରାଧାନ୍ୟ ଦେଉଚୁଁ । ବିଜ୍ଞାନ ଓ କାରିଗରୀ କ୍ଷେତ୍ରରେ ତ ସେମାନଙ୍କ ଛଡ଼ା ଅନ୍ୟ ଗତି ନାହିଁ ଓ ଏବେ ଯେଉଁ ନୂଆ ନୂଆ ଟେକ୍‌ନୋଲଜିମାନ ଆସିଲାଣି ତାକୁ ନପଢ଼ି ଉପାୟ ନାହିଁ ଏବଂ ପଢ଼ିବାକୁ ହେଲେ ସେମାନଙ୍କ ସାହାଯ୍ୟ ଅପରିହାର୍ଯ୍ୟ । ଅବସ୍ଥା ଏପରି ହେଲାଣି ଯେ ଭାରତୀୟ ଦର୍ଶନରେ ଗବେଷଣା ପାଇଁ ଆମେ ଭାରତ ବାହାରକୁ ଯିବାକୁ ଉଚିତ ମନେ କରୁଚୁଁ ।

ଆମର ନିର୍ଭରଶୀଳତା ଯେତିକି ବଢୁଚି ସେମାନେ ଆମର ମାଲିକ ହେବାକୁ ସେତିକି ଚେଷ୍ଟା କରୁଚନ୍ତି । ଆମର ସମଗ୍ର ଅର୍ଥନୀତି ଏବେ ସେମାନଙ୍କ ହାତରେ । ତେଣୁ ଶିକ୍ଷା ସଂକୋଚନର ଆବଶ୍ୟକତା ଜରୁରୀ ହେଇ ପଡୁଚି । ଯେତେ ବିଶ୍ୱବିଦ୍ୟାଳୟ, ସ୍କୁଲ, କଲେଜ ଏଠି କମିବ ସେତିକି ଏଠିକା ପିଲା ସେଆଡ଼କୁ ଯିବେ ପଢ଼ିବା ପାଇଁ । ଭାରତୀୟଙ୍କ ପାଇଁ ଏବେ ବିଦେଶୀ ବିଶ୍ୱବିଦ୍ୟାଳୟମାନ କବାଟ ଖୋଲି ବସିଚନ୍ତି । ପ୍ରତିଦିନ ଏଥିପାଇଁ ହଜାର ହଜାର ବିଜ୍ଞାପନ ପ୍ରକାଶ ପାଉଚି । ଯେତେ ଏଠୁ ପାଠ ପଢ଼ିବା ପାଇଁ ସେ ଆଡ଼କୁ ଯିବେ ସେତେ ସେମାନଙ୍କର ଲାଭ । ତେଣୁ ଏଠି ଯଦି ପ୍ରଚୁର ପରିମାଣରେ ସ୍କୁଲ କଲେଜ ଓ ବିଶ୍ୱବିଦ୍ୟାଳୟ ଖୋଲେ ସେଠି ସେମାନେ କ'ଣ କରିବେ ?

ଶିକ୍ଷା ଆଜି ଏଇ ସ୍ତରକୁ ଆସିଚି । ରବର୍ଟ କ୍ଲାଇବଙ୍କୁ ଭାରତ ଭିତରେ ପଶିବାକୁ ଯୁଦ୍ଧ କରିବାକୁ ପଡ଼ିଥିଲା । ସେଥିପାଇଁ ସେମାନଙ୍କୁ ସେତେବେଳେ ଅନେକ ରକ୍ତ କ୍ଷୟ କରିବାକୁ ପଡ଼ିଥିଲା । କିନ୍ତୁ ଏବେ ସେମାନଙ୍କୁ ଆମେ ଆମର ପ୍ରଭୁ ହିସାବରେ ବନ୍ଦାପନା କରି ପାଛୋଟି ନେଇ ଆସୁଚୁଁ । ଏହା ହିଁ ସେ ବେଳ ଓ ଏ ବେଳ ଭିତରେ ଫରକ । ଦାସତ୍ୱ ଆମ ମାନସିକତା ଭିତରେ ରେଣୁ ରେଣୁ ହେଇ ଭରି ଗଲାଣି ।

ଶିକ୍ଷକ ଆନ୍ଦୋଳନ ଆଜି ସେଇ ରୁଗ୍ଣ ମାନସିକତା ବିରୋଧରେ ପ୍ରେରିତ । ଶିକ୍ଷାର ସଂକୋଚନ, ଶିକ୍ଷକ ଛଟେଇ, ସ୍କୁଲ କଲେଜର ଆଖିବୁଜା ଉଚ୍ଛେଦ,

ଶିକ୍ଷକମାନଙ୍କ ଦରମା ବନ୍ଦ କରିବା, ଦରମା ନ ବଢ଼େଇବା ଏବଂ ଗୋଟିଏ କଥାରେ ସମଗ୍ର ଶିକ୍ଷା ବ୍ୟବସ୍ଥାକୁ ବିଦେଶୀମାନଙ୍କ ହାତରେ ଟେକିଦେବାକୁ ଶିକ୍ଷକମାନେ ବିରୋଧ କରି ଆସୁଛନ୍ତି ।

ଏଠି ଆମେ ଟିକିଏ ଇତିହାସକୁ ଫେରିଯିବା । ୧୯୦୦ ମସିହା ଯାଏ ଆମ ଦେଶରେ ଶିକ୍ଷାର ପ୍ରାୟ ମୋଟେ ନଥିଲା । ଆମ ପଡୋଶୀ ବଙ୍ଗଳା ରାଜ୍ୟରେ ମଧ୍ୟ ବିଶେଷ କିଛି ନଥିଲା । ୧୯୦୫ ରେ ବଙ୍ଗଳାକୁ ଭାଗ ଭାଗ କରିଦେଲା ପରେ ସମଗ୍ର ଦେଶରେ (ଅବିଭକ୍ତ ଭାରତବର୍ଷ) ସେ ବିଭାଜନ ବିରୋଧରେ ଆନ୍ଦୋଳନ ଆରମ୍ଭ ହେଲା । ଆନ୍ଦୋଳନ ହିଂସାତ୍ମକ ରୂପ ମଧ୍ୟ ଗ୍ରହଣ କଲା । ସେତେବେଳେ 'ସ୍ୱଦେଶୀ' କଥାଟା ମଧ୍ୟ ଉଠିଲା । ଇଂରେଜୀ ଭାଷାଟାକୁ ସେତେବେଳେ ଗୋଟାଏ 'ଏଲିନ୍ ଲେଙ୍ଗୁଏଜ୍' କହି ତାକୁ ନ ପଢ଼ିବା ପାଇଁ ଲୋକଙ୍କୁ କୁହାଗଲା । କେବଳ ଦେଶୀ ଭାଷା ସାହିତ୍ୟ ଓ ସଂସ୍କୃତିକୁ ଉତ୍ସାହିତ କରିବାକୁ ଦେଶର ଲୋକଙ୍କ ନିଜ ଚେଷ୍ଟାରେ କିଛି କିଛି ସ୍କୁଲ କଲେଜ ଖୋଲିବାକୁ ଆରମ୍ଭ କଲା । ସରକାର କିନ୍ତୁ ତା' ଉପରେ କଟକଣା ଜାରି କଲେ । ପାଠ ପଢ଼ା ଓ ପରୀକ୍ଷାର ସିଷ୍ଟମ୍‌କୁ ଏତେ କଡ଼ାକଡ଼ି କଲେ ଯେ ପାସ୍ କରିବା ବଡ଼ କଷ୍ଟ ହୋଇ ପଡ଼ିଲା । କାରଣ ସେମାନେ ଜାଣିଲେ ଯେ ଶିକ୍ଷା ଯେତେ ବଢୁଚି, ଇଂରେଜ ବିରୋଧୀ ଆନ୍ଦୋଳନ ମଧ୍ୟ ସେତିକି ଦାନା ବାନ୍ଧୁଚି ଏବଂ ବିଶେଷ କରି ଛାତ୍ରମାନେ ବେଶୀ ସେ ଆନ୍ଦୋଳନରେ ଯୋଗ ଦେଉଚନ୍ତି । ଏଇଟା ତାଙ୍କ ପ୍ରଶାସନ ପାଇଁ ଗୋଟିଏ ଚିନ୍ତାର କାରଣ ହୋଇ ପଡ଼ିଲା । ତେଣୁ ଶିକ୍ଷା ଉପରେ ସମସ୍ତ ପ୍ରକାର କଟକଣା ଜାରି କରାଗଲା ।

ମଣିଷର ଜ୍ଞାନର ସୀମା ଯେତେ ବଢ଼ିବ ସେତିକି ତା'ର ସମାଜ ସଚେତନତା ବୃଦ୍ଧି ପାଇବ । ସମାଜ ସଚେତନତା ଯେତିକି ବଢ଼ିବ ପ୍ରଶାସନରେ ସେତିକି ଅସୁବିଧା ସୃଷ୍ଟି ହେବ, ଯଦି ସେ ପ୍ରଶାସନ ଲୋକ ମଙ୍ଗଳ ପ୍ରତି ଆଖିବୁଜି ଦେଉଥିବ । କିନ୍ତୁ ପ୍ରଶାସନ ତା' ନିଜର ଦୁର୍ବଳତା କଥା କେବେ ବି ସ୍ୱୀକାର କରେ ନାହିଁ । ଯେମିତି ଦେଖୁନାହାନ୍ତି, ତେହେଲ୍‌କା ଘଟଣାରେ ସମସ୍ତେ ଧରା ପଡ଼ିଯାଇଥିଲେ ମଧ୍ୟ କହୁଚନ୍ତି ସରକାରକୁ ହଟେଇବା ପାଇଁ ଏହା ଏକ ଷଡ଼ଯନ୍ତ୍ର ।

ଆମ ଦେଶ ସ୍ୱାଧୀନ ହେବାର ୫୦ ବର୍ଷ ବିତିଯାଇଥିଲେ ମଧ୍ୟ ଆମ ନେତୃତ୍ୱର ଔପନିବେଶିକ ମାନସିକତା ଏବେ ମଧ୍ୟ ଜୋରଦାର ଅଛି । ଶିକ୍ଷା ସଂକୋଚନ ସେଇ ସ୍ୱାର୍ଥରେ । ସେମାନେ ବୁଝୁଚନ୍ତି ଶିକ୍ଷାର ପ୍ରସାରଣ ଯେତିକି ବଢ଼ିବ ଲୋକଙ୍କର ସରକାର ବିରୋଧୀ ଚେତନା ସେତିକି ବଢ଼ିବ । ସେମାନେ ଯେତିକି ସଚେତନ ହେବେ ସେତିକି ନ୍ୟୁନତମ ଅଧିକାର ସପକ୍ଷରେ ଯୁକ୍ତି ବାଢ଼ିବେ । ପ୍ରଶାସନ ତଥା ନେତୃତ୍ୱର

ଦୋଷଦୁର୍ବଳତା ସେମାନଙ୍କ ଆଖିରେ ଅଧିକ ଜଳ ଜଳ ହେଇ ଦେଖାଯିବ । ସେତେବେଳେ ସେମାନେ ଅସୁବିଧାରେ ପଡ଼ିବେ । ସେମାନଙ୍କର ଏକଛତ୍ର ଆଧିପତ୍ୟ ଉପରେ ଆଞ୍ଚ ଆସିବ । ସେମାନେ ଯେ, ଯାବତ୍ ଚନ୍ଦ୍ରାର୍କେ ଇଂରେଜମାନଙ୍କ ପରି ଶାସନ କରିବାକୁ ଚାହାଁନ୍ତି, ଏ ଭିତିରି କଥାଟା ଭୁଲି ଗଲେ ଚଳିବ ନାହିଁ ।

ଶିକ୍ଷକ ଆନ୍ଦୋଳନ ସେଇମାନଙ୍କ ବିରୋଧରେ । ସେଇ ସିଷ୍ଟମ ବିରୋଧରେ । ସରକାରଙ୍କ ସେଇ ସମାଜବିରୋଧୀ ନୀତି ବିରୋଧରେ । ଏହାକୁ ସମାଜର ଅଶିକ୍ଷା, କୁଶିକ୍ଷା ବିରୋଧରେ ଆଉ ଏକ ମୁକ୍ତି ସଂଗ୍ରାମ ବୋଲି କହିହେବ ।

ଆଜି ହଜାର ହଜାର ସଂଖ୍ୟାରେ ଶିକ୍ଷକମାନେ ସ୍କୁଲ କଲେଜ ଛାଡ଼ି ପଦାକୁ ଆସି ଲାଠି ଓ ଗୁଳି ସାମନାରେ ଠିଆହେବା କଥାଟାକୁ ଆମର ସ୍ୱାଧୀନତା ସଂଗ୍ରାମ କଥା ମନେ ପକେଇ ଦେଉଚି । ଶିକ୍ଷକମାନେ ଆମର ନମସ୍ୟ- ଆମ ସମାଜର ନମସ୍ୟ- ଜାତିର ନମସ୍ୟ । ସମାଜକୁ ବଦଳେଇବାରେ ସେମାନଙ୍କ ଭୂମିକା ଯୁଗେ ଯୁଗେ ସ୍ୱୀକୃତ । ଆମ ନେତୃତ୍ୱର ଅବିମୃଶ୍ୟକାରିତା ବିରୋଧରେ ଅନ୍ୟ କେହି ସ୍ୱର ଉତ୍ତୋଳନ କରୁ ନ ଥିଲା ବେଳେ ସେମାନଙ୍କ ଚେଷ୍ଟା/ଦାନ ଓଡ଼ିଶାର ଇତିହାସରେ ଆଉ ଏକ ଉଜ୍ଜ୍ୱଳ ଅଧ୍ୟାୟ ସୃଷ୍ଟି କରିବ । 

(ସମୟ-୨୦.୪.୨୦୦୧)

# ମାନବିକ ଅଧିକାର ବନାମ ଅମାନବିକ କାର୍ଯ୍ୟ

ଜାତୀୟ ମାନବିକ ଅଧିକାର କମିଶନ ଏବେ ଏବେ ହାଇକୋର୍ଟର ମୁଖ୍ୟ ବିଚାରପତିମାନଙ୍କୁ ଚିଠି ଲେଖି କହିଛନ୍ତି ଯେ ସେମାନେ ଜିଲ୍ଲା ଓ ସେସନ୍ସ ଜଜମାନଙ୍କୁ ନିର୍ଦ୍ଦେଶ ଦିଅନ୍ତୁ ଯେ ସେମାନେ ସେମାନଙ୍କ ଅଧିନରେ ଥିବା ଜେଲମାନଙ୍କରେ ହେଉଥିବା ଅତିରିକ୍ତ ଲୋକଗହଳି କମେଇବାକୁ ଚେଷ୍ଟା କରନ୍ତୁ ଏବଂ ତା' ସହିତ ଅନେକ ଦିନୁ ବାକି ପଡ଼ିଥିବା କେସ୍‌ଗୁଡ଼ିକର ଶୀଘ୍ର ଫଏସଲା କରନ୍ତୁ । ଜାତୀୟ ମାନବିକ ଅଧିକାର କମିଶନର ଚେୟାରମ୍ୟାନ୍ ଜଷ୍ଟିସ୍ ଜେ.ଏସ୍.ବର୍ମା ସେ ଚିଠିରେ ଆହୁରି ଲେଖିଛନ୍ତି ଯେ କମିଶନର ସଦସ୍ୟ ଏବଂ ଅନ୍ୟ ଅଧିକାରୀମାନେ ଇତିମଧ୍ୟରେ ଦେଶର କେତେକ ପ୍ରମୁଖ ଜେଲ ପରିଦର୍ଶନ କରିଛନ୍ତି । ସେମାନେ ଜେଲମାନଙ୍କରେ ଥିବା ଅତ୍ୟଧିକ ଗହଳି (ଓଭରକ୍ରାଉଡିଙ୍ଗ୍), ଅସ୍ୱାସ୍ଥ୍ୟକର ପରିବେଶ ଏବଂ ଜେଲ ପ୍ରଶାସନର ଅବ୍ୟବସ୍ଥା ଦେଖି ବିଚଳିତ ହୋଇ ପଡ଼ିଛନ୍ତି । ସୁପ୍ରିମ୍‌କୋର୍ଟଙ୍କ ନିର୍ଦ୍ଦେଶକୁ ଉଦ୍ଧାର କରି ସେ ଆହୁରି କହିଛନ୍ତି ଯେ, ଜିଲ୍ଲା ଓ ସେସନ୍ସ ଜଜ୍‌ମାନେ ଅତିଶୀଘ୍ର ଜେଲମାନ ପରିଦର୍ଶନ କରି ବନ୍ଦୀମାନଙ୍କ ଅଭିଯୋଗଗୁଡ଼ିକ ଉପରେ ଅନୁସନ୍ଧାନ କରିବେ ଏବଂ ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବେ ।

କମିଶନ ଜେଲରେ ଥିବା ବନ୍ଦୀମାନଙ୍କ ଅବସ୍ଥା ଏହା ଭିତରେ ଅନେକ ପରିମାଣରେ ଖରାପ ହୋଇ ଯାଇଛି ବୋଲି କ୍ଷୋଭ ପ୍ରକାଶ କରିଛନ୍ତି । ସେ ଲେଖିଛନ୍ତି, ଛୋଟ ଛୋଟ ଅପରାଧରେ ବନ୍ଦୀଥିବା ଅପରାଧୀମାନେ ବର୍ଷ ବର୍ଷ ଧରି ଜେଲରେ ନାନା ନିର୍ଯାତନାର ଶିକାର ହେଉଛନ୍ତି । ତାର ଏକମାତ୍ର କାରଣ ଏହି ଯେ ସେମାନଙ୍କ କେସ୍‌ଗୁଡ଼ିକ ବର୍ଷ ବର୍ଷ ଧରି ଫଇସଲା ହେଇ ପାରେ ନାହିଁ । ଜିଲ୍ଲା ଓ ସେସନ୍ସ ଜଜ୍‌ମାନଙ୍କୁ ଜେଲ ମାନୁଏଲ ଅନୁସାରେ ଏକ୍ସ ଅଫିସିଓ 'ଭିଜିଟର୍' ଭାବେ ଗ୍ରହଣ କରା ଯାଇଛି । ତେଣୁ ସେମାନେ ଦେଖିବା ଉଚିତ୍ ଯେ ବନ୍ଦୀମାନେ ଯେପରି ସ୍ୱାସ୍ଥ୍ୟ, ଚିକିତ୍ସାର ନ୍ୟୂନତମ ମୌଳିକ ଅଧିକାରରୁ ବଞ୍ଚିତ ନ ହୁଅନ୍ତି ।

ଜଷ୍ଟିସ୍ ବର୍ମାଙ୍କ ଏ ଚିଠି ରାଜ୍ୟ ପ୍ରଶାସନ ବା ଜେଲ କର୍ତ୍ତୃପକ୍ଷଙ୍କ ଉପରେ କି ପ୍ରଭାବ ପକାଇବ ସେ କଥା ଅବଶ୍ୟ ଆମେ ଜାଣୁଁନା । କିନ୍ତୁ ଯୁଗ ଯୁଗରୁ ଯେଉଁ ପ୍ରଶାସନ ତାର ନିଜସ୍ୱ ସ୍ୱପ୍ନ ବିଳାସର ଚାରି କାନ୍ଥ ଭିତରେ ନିଜକୁ ହଜାଇ ଦେଇ ଆସିଛି ସେ ଯେ ହଠାତ୍ ଆଖି ଖୋଲି ପାରିବ ଏମିତି କିଛି ଆଶା କରାଯାଇ ନ ପାରେ । ଯେ ଏପର୍ଯ୍ୟନ୍ତ ଆମ ପ୍ରଶାସନରୁ ଔପନିବେଶିକ ଚିନ୍ତା ଓ ଚେତନାର ପ୍ରଭାବ ହ୍ରାସ ନ ପାଇଛି

ସେତେବେଳ ଯାଏ ଆମେ ପ୍ରଶାସନ ଠାରୁ ଖୁବ୍ ବେଶି କିଛି ଆଶା କରିବା ଉଚିତ୍ ନୁହେଁ । ଗଣତନ୍ତ୍ରରେ ପ୍ରଶାସନ ଏକ ମୁଖ୍ୟ ଅଂଶ ଗ୍ରହଣ କରେ । ଯେଉଁଠି ପ୍ରଶାସନ ଜନତାର ବିଶ୍ୱସନୀୟତା ହରାଇ ଥାଏ ସେଠି ଗଣତନ୍ତ୍ର ଅର୍ଥହୀନ ହୋଇଯାଏ । ଆମ ଦେଶରେ ଏହି ବାସ୍ତବତାକୁ ସ୍ୱୀକାର କରିବାକୁ ହେବ । ସ୍ୱାଧୀନତା ପରେ ଯେଉଁ ପରିବର୍ତ୍ତନ ହେବ ବୋଲି ଆଶା କରାଯାଉ ଥିଲା ତାହା ଏବେ ପଚାଶ ବର୍ଷ ଅତିକ୍ରାନ୍ତ ହୋଇଥିଲେ ମଧ୍ୟ କିଛି ହେଲା ନାହିଁ । ଏଇ ଦୃଷ୍ଟିରୁ ଜାତୀୟ ମାନବାଧିକାର କମିଶନଙ୍କ ନିର୍ଦ୍ଦେଶ କଥା ଚିନ୍ତା କଲେ ମନଟା ଆପେ ଆପେ ସଂକୋଚିତ ହୋଇଆସେ ।

ଓଡ଼ିଶାରେ ମାନବିକ ଅଧିକାର କମିଶନ ଏଯାଏ ଗଠିତ ହୋଇନାହିଁ । ଖୁବ୍ ନିକଟରେ ଗଠିତ ହେବ ସେ ସମ୍ଭାବନା ମଧ୍ୟ ଦେଖାଯାଉ ନାହିଁ । ତା'ର କାରଣ ଦୁଇଟି ବୋଲି ଅନୁମାନ କରାଯାଇ ପାରେ । ଭାରତର ପୂର୍ବତନ ବିଚାରପତି ଶ୍ରୀ ରଙ୍ଗନାଥ ମିଶ୍ର (ଏବେ ରାଜ୍ୟ ସଭାର ସଦସ୍ୟ) ଯେତେବେଳେ ଜାତୀୟ ମାନବିକ ଅଧିକାର କମିଶନର ମୁଖ୍ୟ ଥିଲେ ସେତେବେଳେ ଥରେ କହିଥିଲେ ଯେ ''ଭାରତରେ ମାନବିକ ଅଧିକାରର ଉଲ୍ଲଂଘନ ହୋଇନାହିଁ'' । ଅଥଚ ଠିକ୍ ତା'ପରେ ପରେ ଭାରତର ଉଚ୍ଚତମ ନ୍ୟାୟାଳୟ ପଞ୍ଜାବ ଓ କାଶ୍ମୀରରେ ସବୁଠାରୁ ବେଶି ମାନବିକ ଅଧିକାରର ଉଲ୍ଲଂଘନ ହୋଇଛି ବୋଲି ବହୁ ଅଫିସରଙ୍କୁ ଦଣ୍ଡ ଦେଇ ଦେଲେ । ୧୯୯୦ ରୁ ୧୯୯୨ ଭିତରେ ଆସାମରେ ବିଶେଷକରି ରାଷ୍ଟ୍ରପତି ଶାସନ ଜାରି ଥିବା ସମୟରେ ବହୁ ମାନବିକ ଅଧିକାର ଉଲ୍ଲଂଘନ ହୋଇଥିଲା ବୋଲି ଅଭିଯୋଗ ହୋଇଥିଲା । ତେବେ ସେ ଯା ହେଉ, ଖୋଦ ମାନବିକ ଅଧିକାର କମିଶନର ଚେୟାରମ୍ୟାନ ଯଦି କହନ୍ତି ଦେଶରେ ମାନବିକ ଅଧିକାରର ଉଲ୍ଲଂଘନ ହୋଇନାହିଁ ତେବେ ପ୍ରାଦେଶିକ ସରକାରମାନେ ନିଜ ରାଜ୍ୟରେ କମିଶନ ଗଠନ କରିବାକୁ ମନ ବଳାଇ ନ ଥିବେ । ତା'ର ଦ୍ୱିତୀୟ କାରଣଟି ହୋଇଥିବ ଯେ, ସରକାର ଭାବୁଥିବେ କମିଶନ ଗଢ଼ି ଦେଲା ମାତ୍ରେ କାଳେ ସେ ଜାଲରେ ବହୁ ବଡ଼ ବଡ଼ ମାଛ ଏକାଥରେ ପଡ଼ିଯିବେ ।

ଭାରତ ଏପରି ଏକ ଦେଶ ଯେଉଁଠି ଆଇନ ତିଆରି ହୁଏ କେବଳ ଭାଙ୍ଗିବା ପାଇଁ । ଆଇନ ବିଶାରଦମାନେ ପ୍ରଥମେ ଖୋଜନ୍ତି ଆଇନର ନେଗେଟିଭ୍ ଅଂଶଟାକୁ । ତା'ପରେ ଆଉ କିଛି ଅସୁବିଧା ହୁଏ ନାହିଁ । ଆଇନ ତା' ବାଟରେ ନ ଯାଇ ଅନ୍ୟମାନଙ୍କ ବାଟରେ ଚାଲିଯାଏ ।

ମାନବିକ ଅଧିକାର କଥାଟା ନୂଆ ନୁହେଁ । ଆମ ଦେଶରେ ନୂଆ ନୁହେଁ କି ପୃଥିବୀରେ ମଧ୍ୟ ନୂଆ ନୁହେଁ । ଏ ଶବ୍ଦଟା ମଣିଷ ସୃଷ୍ଟି ସମୟରୁ ହିଁ ଥିଲା । ମଣିଷର ଜନ୍ମ ଠାରୁ ଅତ୍ୟାଚାର ଯେମିତି ସୃଷ୍ଟି ହୋଇଥିଲା ସେ ଅତ୍ୟାଚାରରୁ ମୁକ୍ତି ପାଇଁ ମଧ୍ୟ ମଣିଷ ସେତିକି ଚିନ୍ତା କରିଥିଲା । କିନ୍ତୁ ତାହା ନିର୍ଦ୍ଦିଷ୍ଟ ରୂପ ନେଇ ପାରି ନଥିଲା ।

୧୯୪୮ରେ ମାନବିକ ଅଧିକାରର ପ୍ରଥମ ବିଶ୍ୱ ଘୋଷଣା ପ୍ରକାଶ ପାଇଲା ପରେ ୧୯୫୦ରେ ତା'ର ପ୍ରଥମ ଅଧିବେଶନ ବସେ କେବଳ ୟୁରୋପ ମହାଦେଶର ସଦସ୍ୟମାନଙ୍କୁ ନେଇ । ସେଥିରେ ଜୀବନ ପାଇଁ ଅଧିକାର, ସମ୍ମାନ ବା ମର୍ଯ୍ୟାଦା ପାଇଁ ଅଧିକାର, ପୁଲିସ ବା ପ୍ରଶାସନର ଅତ୍ୟାଚାର ବିରୁଦ୍ଧରେ ଅଧିକାର, ବେଠି ବା ଦାସତ୍ୱ ବିରୁଦ୍ଧରେ ଅଧିକାର, ଶିକ୍ଷା, ସ୍ୱାସ୍ଥ୍ୟ ଠାରୁ ଆରମ୍ଭ କରି ବ୍ୟକ୍ତି ସ୍ୱାଧୀନତା, ଧର୍ମାଚରଣ ପ୍ରଭୃତି ମୋଟ ୩୨ଟି ବିଷୟରେ ପ୍ରସ୍ତାବ ଗୃହୀତ ହେଲା । ଏହି ପ୍ରସ୍ତାବ ଅନୁଯାୟୀ ୧୬ ଡ଼ିସେମ୍ବର ୧୯୬୬ ରେ ଜାତିସଂଘ ସାଧାରଣ ଅଧିବେଶନ ଆଉ ଏକ ପ୍ରସ୍ତାବ ପାଶ୍ କଲେ ଏବଂ ସେଥିରେ ଅର୍ଥନୈତିକ, ସାମାଜିକ ତଥା ସାଂସ୍କୃତିକ ଅଧିକାରମାନଙ୍କୁ ଅନ୍ତର୍ଭୁକ୍ତ କରାଗଲା । ଏହି ପ୍ରସ୍ତାବରେ ଭାରତ ମଧ୍ୟ ପକ୍ଷଭୁକ୍ତ ହୋଇଛି ।

ତା'ର ଅନେକ ଦିନ ପରେ ଆମ ଦେଶରେ ମାନବିକ ସୁରକ୍ଷା ଆଇନ ୧୯୯୩ ରେ ପାଶ୍ ହେଲା । ଏହି ଆଇନ ମୋଟାମୋଟି ଆମ ସମ୍ବିଧାନର ମୌଳିକ ଅଧିକାରର ଭିତ୍ତିଭୂମିକୁ ନେଇ ପ୍ରଣୀତ ହୋଇଛି । ଏହି ଆଇନ ପ୍ରଣୀତ ହେବା ପୂର୍ବରୁ ଓ ପରେ ଏହା ବହୁ ଭାବରେ ଓ ପୁଙ୍ଖାନୁପୁଙ୍ଖ ଭାବେ ଆଲୋଚିତ ହୋଇଛି । ଏପରିକି ସର୍ବଦଳୀୟ ସମ୍ମିଳନୀ ତଥା ମୁଖ୍ୟମନ୍ତ୍ରୀମାନଙ୍କ ସମ୍ମିଳନୀରେ ମଧ୍ୟ ଆଲୋଚିତ ହୋଇ ସହମତି ପ୍ରକାଶ ପାଇଛି ।

ମାନବିକ ଅଧିକାରର ଯେଉଁ ପ୍ରସ୍ତାବ ଜାତିସଂଘରେ ଗୃହୀତ ହେଲା ତାହା ସମଗ୍ର ମଣିଷ ସମାଜ ପାଇଁ ଏକ ଶୁଭ ଆଶୀର୍ବାଦ । ତେଣୁ ଏହାକୁ ବିଂଶ ଶତାବ୍ଦୀର ଏକ ମହାନ ଦାନ ବୋଲି କହିହେବ । ପୃଥିବୀର ପ୍ରତ୍ୟେକ ଦେଶରେ ସବୁବେଳେ ଦୁର୍ବଳ ଓ ନିରୀହମାନେ ଅତ୍ୟାଚାରର ସମ୍ମୁଖୀନ ହେଉଛନ୍ତି । ସେମାନଙ୍କୁ ସୁରକ୍ଷା ଦେବା ହିଁ ଏହାର ଉଦ୍ଦେଶ୍ୟ ।

ମଣିଷର ଜନ୍ମ କେବେ ବି ଅତ୍ୟାଚାର ଓ ଶୋଷଣ ପାଇଁ ହୋଇନାହିଁ କି ହେଇ ନଥିଲା । ସେମାନେ ପୃଥିବୀର ଅନ୍ୟ ସବୁ ଶ୍ରେଣୀର ଜନ୍ତୁମାନଙ୍କ ଅପେକ୍ଷା ଉନ୍ନତ ସ୍ତରର ହୋଇଥିବାରୁ ସେମାନଙ୍କ ଖାଦ୍ୟ, ପରିବେଶ, ସ୍ୱାସ୍ଥ୍ୟ ଓ ଅନ୍ୟାନ୍ୟ ସୁଖ ସୁବିଧା ଉନ୍ନତ ସ୍ତରର ହେବାକୁ ବାଧ୍ୟ । ଏ କ୍ଷେତ୍ରରେ ସମାଜ ବା ରାଷ୍ଟ୍ର ମଣିଷମାନଙ୍କୁ ସେମାନଙ୍କର ସେଇ ସବୁ ନ୍ୟୂନତମ ଅଧିକାରରୁ ବଞ୍ଚିତ କରି ପାରିବ ନାହିଁ ।

ଦିନ ଥିଲା ଯେତେବେଳେ ମଣିଷ ତା'ର ସକଳ ସୁଖ ସୁବିଧା ପାଇଁ କେବଳ ଈଶ୍ୱରଙ୍କ ଉପରେ ନିର୍ଭର କରୁଥିଲା । ଖାଦ୍ୟ, ବସ୍ତ୍ର, ବାସଗୃହ, ରୋଗ ଓ ଅନ୍ୟାନ୍ୟ ସବୁକଥା ପାଇଁ ସେ ଭାଗ୍ୟ ଉପରେ ନିର୍ଭର କରୁଥିଲା । ସେଦିନ ଏବେ ଆଉ ନାହିଁ । ମଣିଷ ଏବେ ଏକ ଭିନ୍ନ ଯୁଗରେ ପହଞ୍ଚିଲାଣି । ସେ ଈଶ୍ୱରଙ୍କ ଅପେକ୍ଷା ତା'ନିଜ ବୁଦ୍ଧି ଓ ବାହୁ ଉପରେ ବେଶି ନିର୍ଭର କଲାଣି । ନ୍ୟାୟ ପାଇବାକୁ ସେ ନିଜର ଅଧିକାର

ଭାବରେ ଗ୍ରହଣ କଲାଣି । ତା'ର ଦାବି ଓ ଅଧିକାରକୁ ସେ ରାଷ୍ଟ୍ର ଠାରୁ ଛଡ଼େଇ ନେବାକୁ ପ୍ରସ୍ତୁତ ହେଲାଣି । ଏହିପରି ଏକ ଚିନ୍ତାରୁ ମାନବିକ ଅଧିକାରର ନାରା ସୃଷ୍ଟି ହୋଇଛି । ଏହା ସମାଜ ବା ରାଷ୍ଟ୍ରର ଦୟା ନୁହେଁ । ଆମ ଦେଶରେ ନାଗରିକ ଅଧିକାର କମିଶନ ଆଜି ସେଇ 'ଅଧିକାର' ପାଇଁ ପ୍ରତିଶ୍ରୁତିବଦ୍ଧ । ସେମାନେ ଚାହାଁନ୍ତି ନାଗରିକମାନେ ସେ ସବୁ ସୁଖସୁବିଧା ଉପଭୋଗ କରନ୍ତୁ । ନାଗରିକ ଅଧିକାର ଶବ୍ଦ ଦୁଇଟି ଏପରି ବ୍ୟାପକ ଯେ ତାକୁ କୌଣସି ଗୋଟିଏ ସଂଜ୍ଞା ଭିତରେ ଆବଦ୍ଧ କରି ରଖାଯାଇ ପାରେନା । ଆଧୁନିକ ସମାଜରେ ତାକୁ ବହୁଆଡୁ ଆଲୋଚନା କରିହେବ । ତେଣୁ ମଣିଷ ଜାତିର ସୁରକ୍ଷା ପାଇଁ ଏହା ଏକ ଚମତ୍କାର ଅସ୍ତ୍ର । ମଣିଷ ତାକୁ ଯେ କୌଣସି ସମୟରେ ଯେ କୌଣସି ଅବସ୍ଥାରେ ବ୍ୟବହାର କରିପାରିବ ।

ପ୍ରଶାସନ ଏଥିପାଇଁ ଖୁବ୍ ଭୟଭୀତ ହୋଇ ପଡ଼ିଛି । ସେ ସାଧାରଣ ଜନତାକୁ ଏତେ ସୁଖ ସୁବିଧା ଦେବାକୁ ପ୍ରସ୍ତୁତ ନୁହେଁ । 'ଅପରାଧୀ ନୁହେଁ ଅପରାଧକୁ ଘୃଣା କର' ଏ ଆପ୍ତବାଣୀକୁ ସମ୍ମାନ ଦେଇ ସେମାନେ ଅକାରଣରେ ଆଇନର ଜାଲରେ ଛନ୍ଦି ହେବାକୁ ଚାହାଁନ୍ତି ନାହିଁ କି ତା'ପାଇଁ ଏକ ଭିନ୍ନ ପରମ୍ପରା ସୃଷ୍ଟି କରିବାକୁ ମଧ ଚାହାଁନ୍ତି ନାହିଁ । 'ଶାସନ' ଶବ୍ଦର ଅର୍ଥକୁ ସେମାନେ ଭିନ୍ନ ଅର୍ଥ ଦେଇ ସମଗ୍ର ଜନତାକୁ ନିଜ ଅକ୍ତିଆରରେ ରଖିବାକୁ ଚାହାଁନ୍ତି ଏବଂ ତାଙ୍କ ଉପରେ ଯଥେଚ୍ଛା ବ୍ୟବହାର କରନ୍ତି । ସେମାନେ ଆଇନକୁ ଖାତିର କରନ୍ତି ନାହିଁ । ନ୍ୟାୟପାଳିକାକୁ ମଧ ଆଖି ଆଡେଇ କେବେ ଦେଖନ୍ତି ନାହିଁ ।

ଭାରତୀୟ ଜେଲମାନଙ୍କରେ କିପରି ଅମାନବିକ କାର୍ଯ୍ୟ ଚାଲିଛି ତା'ଉପରେ ଅନେକ ପୁସ୍ତକ ଲେଖା ଯାଇଛି । ବହୁ ତଦନ୍ତ କମିଟି ମଧ ଗଢ଼ା ଯାଇଛି । ସରକାରଙ୍କ ଗନ୍ତାଘର ଭିତରେ ସେ ରିପୋର୍ଟ ସବୁ ଏବେ ମଧ ଗଚ୍ଛିତ ଥିବ । ତା' ଭିତରୁ ମୁଲ୍ଲା କମିଟି ରିପୋର୍ଟ ଗୋଟିଏ । ମାନବିକ ଅଧିକାର ସୁରକ୍ଷା ଆଇନ ପ୍ରଣୀତ ହେବାର ପ୍ରାୟ ଦଶବର୍ଷ ପୂର୍ବରୁ କେନ୍ଦ୍ର ସରକାର ସୁପ୍ରିମ୍‌କୋର୍ଟ ବିଚାରପତି ମାନ୍ୟବର ଏ.ଏନ୍.ମୁଲ୍ଲାଙ୍କ ଅଧକ୍ଷତାରେ 'ଅଲ୍ ଇଣ୍ଡିଆ କମିଟି ଅନ୍ ଜେଲ୍ ରିଫର୍ମସ୍' (୧୯୮୦-୮୩) ଗଠନ କରିଥିଲେ । ଏହି କମିଟି ସାରା ଦେଶ ବୁଲି ବହୁ ତଥ୍ୟ ସଂଗ୍ରହ କରିଥିଲେ ଏବଂ ସରକାରଙ୍କୁ ବହୁ ଉପାଦେୟ ପରିବର୍ତ୍ତନର ପ୍ରସ୍ତାବ ଦେଇଥିଲେ । କିନ୍ତୁ ଦୁର୍ଭାଗ୍ୟର କଥା ସେ ରିପୋର୍ଟର କୌଣସି ଗୋଟାଏ କ୍ଷୁଦ୍ର ଅଂଶ ମଧ କାର୍ଯ୍ୟକାରୀ ହେଲା ନାହିଁ ।

ସାଧାରଣ ଭାବେ ଏବେ କୁହାଗଲାଣି ସରକାର ଯେତେବେଳେ କୌଣସି କାମ କରିବାକୁ ଚାହାନ୍ତି ନାହିଁ ଅଥଚ ଜନତା ଆଡୁ ତାକୁ କାର୍ଯ୍ୟକାରୀ କରେଇବାକୁ ଚାପ ପଡେ ସେତେବେଳେ ସରକାର ଗୋଟିଏ କମିଟି ବସେଇ ଦିଅନ୍ତି । ସମୟ ଗଡ଼ିଗଲେ ଲୋକେ ତାକୁ ଭୁଲି ଯାଆନ୍ତି । ସରକାର ମଧ ଶାନ୍ତିରେ ନିଃଶ୍ୱାସ ମାରନ୍ତି । କିନ୍ତୁ ମୁଲ୍ଲା କମିଟି ରିପୋର୍ଟ କ୍ଷେତ୍ରରେ ସେ କଥା ହୋଇନାହିଁ । ସରକାର ତାକୁ ଭୁଲି ଯାଇ ଥାଇ

ପାରନ୍ତି କିନ୍ତୁ ଲୋକେ ତାକୁ ଭୁଲି ନାହାଁନ୍ତି । ତେଣୁ ବିଭିନ୍ନ ସମୟରେ ବିଭିନ୍ନ ଘଟଣାରେ ହାଇକୋର୍ଟ ଓ ସୁପ୍ରିମ୍‌କୋର୍ଟ ତାଙ୍କ ରାୟରେ ଏକଥା ଉଲ୍ଲେଖ କରିଛନ୍ତି ଏବଂ କିପରି ପୁଲିସ ତାର ମାତ୍ରାଧିକ କାର୍ଯ୍ୟ କରି ମାନବିକ ଅଧିକାର ଉଲ୍ଲଂଘନ କରିଛି ସେ କଥା ଦର୍ଶାଇଛନ୍ତି । ଫଳରେ ମୁଲ୍ଲା କମିଟି ରିପୋର୍ଟ ଏବେ ମଧ୍ୟ ଜନମାନସରେ ଜୀବିତ ଅଛି ।

ଶ୍ରୀମତୀ କିରଣ ବେଦୀ ଜଣେ ପୁଲିସ ଅଫିସର । ସେ ଭାରତର ପ୍ରଥମ ମହିଳା ଆଇ.ପି.ଏସ୍. ଅଫିସର । କିନ୍ତୁ ସେ ଭାରତର ଯେ କୌଣସି ପୁରୁଷ ଆଇ.ପି.ଏସ୍. ଅଫିସରଙ୍କ ଠାରୁ ଅଧିକ ସୁନାମ ଅର୍ଜନ କରିଛନ୍ତି । ସେ ଦିଲ୍ଲୀରେ ଥାଆନ୍ତୁ ବା ମିଜୋରାମରେ ଥାଆନ୍ତୁ, ଟ୍ରାଫିକ କଣ୍ଟ୍ରୋଲ ଦାୟିତ୍ୱରେ ଥାଆନ୍ତୁ ବା ନିଶା ବା ମାଦକଦ୍ରବ୍ୟ ଚୋରା କାରବାର ରୋକିବା ଦାୟିତ୍ୱରେ ଥାଆନ୍ତୁ ସେ ସବୁବେଳେ ତାଙ୍କ କାମ ସୁଚାରୁରୂପେ ପାଳନ କରନ୍ତି ବୋଲି ତାଙ୍କର ସୁନାମ ଅଛି । ସେଥିପାଇଁ ସେ ବହୁ ପୁରସ୍କାର ମଧ୍ୟ ପାଇଛନ୍ତି । ସେ ପୁରସ୍କାର ତାଙ୍କୁ ଜାତୀୟ ତଥା ଆନ୍ତର୍ଜାତୀୟ କ୍ଷେତ୍ରରେ ସୁନାମ ଆଣି ଦେଇଛି । ଅତ୍ୟନ୍ତ ଦୁଃସାହସୀ ମହିଳା । ସରକାରୀ ଚାକିରି କରୁଥିଲେ ମଧ୍ୟ ସେ କେବେ ସରକାରଙ୍କୁ ଭୟ କରି ନାହାଁନ୍ତି । ସ୍ତାବକତା ଠାରୁ ସେ ଅନେକ ଦୂରରେ । କିଛି କହିଦେଲେ କି ଲେଖି ଦେଲେ ସରକାର ତାଙ୍କୁ ଦଣ୍ଡ ଦେଇ ପକେଇବ ସେକଥା ସେ କେବେ ଚିନ୍ତା ମଧ୍ୟ କରିନାହାଁନ୍ତି । ସମଗ୍ର ଭାରତବର୍ଷର ଓକିଲମାନେ ଯେତେବେଳେ ତାଙ୍କ ବିରୋଧରେ ଯୁଦ୍ଧ ଘୋଷଣା କଲେ ସେ ଏକୁଟିଆ ଲଢ଼ିବାକୁ ଅଣ୍ଟାଭିଡ଼ି ବାହାରି ପଡ଼ିଲେ । ତାଙ୍କ କର୍ତ୍ତବ୍ୟ ସେ ଠିକ୍ ଭାବରେ ଏବଂ ଆଇନ ଅନୁସାରେ ସମ୍ପାଦନ କରି ପାରୁଛନ୍ତି ଏହା ହିଁ ତାଙ୍କର ଆତ୍ମସନ୍ତୋଷ ।

ସେଇ କିରଣ ବେଦୀ ଏବେ ପୁସ୍ତକଟିଏ ଲେଖିଛନ୍ତି । ବହୁ ପୁଲିସ ଅଫିସର ତ ପୁସ୍ତକ ଲେଖିଛନ୍ତି । ଯେଉଁମାନେ କେବେ କିଛି ଲେଖି ନାହାଁନ୍ତି ସେମାନେ ଅବସର ନେଲା ପରେ ଆଉ କିଛି ନ ହେଲେ କବିତା ଲେଖି ସମୟ କଟାଇଛନ୍ତି । ଆଉ କେହି କେହି ଆଇନ ବହିର ସଂକ୍ଷିପ୍ତ ଟୀକା ମଧ୍ୟ ଲେଖିଛନ୍ତି । ଅବସର ସମୟର ଏକାକୀତ୍ୱରୁ ରକ୍ଷା ପାଇବା ପାଇଁ ସେ ସବୁ ତାଙ୍କୁ ଯଥେଷ୍ଟ ସାହାଯ୍ୟ କରିଥିବ । କାରଣ ନିଃସଙ୍ଗତା ଅପେକ୍ଷା ଭୟଙ୍କର ଶତ୍ରୁ ଆଉ କେହି ନାହିଁ । ଜୀବନର ଅନେକ ଘଟଣା ବହୁଳତା ଓ ପ୍ରଭୁପଣ ପରେ ହଠାତ୍ ଏକୁଟିଆ ହୋଇ ପଡ଼ିଲେ ଜଣେ ନିର୍ଜନ ଦ୍ୱୀପରେ ଥିଲା ଭଳି ଲାଗେ । ତେଣୁ ସେ ବେଳର ଲେଖା ଲେଖି(ସେ ଯାହା ଲେଖୁ ନା କାହିଁକି) ଜଣକୁ ସେ ନିର୍ଜନତାରୁ ଜନତା ଭିତରକୁ ଆଣିଲା ପରି ଲାଗେ । ଅନେକଙ୍କରତ ଏମିତି ବି ଥାଏ ଯେ ସେମାନେ ଅବସର ନେଲା ପରେ ମଧ୍ୟ ସରକାରକୁ ତାଙ୍କର ପ୍ରଭୁ ବୋଲି ମଣୁ ଥାଆନ୍ତି । ତେଣୁ ସରକାର-ବିରୋଧୀ ବିଷୟବସ୍ତୁ ପାଖ ମାଡ଼ନ୍ତି ନାହିଁ । ବରଂ ତାଙ୍କୁ ସୁହାଇଲା ଭଳିଆ କଥା କହନ୍ତି ବା ଲେଖନ୍ତି ।

କିରଣ ବେଦୀ ସେ କାଟର ଅଫିସର ନୁହଁନ୍ତି । ଚାକିରିରେ ନ ଥିବା ସମୟର କଥା ଛାଡ଼ନ୍ତୁ ସେ ଚାକିରିରେ ଥାଇ ଏପରି ଖଣ୍ଡେ ବହି ଲେଖିଛନ୍ତି ଯାହା ଦେଖିଲେ ସରକାରଙ୍କ ଗାତ୍ର ଦାହ ହେଉଥିବ । ଗଷିଟି ବାଳ ଛିଣ୍ଡାଇ ମରିବା କଥା ଚିନ୍ତା କରୁଥିବ । ଶ୍ରୀମତୀ ବେଦୀଙ୍କ ବହୁ ଚର୍ଚ୍ଚିତ ପୁସ୍ତକ 'ଇଟ୍ ଇଜ୍ ଅଲ୍‌ୱେଜ୍ ପସିବଲ୍' ଖୁବ୍ ନିକଟରେ ପ୍ରକାଶ ପାଇଛି । ଶ୍ରୀମତୀ କିରଣ ବେଦୀ ସେ ବହିରେ କେବଳ ତିହାର ଜେଲରେ ଥିବା ବନ୍ଦୀମାନଙ୍କ ଅବସ୍ଥା କଥା ଲେଖିଛନ୍ତି । ଏକଥା ଅବଶ୍ୟ ସମସ୍ତେ ଜାଣନ୍ତି ଯେ ଶ୍ରୀମତୀ ବେଦୀ ଅନେକ ଦିନ ତିହାର ଜେଲର ମୁଖ୍ୟ ସୁରକ୍ଷା ଅଧିକାରୀ ହିସାବରେ ଅବସ୍ଥାପିତ ଥିଲେ । ସେତେବେଳେ ସେ ଜେଲରେ ଥିବା ବନ୍ଦୀମାନଙ୍କର ଅବସ୍ଥାରେ ଅନେକ ପରିବର୍ତ୍ତନ ଆଣିଥିଲେ ଏବଂ ବିଶେଷକରି ଆଇନ ଅନୁସାରେ ସେମାନଙ୍କୁ ଯାହା ମିଳିବାର କଥା ତାହା ସେମାନଙ୍କୁ ପାଇବାରେ ସାହାଯ୍ୟ କରିଥିଲେ । ଶ୍ରୀମତୀ ବେଦୀ ତାଙ୍କର ସେଇ ଅଭିଜ୍ଞତାର କଥାଗୁଡ଼ିକ ସେ ପୁସ୍ତକରେ ଲେଖିଛନ୍ତି । ସେସବୁ କରୁଣ କାହାଣୀ ଶୁଣିଲେ ପଥରରୁ ମଧ୍ୟ ଲୁହ ବୋହି ପଡ଼ିବ । ତିହାର ପୃଥିବୀର ବୃହତ୍ତମ ଜେଲମାନଙ୍କ ମଧ୍ୟରୁ ଗୋଟିଏ । ଏଥିରେ ପ୍ରାୟ ୧୦ ହଜାର ବନ୍ଦୀ ଅଛନ୍ତି । ଯଦିଓ ସେଥିରେ ମାତ୍ର ୨୫୦୦ ବନ୍ଦୀ ରହିବାର କଥା । ଅର୍ଥାତ୍ ୪ଗୁଣ ଅଧିକ ଅଛନ୍ତି । ମୋଟ ସଂଖ୍ୟାର ଆଠ ଭାଗରୁ ଭାଗେ ସେଥିରେ ବିଚାରାଧୀନ ବନ୍ଦୀ ଅଛନ୍ତି । ଏହି ବିଚାରାଧୀନ ବନ୍ଦୀମାନଙ୍କ ବିଷୟରେ ଶ୍ରୀମତୀ ବେଦୀ ଲେଖିଛନ୍ତି, ଏମାନଙ୍କୁ ସାଧାରଣ ଅପରାଧୀମାନଙ୍କ ସହିତ ରଖାଯିବା ଦ୍ୱାରା ସେମାନଙ୍କ ଭିତରେ ଥିବା ଦୁର୍ଦ୍ଧାନ୍ତ ଅପରାଧୀଙ୍କ ପ୍ରଭାବ ଏମାନଙ୍କ ଉପରେ ପଡ଼ିବ ଏବଂ ସେମାନେ କାଳକ୍ରମେ ପ୍ରଫେସନାଲ୍ କ୍ରିମିନାଲ୍ ହେବା ସ୍ୱାଭାବିକ । ଏଥିରୁ ଏକଥା ସ୍ପଷ୍ଟ ହୁଏ ଯେ ପ୍ରଶାସନର ଅବ୍ୟବସ୍ଥା ଯୋଗୁଁ ସମାଜରେ ଅପରାଧ ଓ ଅପରାଧୀଙ୍କ ସଂଖ୍ୟା ବଢୁଛି । ଶ୍ରୀମତୀ ବେଦୀ ତାକୁ 'କଣ୍ଟାମିନେସନ ଅଫ୍ କ୍ରାଇମ୍' ବୋଲି କହୁଛନ୍ତି ।

ଜେଲରେ ଅସାଧୁ କର୍ମଚାରୀଙ୍କ ଦ୍ୱାରା ବନ୍ଦୀମାନେ କିପରି ଶୋଷଣ ଓ ଅତ୍ୟାଚାରର ସମ୍ମୁଖୀନ ହୁଅନ୍ତି ସେକଥା ମଧ୍ୟ ସେଥିରେ ସ୍ଥାନ ପାଇଛି । ଜେଲ ଭିତରକୁ ଚୋରାରେ ଅସ୍ତ୍ରଶସ୍ତ୍ର ଆସିବା ଠାରୁ ଆରମ୍ଭ କରି ମାଦକ ଦ୍ରବ୍ୟ ଯୋଗାଣ ଏବଂ ଏପରିକି ବେଳେ ବେଳେ ଗୋଳାବାରୁଦ ଇତ୍ୟାଦି ଆସିବା ଏବେ ଏକ ସାଧାରଣ କଥା ହେଲାଣି । ଏବେତ ଓଡ଼ିଶାର ଜେଲ ଭିତରେ ମଧ୍ୟ ଏ ସବୁର ବ୍ୟବହାର ବଢ଼ିଲାଣି । ଜେଲ କର୍ତ୍ତୃପକ୍ଷଙ୍କ କୁଶାସନ ଯୋଗୁଁ ତିହାର ସମେତ ବିହାର ଓ ମୁମ୍ବାଇ ପ୍ରଭୃତି ଜେଲମାନଙ୍କରେ ଯେ ଖାଲି ଅସ୍ତ୍ରଶସ୍ତ୍ର ଓ ମାଦକଦ୍ରବ୍ୟ ଯୋଗାଇ ଦିଆଯାଉଛି ତା'ନୁହେଁ ସେଠି କେତେକ କଏଦୀମାନଙ୍କୁ ସେଲ ଫୋନ୍ ପ୍ରଭୃତି ଉଚ୍ଚମାନର ଇଲେକ୍ଟ୍ରୋନିକ ଯନ୍ତ୍ରପାତି ମଧ୍ୟ ଯୋଗାଇ ଦିଆଯାଉଛି । ଯାହା ଫଳରେ ସେମାନେ ଜେଲ ଭିତରେ ଥାଇ ଅପହରଣ ଓ ହତ୍ୟା ଇତ୍ୟାଦି ବଡ଼ ବଡ଼ ଅପରାଧ କରି ପାରୁଛନ୍ତି । ଫଳରେ ଜେଲ ଏବେ କେତେକାଂଶରେ ଅପରାଧର ମୁଖ୍ୟ କେନ୍ଦ୍ର ପାଲଟି ଗଲାଣି ।

ନାରୀ ଓ ବାଳଅପରାଧୀମାନଙ୍କ କଥା ଶ୍ରୀମତୀ ବେଦୀ ଲେଖି କହିଛନ୍ତି ଯେ, ସେମାନେ ପୁରୁଷମାନଙ୍କ ସହିତ ରହିବା ଦ୍ୱାରା ଯୌନ ନିର୍ଯାତନାର ଶିକାର ହେଉଛନ୍ତି । ଜେଲରେ ଡାକ୍ତରୀ ଚିକିତ୍ସା ଓ ସ୍ୱାସ୍ଥ୍ୟସେବା ପ୍ରାୟ ନାହିଁ କହିଲେ ଚଳେ । ସେ ଲେଖିଛନ୍ତି ୧୯୯୪ରେ ଯେତେବେଳେ ମାନବିକ ଅଧିକାର କମିଶନ ତିହାର ଜେଲ ପରିଦର୍ଶନ କଲେ ସେତେବେଳେ ସେମାନେ ଦେଖିଲେ ଯେ ପ୍ରାୟ ୯୦୦୦ ବନ୍ଦୀଙ୍କ ପାଇଁ ମାତ୍ର ୪ ଜଣ ଡ଼ାକ୍ତର ଅଛନ୍ତି । କାରାଗାରରେ ହେଉଥିବା ମୃତ୍ୟୁ ସଂପର୍କରେ ସେ ଲେଖିଛନ୍ତି ଆବଶ୍ୟକୀୟ ଚିକିତ୍ସାର ଅଭାବ ଏଥିପାଇଁ ଏକମାତ୍ର ଦାୟୀ ।

ଆମ ଓଡ଼ିଶାରେ ଥିବା ଜେଲମାନଙ୍କର ସମସ୍ୟା ଏହାଠାରୁ ଅଲଗା ନୁହେଁ । ସମ୍ବାଦପତ୍ରମାନଙ୍କରେ ଯାହା ସବୁ ପ୍ରକାଶ ପାଉଛି ସେଥିରୁ ଜଣା ପଡୁଚି ଭିତରେ ଅବସ୍ଥା ଆହୁରି ଖରାପ । ସେମାନଙ୍କର ଖାଦ୍ୟ ସବୁ ବାଟମାରଣା ହେଉଛି । ଔଷଧପତ୍ର ମିଳୁନାହିଁ । ଅତ୍ୟଧିକ ଲୋକ ଗହଳି ଯୋଗୁଁ ପରିବେଶ ଅତି ଶୋଚନୀୟ ଏବଂ ସବୁଠାରୁ ଜରୁରୀ କଥା ହେଲା ସେମାନଙ୍କ ଯଥାର୍ଥ ଅଭିଯୋଗ ଗୁଡ଼ିକୁ ମଧ ବିଚାରକୁ ନିଆଯାଉ ନାହିଁ ବୋଲି ବରାବର ଅଭିଯୋଗ ହେଉଛି । ମକଦ୍ଦମାଗୁଡ଼ିକ ବର୍ଷବର୍ଷ ଧରି ପଡ଼ିରହିବା ଦ୍ୱାରା ବିଚାରାଧୀନ ବନ୍ଦୀଙ୍କ ସଂଖ୍ୟା ମଧ ଆଶାତୀତ ଭାବେ ବୃଦ୍ଧି ପାଇଛି ।

ଜାତୀୟ ମାନବିକ ଅଧିକାର କମିଶନ ଆଜି ଏ ସବୁ ଅମାନବିକତା ବିରୁଦ୍ଧରେ ଅସ୍ତ୍ରଧାରଣ କରୁଛି । କିନ୍ତୁ ଅତୀତର ଇତିହାସରୁ ଜଣାପଡୁଛି ରାଜନୀତିର ଛତ୍ରଛାୟା ତଳେ ସଯତ୍ନ ବର୍ଦ୍ଧିତ ସରକାରଟି ସବୁବେଳେ ପ୍ରବଳ ପରାକ୍ରମୀ ହୋଇ ନ୍ୟାୟପାଳିକାକୁ ଦାନ୍ତ ଦେଖେଇ ଖଟେଇ ହୁଏ । ଏ କ୍ଷେତ୍ରରେ ସେପରି ନହେଲେ ଏ ଦେଶରେ ସତ୍ୟ ଓ ନ୍ୟାୟ ଏବେ ମଧ ବଞ୍ଚିଛି ବୋଲି ଏବେ ବିଶ୍ୱାସ କରିହେବ । କିନ୍ତୁ ଏହା କଅଣ ଏତେ ସହଜ କଥା ? 

(ସମୟ-୧୭.୧.୨୦୦୦)

# ଅସଭ୍ୟ ସଭ୍ୟତା ?

ଘଟଣାଟା ଘଟିଛି ପଶ୍ଚିମବଙ୍ଗରେ ।

ପଶ୍ଚିମବଙ୍ଗର ପରିଚୟ ଅନାବଶ୍ୟକ । ଭାରତର ଦୁଇ ତିନୋଟି ରାଜ୍ୟ ଭିତରୁ ଗୋଟିଏ, ଯାହାର ଲୋକମାନେ ସାରା ବିଶ୍ୱରେ ଖେଳେଇ ହେଇ ରହିଚନ୍ତି । ସାରା ବିଶ୍ୱର ଲୋକମାନେ ଜାଣନ୍ତି ପଶ୍ଚମବଙ୍ଗ କହିଲେ କାହାକୁ ବୁଝାଏ । ବଙ୍ଗାଳୀ କହିଲେ କୋଉ ଜାତିକୁ ବୁଝାଏ । ସେ ଜାତିର ଶିକ୍ଷା ଦୀକ୍ଷା, ଜ୍ଞାନ ଗାରିମା, ଶିଳ୍ପ, ସଭ୍ୟତା, ନୀତି ରାଜନୀତି ଏ ସବୁକୁ ପୃଥିବୀର ସମସ୍ତେ ଜାଣନ୍ତି କହିଲେ ଭୁଲ ହେବନାହିଁ ।

ସମଗ୍ର ପୃଥିବୀ ମଧ୍ୟ ଜାଣେଁ ବଙ୍ଗବାସୀଙ୍କର ରାଜନୈତିକ ସଚେତନତା, ସେମାନଙ୍କର ଦର୍ଶନ ଓ ଚିନ୍ତନ । ପୃଥିବୀର ପ୍ରତି କୋଣେ କୋଣେ ବିଶେଷ ଭାବେ ପରିଚିତ ବିଶ୍ୱକବି ରବୀନ୍ଦ୍ର ନାଥ, ସମାଜସେବୀ ମଦର ଟେରସା ଏବଂ ଅର୍ଥନୀତିଜ୍ଞ ଅମର୍ତ୍ତ ସେନ । ପୃଥିବୀର ଏପରି କେଉଁ ପ୍ରଦେଶ ଅଛି ଯେଉଁଠୁ ଏକାଥରେ ତିନିଜଣ ନୋବେଲ୍ ପୁରସ୍କାର ପାଇଛନ୍ତି ? କେଉଁ ଜାତିର ସେ ସୌଭାଗ୍ୟ ହେଇଚି ?

ବଙ୍ଗାଳୀ ଜାତିକୁ ଭାରତ ବି ଚିହ୍ନିଚି । ସ୍ୱାଧୀନତା ସଂଗ୍ରାମକୁ ତା'ର ଦାନକୁ ତୁଳନା କରିହେବ ନାହିଁ । ତା'ର ଇତିହାସ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାର ଅଧିକାରୀ । ସଶସ୍ତ୍ର ହେଉ ବା ଅଶସ୍ତ୍ର ହେଉ- ସଂଗ୍ରାମର ଇତିହାସ କହିଲେ ତାହା ବଙ୍ଗାଳୀ ଜାତିର ଇତିହାସ ବୋଲି କହିହେବ । ମୁଁ ଏ କଥା କହିଲା ବେଳେ ଅବଶ୍ୟ କାହାରି ଭାବିବା ଉଚିତ୍ ନୁହେଁ । ଅନ୍ୟମାନଙ୍କୁ ଅର୍ଥାତ୍ ଭାରତରେ ସଶସ୍ତ୍ର ବିପ୍ଳବ ମାଧ୍ୟମରେ ସ୍ୱାଧୀନତା ଆଣିବାକୁ ଅନ୍ୟ ଯେଉଁମାନେ ପ୍ରାଣପାତ କରିଥିଲେ ମୁଁ ସେମାନଙ୍କୁ ଏଠି ନ୍ୟୁନ କରି ଦେଉଚି । ସେ ସମସ୍ତେ ତ ପୂଜ୍ୟ ଓ ନମସ୍ୟ । କିନ୍ତୁ ବଙ୍ଗଳାର ଯେ ଗୋଟାଏ ବିରାଟ ଅଂଶ ସେଥିରେ ଥିଲା ତାକୁ ଅସ୍ୱୀକାର କରିହେବ ନାହିଁ । ସୁଭାଷ ବୋଷଙ୍କ ପରି କେତେକ ନେତା ସେତେବେଳେ ସମଗ୍ର ପୃଥିବୀର ସାମ୍ରାଜ୍ୟବାଦୀ ଗୋଷ୍ଠୀ ପାଇଁ ଏକ ଚିନ୍ତାର କାରଣ ହେଇଥିଲେ । କେହି ଜଣେ ହୁଏତ କହିଥିଲେ, ସେତେବେଳେ ଇଂରେଜମାନେ ହିଟ୍‌ଲରଙ୍କୁ ଯେତେ ଭୟ କରୁ ନ ଥିଲେ ତା ଅପେକ୍ଷା ବେଶୀ ଭୟ କରୁଥିଲେ ସୁଭାସ ବୋଷଙ୍କୁ ।

ଏ ସବୁ ସତ୍ତ୍ୱେ ବଙ୍ଗାଳୀ ଜାତି ଏକ ବିଚିତ୍ର ଜାତି । ସେ ମାଟି ଏକ ଭିନ୍ନ ସ୍ୱାଦର ମାଟି । ତା'ର ସଠିକ ମୂଲ୍ୟାୟନ କରିବାକୁ ହେଲେ ତାକୁ ଠିକ୍ ଭାବେ ଚିହ୍ନିବାକୁ ପଡ଼ିବ ।

ତାକୁ ଚିହ୍ନିବାକୁ ହେଲେ ନିଜକୁ ସେଇ ସ୍ତରକୁ ଆଣିବାର ମାନସିକ ପ୍ରସ୍ତୁତି ଦରକାର । ତା'ର କାରଣ ଯେଉଁ ମାଟି ଚୈତନ୍ୟ ଓ ରାମକୃଷ୍ଣ ପରମହଂସଙ୍କ ପରି ଯୁଗଜନ୍ମାଙ୍କୁ ଜନ୍ମ ଦେଇଛି ସେଇ ପୁଣି ଜନ୍ମ ଦେଇଛି ରାସ ବିହାରୀ ବୋଷ, ଖୁଦୀରାମ ଓ ଚାରୁ ମଜୁମଦାରଙ୍କୁ । ଜଣେ ଧର୍ମକୁ ଜୀବନର ସର୍ବସ୍ୱ କହିଲାବେଳେ ଅନ୍ୟ ଜଣେ ସେ ଶବ୍ଦକୁ ଲୋପ କର ବୋଲି କହୁଚି । ପୁଣି ଯେଉଁମାଟି ବିପ୍ଳବୀ ଅରବିନ୍ଦଙ୍କୁ ଜନ୍ମ ଦେଲା ସେଇମାଟି ପୁଣି ତାଙ୍କୁ ମହାନ୍ ଦାର୍ଶନିକରେ ପରିଣତ କରିଦେଲା ।

ଏ ମାଟି ଅନନ୍ୟ ଓ ଅସାଧାରଣ । ଉତ୍ତରମେରୁ ଓ ଦକ୍ଷିଣମେରୁ ଏଠି ଏକାତ୍ମ ହେଇଯାଆନ୍ତି । ଆଶ୍ଚର୍ଯ୍ୟ, ପଶ୍ଚିମବଙ୍ଗର ଇତିହାସ ଏତିକିରେ ସରେ ନାହିଁ । ସେ ରାଜ୍ୟ ଭାରତର ଏକମାତ୍ର ରାଜ୍ୟ ଯେଉଁଠି ଆଜିକୁ ୨୩ ବର୍ଷ ହେଲା ଗୋଟିଏ ସ୍ଥିର ତଥା ସୁଦୃଢ଼ ଶାସନ ଚାଲିଚି । ଭାରତର ଅନ୍ୟ କୌଣସି ରାଜ୍ୟରେ ସ୍ୱାଧୀନତା ପରଠାରୁ ଏପରି ସ୍ଥିରତା ଆସିନାହିଁ । ଆଉ ସମସ୍ତେ ଓଲଟ ପାଲଟ ହେଇ ଯାଇଚନ୍ତି । ମାଡ଼ ଖାଇ ଲହୁ ଲୁହାଣ ହେଇଚନ୍ତି । ପୃଥିବୀର ଏପରି କେଉଁ ରାଜ୍ୟ ଅଛି ଯେଉଁଠି ଜଣେ ମୁଖ୍ୟମନ୍ତ୍ରୀ ନିରବଚ୍ଛିନ୍ନ ଭାବରେ ୨୩ ବର୍ଷକାଳ ଶାସନ ଅଧିକାର କରି ଆସୁଚନ୍ତି ? ସ୍ୱାଧୀନତା ପୂର୍ବରୁ ରାଜାରାଜୁଡ଼ା ଶାସନରେ ମଧ୍ୟ ଏପରି ଉଦାହରଣଟିଏ ମିଳିବ କି ନା ସନ୍ଦେହ ।

ପଶ୍ଚମବଙ୍ଗରେ ଆଜିକୁ ୨୩ ବର୍ଷ ହେଲା ଗୋଟିଏ ରାଜନୈତିକ ଦଳର ରାଜତ୍ୱ ଚାଲିଚି । ସେ ଦଳ ଅର୍ଡ଼ିନାରୀ ଦଳ ନୁହେଁ । କାହା ସହିତ ସେ ଦଳକୁ ତୁଳନା କରିହେବ ? ଗୋଟିଏ ବି ତ ଆଖିରେ ପଡୁନାହିଁ । ସେମାନେ ଗୋଟାଏ ନୀତିରେ ବିଶ୍ୱାସ କରନ୍ତି । ସେ ନୀତି ଏକ ପ୍ରତିଷ୍ଠିତ ତଥା ବିଜ୍ଞାନ ସମ୍ମତ ଦର୍ଶନ ଉପରେ ଆଧାରିତ ଏବଂ ସେ ଦଳ ଏକ ସମ୍ପୂର୍ଣ୍ଣ ଉତ୍ସର୍ଗୀକୃତ ମନୋଭାବ ନେଇ କାମ କରେ । ତାହା ହିଁ ବୋଧେ ସେ ଦଳର ଓ ସେ ଦର୍ଶନର ମୂଳପିଣ୍ଡ ଯାହା ଯୋଗୁଁ ସେମାନେ ୨୩ ବର୍ଷ ହେଲା ତିଷ୍ଠିଚନ୍ତି । ରାଜୀବ ଗାନ୍ଧୀ ମଧ୍ୟ ସ୍ୱୀକାର କରିଥିଲେ ଯେ ଭାରତରେ ପଶ୍ଚିମବଙ୍ଗ ଏକମାତ୍ର ରାଜ୍ୟ ଯେଉଁଠି ପଞ୍ଚାୟତିରାଜ ଠିକ୍ ଭାବେ ଚାଲିଚି ଏବଂ ଭୂ-ସମସ୍ୟାର ସମାଧାନ ହେଇ ପାରିଚି । ଏଇସବୁ କାରଣରୁ ୨୩ ବର୍ଷର ଶାସନକୁ ପଶ୍ଚିମବଙ୍ଗର ସୁବର୍ଣ୍ଣଯୁଗ ବୋଲି କହିହେବ । ୨୩ ବର୍ଷ ପୂର୍ବର ପଶ୍ଚିମବଙ୍ଗ ଓ ପରର ପଶ୍ଚିମବଙ୍ଗ ଭିତରେ ଆକାଶ ପାତାଳ ଫରକ ।

ସେଇ ପଶ୍ଚିମବଙ୍ଗର ଗୋଟିଏ ଗାଁରେ ସେଦିନ ଗୋଟିଏ ଲୋକ ତା'ର ୪ବର୍ଷର ଅବୋଧ ବାଳିକାଟିକୁ ବଡ଼ ଜାକଜମକରେ ଶାସ୍ତ୍ର ପୁରାଣ ମତ ଅନୁସାରେ ବା ଯାହାକୁ ବୈଦିକ ମତରେ ବୋଲି କୁହାଯାଏ, ଗୋଟିଏ ବୁଲା କୁକୁର ସାଥିରେ ବାହା କରେଇ

ଦେଲା । ବୈଦିକ ମତରେ ବାହାଘର ହେଉଥିବାରୁ ସେଥିରେ ଭୋଜିଭାତ ମଧ ହେଉଥିଲା । ଗାଁ ତଥା ଆଖପାଖର ଅନେକ ଲୋକ ମଧ ଉପସ୍ଥିତ ଥିଲେ । ସମ୍ବାଦପତ୍ରର ପ୍ରତିନିଧି ତଥା ଫଟୋଗ୍ରାଫରମାନେ ଆଗରୁ ଖବର ପାଇ ସେଠାରେ ପହଞ୍ଚି ଯାଇଥିଲେ । ପ୍ରଶାସନ ପକ୍ଷରୁ କେହି ସେଠି ସରକାରୀ କିମ୍ବା ବେସରକାରୀ ଭାବରେ ଉପସ୍ଥିତ ଥିଲେ କି ନା ଅବଶ୍ୟ ଜଣାପଡ଼ି ନାହିଁ । ତେବେ ପଞ୍ଚାୟତ ତରଫରୁ କେହି ଯେ ଏ ଖବର ପାଇ ନ ଥିଲେ କିମ୍ବା ସେ ଉତ୍ସବରେ ଯୋଗଦେଇ ନ ଥିଲେ, ଏପ୍ରକାର ଯୁକ୍ତିକୁ କସ୍ମିନ୍‌କାଳେ ଅବିଶ୍ୱାସ କରିହେବ ନାହିଁ । ଆଉ ସବୁଠାରୁ ଆଶ୍ଚର୍ଯ୍ୟର କଥା ଯେ, ଏ କାମରେ ବ୍ରାହ୍ମଣମାନେ ମଧ ସେଠି ଉପସ୍ଥିତ ଥିଲେ ଏବଂ ସବୁକାମ ବୈଦିକ ରୀତିରେ ମନ୍ତ୍ରୋଚାରଣ ମାଧମରେ ସମାହିତ ହେଉଥିଲା ବୋଲି ଖବର ପ୍ରକାଶ ପାଇଚି । ପତ୍ର ପତ୍ରିକାରେ ଯେଉଁ ଫଟୋ ପ୍ରକାଶ ପାଇଚି ସେଥିରେ ଝିଅଟିର କନ୍ୟାବେଶ ଏବଂ କୁକୁରଟିର ବରବେଶ ସ୍ପଷ୍ଟ ପ୍ରକାଶ ପାଇଚି । ବ୍ରାହ୍ମଣମାନେ ବେଦ ଶାସ୍ତ୍ରର କେଉଁ ପଙ୍‌କ୍ତି ଉଚ୍ଚାରଣ କରି ମଣିଷକୁ କୁକୁର ସହିତ ବିବାହ କରାଇଲେ ସେ କଥା ଅବଶ୍ୟ ସେମାନେ ଜାଣିଥିବେ । ମିଥ୍ୟା ମନ୍ତ୍ର ଉଚ୍ଚାରଣ କରି ସେମାନେ ତାଙ୍କ ପାଉଣା ତକ ନେବା ପୂର୍ବରୁ ବରକନ୍ୟାଙ୍କୁ ଆଶୀର୍ବାଦ ପୂର୍ବକ କନ୍ୟାକୁ 'ଅହ ସୁଲକ୍ଷଣୀ ହୁଅ' ବୋଲି ଅବଶ୍ୟ କହିଥିବେ । ସେତେବେଳେ ଝିଅଟିର ମୁଣ୍ଡକୁ ନେଇ କୁକୁରର ପାଦତଳେ ସେମାନେ ମାଡ଼ି ଦେଇଥିଲେ କି ନା ସେ କଥା ଜଣା ପଡ଼ିନାହିଁ । ତେବେ ସମଗ୍ର କାର୍ଯ୍ୟକ୍ରମଟିର ଯଦି ଭିଡ଼ିଓ ରେକର୍ଡ଼ିଂ ହେଇଥାଏ ତା'ହେଲେ ହୁଏତ ଏକଥା ପରେ ଜଣାପଡ଼ିବ । ଏବେ ତ ପଶ୍ଚିମବଙ୍ଗ ପାଇଁ ଗୋଟିଏ ସ୍ୱତନ୍ତ୍ର ଚାନେଲ୍ ଟିଭିରେ ଖୋଲା ଯାଇଚି । ସେଥିରେ ଏ ଅଭିନବ କାର୍ଯ୍ୟକ୍ରମ ପ୍ରଦର୍ଶିତ ହେବ କି ନା ଆମେ ଜାଣୁଁନା । ହେଲେ ଅବଶ୍ୟ ଭଲ ହୁଅନ୍ତା । ସାରା ପୃଥିବୀ ଜାଣନ୍ତା ।

ଏ ପ୍ରକାର ବିବାହର କାରଣ ସମ୍ପର୍କରେ ଝିଅଟିର ବାପା କହିଚି ଯେ, ଗତ ୪ ବର୍ଷ ଭିତରେ ଝିଅଟି ଚାରିଥର ଆକସ୍ମିକ ଦୁର୍ଘଟଣାର ସମ୍ମୁଖୀନ ହେଲାଣି । ଥରେ ଶକ୍ତ ବେମାରରେ ମଧ ପଡ଼ିଥିଲା । ଏଥିରୁ ଜଣାପଡୁଚି ଝିଅଟିର ଗ୍ରହଦଶା ଖରାପ ପଡ଼ିଚି । ସେ ଯଦି ମନ୍ଦଗ୍ରହ ହାବୁଡ଼ରେ ପଡ଼ିଥିବ ତାକୁ କୌଣସି ଔଷଧ କାଟୁ କରିବ ନାହିଁ । ସେ ଏ କଥା ମଧ କହିଚି ଯେ, ତା'ର ପରିବାରରେ ଜେଜେବାପାଙ୍କ ଅମଳରେ ଏମିତି ଥରେ ହେଇଥିଲା । ସେତେବେଳେ ସେ ତାଙ୍କର ଗୋଟିଏ ଝିଅକୁ କୁକୁର ସହିତ ବାହା କରେଇ ଦେବାରୁ ତା'ର ସବୁ ରିଷ୍ଟ କଟି ଯାଇଥିଲା ।

କଥାଟାକୁ ଅନ୍ଧବିଶ୍ୱାସ ବା କୁସଂସ୍କାର ଛଡ଼ା ଆଉ କ'ଣ କହିହେବ ? ପଶ୍ଚିମବଙ୍ଗ ଭାରତର ଗୋଟିଏ ଆଗୁଆ ରାଜ୍ୟ । ପ୍ରତ୍ୟେକ କ୍ଷେତ୍ରରେ ସେମାନେ ଅନ୍ୟମାନଙ୍କ ଠାରୁ ଅନେକ ଆଗରେ । ଶିକ୍ଷା, ବିଜ୍ଞାନ, କାରଗରୀ ଏବଂ ବିଶେଷ କରି ସାମାଜିକ

ସଚେତନତା ସେମାନଙ୍କ ଠାରେ ଅଧିକ । ତେଣୁ ସାଧାରଣ ଭାବରେ କହିଲେ ଅନ୍ଧବିଶ୍ୱାସ ଓ କୁସଂସ୍କାର ଠାରୁ ସେମାନେ ଅନେକ ଦୂରରେ । ତା'ର ପ୍ରମାଣ ଅନେକ ଆଗରୁ ମିଳି ସାରିଚି । ସମଗ୍ର ଭାରତରେ ବିଧବା ବିବାହ ସପକ୍ଷରେ ପ୍ରଥମରେ ପଶ୍ଚିମବଙ୍ଗରେ ହିଁ ସ୍ୱର ଉଠିଥିଲା । ରାମ ମୋହନ ରାୟ ପ୍ରଥମେ ହିନ୍ଦୁଧର୍ମରେ ଥିବା କୁସଂସ୍କାର ସବୁକୁ ବାଦ ଦେବାକୁ ଆହ୍ୱାନ ଦେଇଥିଲେ । ରାମକୃଷ୍ଣ ପରମହଂସ ଓ ବିବେକାନନ୍ଦ ମଧ ଧର୍ମରେ ଥିବା ରକ୍ଷଣଶୀଳତାକୁ ମୋଟେ ସମର୍ଥନ କରୁନଥିଲେ । ତାଙ୍କର ଶିଷ୍ୟମାନେ ଆହୁରି ପାଦେ ଆଗେଇଯାଇ ନିଜକୁ ଆଉ ହିନ୍ଦୁ ବୋଲି ନ କହି 'ରାମକୃଷ୍ଣବାଦୀ' ବୋଲି କହିଲେଣି । ସେମାନଙ୍କ ମତରେ ହିନ୍ଦୁ ଧର୍ମରେ ହିଁ ସବୁଠାରୁ ବେଶୀ କୁସଂସ୍କାର ଓ ଅନ୍ଧବିଶ୍ୱାସ ଭର୍ତ୍ତି କରି ଦିଆଯାଇଚି । ସେ ସବୁର ସଂସ୍କାର ଆବଶ୍ୟକ ।

ଏଇଠି ଆଉ ଗୋଟିଏ ସବୁଠାରୁ ଆଶ୍ଚର୍ଯ୍ୟର କଥା ଯେ, ଯେଉଁ ପଶ୍ଚିମବଙ୍ଗର ଗୋଟିଏ ପାଖରେ ସେଦିନ ଚାରିବର୍ଷର ଅଜ୍ଞାନ ଝିଅଟିଏ ସମ୍ପୂର୍ଣ୍ଣ ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ ବୁଲା କୁକୁରଟିକୁ ବେଦୀ ଉପରେ ବସି ବିବାହ କରି ତାକୁ ପ୍ରାଣସଙ୍ଗୀ ହିସାବରେ ବରି ନେଲା ଏବଂ ତା'ର ଭବିଷ୍ୟତ ଜୀବନଟିକୁ ଅନ୍ଧାରର ଗୁମ୍ଫା ଭିତରକୁ ଠେଲିଦେଲା ସେଇ ସେତିକିବେଳେ ପଶ୍ଚିମବଙ୍ଗର ଆଉ ଗୋଟିଏ ପାଖରେ ସେ ରାଜ୍ୟର ମହାନ ମହାକାଶ ବିଜ୍ଞାନୀମାନେ ସୂର୍ଯ୍ୟପରାଗ ଓ ଚନ୍ଦ୍ରଗ୍ରହଣ ସମୟରେ ଉପବାସ ରହିବା ଯେ ଏକ ଅନ୍ଧବିଶ୍ୱାସ ତାକୁ ସମସ୍ତଙ୍କ ସାମନାରେ ପ୍ରମାଣିତ କରିବା ପାଇଁ ବିରାଟ ଭୋଜିର ଆୟୋଜନ କରିଥିଲେ । ଅନ୍ଧବିଶ୍ୱାସ ଓ କୁସଂସ୍କାର ବିରୋଧରେ ବିଜ୍ଞାନୀମାନଙ୍କର ଏ ଯେଉଁ ଦୃପ୍ତ ଯୁଦ୍ଧ ଘୋଷଣା ତାକୁ ପୃଥିବୀର ଆଉ କୋଉଠି ଦେଖାଯାଇ ନାହିଁ ।

ଆମର ଏଠି କହିବାର କଥା, ବିଶ୍ୱାସ ଓ ଅନ୍ଧବିଶ୍ୱାସ, ବିଜ୍ଞାନ ଓ ଅବିଜ୍ଞାନ କେମିତି ଗୋଟାଏ ଜାଗାରେ ମଣିଷର ଚିନ୍ତା ଓ ଚେତନାକୁ ସମାନ ଭାବରେ ଅଧିକାର କରି ବସିଚି ଏହା ହିଁ ତା'ର ଗୋଟାଏ ଜ୍ୱଳନ୍ତ ନମୁନା । କିନ୍ତୁ ହାୟ, ଆମେ ଦେଖିଲୁଁ, ପ୍ରଥମଟି ଯେତିକି ପ୍ରଚାର ଓ ପ୍ରସାର ଲାଭ କଲା ଦ୍ୱିତୀୟଟି କେଉଁ କାରଣରୁ କେଜାଣି ସେତିକି ପ୍ରସାର ଲାଭ କଲାନାହିଁ । ବୋଧେ ଏଇଥିପାଇଁ ଯେ ମଣିଷ ପ୍ରଥମେ ଖରାପଟାକୁ ହିଁ ଗ୍ରହଣ କରିଥାଏ ।

ଏ ସବୁ ଘଟଣାକୁ ଦେଖିଲେ ଏବେ କ'ଣ ବୁଝିବାକୁ ହେବ ଯେ, ଦୀର୍ଘ ୨୩ ବର୍ଷକାଳ ଗୋଟାଏ ବିଜ୍ଞାନ ସମ୍ମତ ମତବାଦ ସମଗ୍ର ରାଜ୍ୟର ଜନଜୀବନକୁ ପ୍ରଭାବିତ କରି ରଖିଲା ପରେ ମଧ ତାହା କୁସଂସ୍କାର ଓ ଅନ୍ଧବିଶ୍ୱାସ ପରି ଅବୈଜ୍ଞାନିକ ଚିନ୍ତା ଓ ଚେତନାକୁ ସାମାନ୍ୟ ପରିମାଣରେ ପ୍ରତିରୋଧ କରି ପାରିଲା ନାହିଁ ? ଗୋଟାଏ ଅବୋଧ

ଶିଶୁକୁ ଗୋଟାଏ କୁକୁର ସହିତ ବିବାହ କରେଇବା ସମଗ୍ର ମଣିଷ ସମାଜ ପାଇଁ ଏକ କଳଙ୍କ । ମଣିଷ ସମାଜ ପାଇଁ ଏହା ଏକ ଶକ୍ତ ଧକ୍କା । ନାରୀ ସମାଜ ତ ଏଥିରେ ଥରି ଉଠିବା କଥା । ଏବର ନାରୀ ସମାଜ ଭିତରେ ଏହା ଏକ ପ୍ରଚଣ୍ଡ ବିସ୍ଫୋରଣ ସୃଷ୍ଟି କରିବା କଥା । କୁକୁର ସହିତ ମଣିଷର ବିବାହ ? ପାଗଳ ପୁରୁଷର ପ୍ରାଧାନ୍ୟକୁ ନାରୀସମାଜ କ'ଣ ଏବେ ବି ବରଦାସ୍ତ କରିବ ? ପୁଣି ପଶ୍ଚିମବଙ୍ଗ ଭଳି ରାଜ୍ୟରେ ? କିନ୍ତୁ କାହିଁ କେହି ତ ପ୍ରତିବାଦ କଲେ ନାହିଁ ? ଆଇନ୍ ଓ ପ୍ରଶାସନକୁ ଏଥିରୁ ବାଦ ଦିଆଯାଉ । କାରଣ ସେମାନେ ହୁଏତ ଆଇନ ବହିର ପୃଷ୍ଠାଗୁଡ଼ିକ ଏବେ ତନ୍ନ ତନ୍ନ କରି ଖୋଜୁଥିବେ କେଉଁ ଧାରାରେ ମଣିଷ ସହିତ କୁକୁରର ବିବାହକୁ ଧର୍ତ୍ତବ୍ୟ ଅପରାଧ ହିସାବରେ ଧରି ହେବ ।

ସେ ପ୍ରଶ୍ନ ଆମର ନୁହେଁ । ଆମେ ଖାଲି ଭାବୁଚୁଁ କୁଆଡ଼େ ଗଲେ ସେଠାର ନାଗରିକଗଣ ? କୁଆଡ଼େ ଗଲେ ସେଠାକାର ବିଜ୍ଞ ବୁଦ୍ଧିଜୀବୀ, ନାରୀ ସମାଜ-ବିଶେଷ କରି କବି ଓ ଲେଖକମାନେ, ଯେଉଁମାନେ ଆଜିଯାଏ ସମଗ୍ର ପୃଥିବୀକୁ ଦିଗ୍‌ଦର୍ଶନ ଦେଇ ଆସିଚନ୍ତି ? ଏ କଳଙ୍କର ବୋଝ ସେମାନେ ସହ୍ୟ କରି ପାରୁଚନ୍ତି ତ ? ଇତିହାସ କ୍ଷମା ଦେବ ସେଠାର ଲୋକପ୍ରତିନିଧିମାନଙ୍କୁ ?

ତେବେ କ'ଣ ବୁଝିବାକୁ ହେବ ଯେ ଏକବିଂଶ ଶତାବ୍ଦୀର ଆରମ୍ଭରେ ଯେତେବେଳେ ସମଗ୍ର ବିଶ୍ୱ ବିଜ୍ଞାନ ଓ କାରିଗରୀର ଶୀର୍ଷ ସ୍ଥାନରେ ଆସନ ଜମେଇବାକୁ ବସିଲାଣି ସେତେବେଳେ ପଶ୍ଚମବଙ୍ଗ ଯାହା ଦିନେ ଶିକ୍ଷା ଓ ସଭ୍ୟତାରେ ସମସ୍ତଙ୍କ ଠାରୁ ଆଗୁଆ ଥିଲା ଏବଂ ଏବେ ମଧ୍ୟ ଅଛି ତାହା ଏବେ ପୁଣି ଥରେ ପ୍ରାଗୈତିହାସିକ ଯୁଗକୁ ଫେରି ଯାଉଚି ? ଆମେ ଏ କଥା ମଧ୍ୟ ବିଶ୍ୱାସ କରିବାକୁ ଅକ୍ଷମ । ■

( ସମୟ-୨୬.୭.୨୦୦୦ )

# ସେ ଦେଶ ଓ ଏ ଦେଶ

କିଛିଦିନ ତଳେ ମୁଁ ଏହି ସ୍ତମ୍ଭରେ ଇଂଲଣ୍ଡର ମହାରାଣୀଙ୍କର ସେ ଦେଶରେ ପ୍ରଚଳିତ ଥିବା ନିୟମ ପ୍ରତି କିପରି ଆନୁଗତ୍ୟ ରହିଛି ତାହା ଦର୍ଶାଇଥିଲି (ସମୟ, ୩୦.୮.୯୯) । ମୁଁ ସେଥିରେ ଲେଖିଥିଲି, ରାଣୀ ଯେତେବେଳେ ଜାଣିଲେ ଯେ, ସେ ବଜେଟ୍ ବାହାରେ କିଛି ଅର୍ଥ ଅନୁଚିତ ଭାବରେ ଖର୍ଚ୍ଚ କରି ଦେଇଛନ୍ତି ସେତେବେଳେ ସେ ତାଙ୍କ ସରକାରଙ୍କ ଠାରେ ଦୁଃଖ ପ୍ରକାଶ କରିବା ସଂଗେ ସଂଗେ ନିଜର ସମସ୍ତ ଘରୋଇ ଖର୍ଚ୍ଚକୁ କମେଇ ସେ ଅର୍ଥକୁ ଭରଣା କଲେ । ଇଂଲଣ୍ଡ ରାଣୀ ସେ ଦେଶର ଶାସନ ମୁଖ୍ୟ । ସେ ଚାହିଁଥିଲେ ବଜେଟ୍ ବାହାରେ ଦେଇଥିବା ଖର୍ଚ୍ଚକୁ ସରକାରଙ୍କୁ କହି ଆଉଥରେ ମଂଜୁର କରାଇ ପାରି ଥାଆନ୍ତେ କିମ୍ବା ଆବଶ୍ୟକ ହେଲେ ସେଥିପାଇଁ ଆହୁରି ଅଧିକ ବଜେଟ ମଧ୍ୟ ତିଆରି କରି ପାରି ଥାଆନ୍ତେ । ସମଗ୍ର ରାଜକୋଷ ତାଙ୍କ ଅଧୀନରେ ଥିଲା ବେଳେ ତାଙ୍କର ଆଉ ଭୟ କାହାକୁ ? କିନ୍ତୁ ସେଠି ସେପରି ହୁଏ ନାହିଁ । ସେ ଦେଶର ଶାସନ ମୁଖ୍ୟ ଆଇନ କାନୁନକୁ ଯେତିକି ସମ୍ମାନ ଦିଅନ୍ତି, ନୈତିକ ମୂଲ୍ୟବୋଧକୁ ଓ ଦେଶର ପରମ୍ପରାକୁ ଯେତିକି ମାନି ଚଳନ୍ତି, ସେ ଦେଶର ଲୋକମାନେ ମଧ୍ୟ ସେତିକି ଶାସନ ମୁଖ୍ୟଙ୍କୁ ସମ୍ମାନ ଦିଅନ୍ତି । ଆଇନକୁ ମାନି ଚଳିବା ହିଁ ସେ ଦେଶର ପରମ୍ପରା । ଜନ ଜୀବନରେ ନୀତି ଓ ଆଦର୍ଶକୁ ଶ୍ରଦ୍ଧା କରିବା ହିଁ ସେ ଦେଶର ସାଧାରଣ ବିଧି ।

ଆମ ଦେଶରେ ଠିକ୍ ତା'ର ଓଲଟା । ଆଇନକୁ ଆଡ଼େଇ ଯିବା ହିଁ ଆମର ଜାତୀୟ ଚରିତ୍ର । ପବ୍ଲିକ୍ ମନିକୁ ଲୁଣ୍ଠନ କରିବାରେ ଆମ ଦେଶର ଶାସନ ମୁଖ୍ୟମାନେ ପୃଥିବୀର ଅନ୍ୟ ସମସ୍ତ ଦେଶକୁ ଟପି ନୂଆ ଇତିହାସଟିଏ ସୃଷ୍ଟି କରି ସାରିଲେଣି । ତେଣୁ ଆମ ଦେଶରେ ଯିଏ ଯେତିକି ଲୁଣ୍ଠନ କରିପାରେ ସେ ସେତିକି ଉଚ୍ଚ ଆସନ ଲାଭ କରେ । ଏହା ହିଁ ଆମ ଦେଶର ନୂଆ ପରମ୍ପରା ।

ଖାଲି ଯେ ଇଂଲଣ୍ଡର ରାଣୀ ସେ ଦେଶର ଉଚ୍ଚ ଆଦର୍ଶ ତଥା ନୀତି ନିୟମରେ ବିଶ୍ୱାସ ରଖନ୍ତି ତା ନୁହେଁ । ସମଗ୍ର ପାଶ୍ଚାତ୍ୟ ଭୂଖଣ୍ଡରେ ଏ ଆଦର୍ଶ, ସାଧୁତା ତଥା ସଚ୍ଚୋଟତାକୁ ସମସ୍ତେ ସମ୍ମାନ ଦିଅନ୍ତି ଏବଂ ଏହା ହିଁ ସେ ଜାତିକୁ ମହୀୟାନ କରିଛି ।

ଏବେ ଆଉ ଏକ ଘଟଣା ଘଟିଛି ସୁଇଡ଼େନରେ । ଆମ ଦେଶ ତୁଳନାରେ ସୁଇଡ଼େନ ଗୋଟାଏ ଅତ୍ୟନ୍ତ କ୍ଷୁଦ୍ର ରାଷ୍ଟ୍ର, ପାହାଡ଼ିଆ ତଥା ଘନ ଜଙ୍ଗଲପୂର୍ଣ୍ଣ ।

ଲୋକସଂଖ୍ୟା ମାତ୍ର ୮.୯ ମିଲିଅନ । କ୍ଷେତ୍ରଫଳ ମାତ୍ର ସାଢ଼େ ଚାରି ଲକ୍ଷ ବର୍ଗ କିଲୋମିଟର । ସୁଇଡ଼େନର ସବୁଠାରୁ ଆକର୍ଷଣୀୟ ସ୍ଥାନ ହେଲା ତା'ର ହ୍ରଦଗୁଡ଼ିକ । କୁହାଯାଏ ପୃଥିବୀରେ ଅଦ୍ୱିତୀୟ । କୋଟି କୋଟି ପର୍ଯ୍ୟଟକଙ୍କୁ ଆକର୍ଷଣ କରେ । ପାହାଡ଼ିଆ ଓ ଜଙ୍ଗଲପୂର୍ଣ୍ଣ ହେଲେ ମଧ୍ୟ ତା'ର ଶିଳ୍ପ ଉତ୍ପାଦନର ଶତକଡ଼ା ୪୦ ଭାଗ ରପ୍ତାନି ହୁଏ ଏବଂ ଏଥିପାଇଁ ୟୁରୋପୀୟ ବଜାରରେ ତା'ର ସ୍ଥାନ ସ୍ୱତନ୍ତ୍ର । ଶତକଡ଼ା ଶହେ ସାକ୍ଷର ଥିବା ଏହି ଦେଶରେ ନା ଅଛି ବେକାରି ନା ଅଛି ଦାରିଦ୍ର୍ୟ । କେହି ଭୋକିଲା ନାହାନ୍ତି କି କେହି ଭିକ ମାଗୁ ନାହାଁନ୍ତି । କେହି ରାସ୍ତା କଡ଼ରେ ସଢୁ ନାହାଁନ୍ତି କି କେହି ରୋଗରେ ବା ଅଯତ୍ନରେ ଅବହେଳିତ ହୋଇ ପଡ଼ି ନାହାଁନ୍ତି ।

ଇଂଲଣ୍ଡ ପରି ସୁଇଡ଼େନରେ ମଧ୍ୟ ରାଜା ଶାସନ ମୁଖ୍ୟ । ୧୪୩୪ ମସିହାରେ ଗୃହୀତ ସମ୍ବିଧାନର ନିୟମ ଅନୁସାରେ ସେ ଦେଶର ରାଜା ହିଁ ସର୍ବେସର୍ବା । ଶାସନ ତାଙ୍କରି ନାମରେ ଚାଲେ । ସେହି ଅନୁସାରେ ରାଜା କାର୍ଲ ଷୋଡ଼ଶ ଗୁସ୍ତଭ ଏବେ ସୁଇଡ଼େନ୍‌ର ରାଜା ।

ବଡ଼ ଆଶ୍ଚର୍ଯ୍ୟ, ଗତ ଛଅ ଶହ ବର୍ଷ ହେଲା ଯେଉଁ ସମ୍ବିଧାନ ତା'ର ରାଜାକୁ ସାମ୍ବିଧାନିକ ମୁଖ୍ୟ ହିସାବରେ ଗ୍ରହଣ କରିଛି ତାହା ଏ ଯାଏ ବଦଳି ନାହିଁ ! ଛଅ ଶହ ବର୍ଷର ପୁରୁଣା ପଚାସଢ଼ା ସମ୍ବିଧାନରେ ଥିବା ଏ ନିୟମ ଏବେ ମଧ୍ୟ ଅକ୍ଷତ ରହିଛି ? ସେ ଦେଶ କ'ଣ ପରିବର୍ତ୍ତନରେ ବିଶ୍ୱାସ କରେ ନାହିଁ ? ଆଉ ଆମେ ? ମାତ୍ର ପଚାଶ ବର୍ଷର ସମ୍ବିଧାନକୁ ନବେ ଥର ବଦଳେଇ ସାରିଲୁଣି ଏବଂ ଏଥର ତାକୁ ଆଉ ଥରେ ଆମୂଳ ପରିବର୍ତ୍ତନ ପାଇଁ କମିଟି ତିଆରି କରିଛୁଁ । ଦେଶକୁ ଆଗେଇ ନେବାକୁ ହେଲେ ପୁରାତନକୁ କବର ଦେଇ ନୂତନକୁ ସ୍ୱାଗତ କରିବା ହିଁ ଗଣତନ୍ତ୍ର ବୋଲି ଆମର ବିଶ୍ୱାସ । ଆଗରୁ କହିଛି, ଆମେ ଆଇନ ତିଆରି କରୁଁ କିନ୍ତୁ ତାକୁ ମାନୁନା ।

ସେଦିନ ସୁଇଡ଼େନର ସର୍ବମୟ କର୍ତ୍ତାଙ୍କ ଅତି ସାମାନ୍ୟ ଭୁଲଟିକୁ କେନ୍ଦ୍ରକରି ଯେଉଁ ଆଲୋଡ଼ନ ସୃଷ୍ଟି ହେଲା ସମଗ୍ର ଦେଶରେ, ତାହା ଥିଲା ଏହିପରି... ।

ସେ ଦିନ ଥିଲା ରାଣୀଙ୍କ ଜନ୍ମଦିନ । ଜନ୍ମଦିନର କାର୍ଯ୍ୟକ୍ରମ ଥିଲା ଅନେକ ବେଶୀ ଏବଂ ତାହା ଅନେକ ଆଗରୁ ନିର୍ଦ୍ଧାରିତ । କିନ୍ତୁ ପିଲାମାନେ ପାଖରେ ନଥିଲେ ରାଣୀଙ୍କ ଜନ୍ମ ଦିନର ଉତ୍ସବ କେମିତି ଆରମ୍ଭ ହେବ ? ପିଲାମାନେ ସେ ଯାଏଁ ସ୍କୁଲରୁ ଆସି ନାହାଁନ୍ତି । ରାଜା ନିଜେ ଗଲେ ତାଙ୍କ ନିଜ କାର୍ ନେଇ ସ୍କୁଲରୁ ପିଲାମାନଙ୍କୁ ନେଇ ଆସିବା ପାଇଁ । ଏଆଡ଼େ ହାତରେ ସମୟ ଅନେକ କମ୍ । ଏଇ କମ୍ ସମୟ

ଭିତରେ ଏତେ ଦୂରରୁ ଯାଇ ପିଲାମାନଙ୍କୁ ଆଣିବାକୁ ହେଲେ ଗାଡ଼ିର ଗତି ବଢ଼େଇବା ଛଡ଼ା ଅନ୍ୟ ଉପାୟ ନାହିଁ । ତେଣୁ ଯେଉଁ ରାସ୍ତାରେ ସରକାରୀ ନିୟମ ଅନୁସାରେ ସର୍ବାଧିକ ୧୧୦ କିଲୋମିଟର ବେଗରେ ଗାଡ଼ି ଚଳେଇବାର କଥା ସେଠି ରାଜା ତାଙ୍କ ଗାଡ଼ିକୁ ୧୪୦ କିଲୋମିଟର ବେଗରେ ନେଇଗଲେ । ସେ ଅବଶ୍ୟ କୌଣସି ଦୁର୍ଘଟଣା ଘଟେଇ ନାହାନ୍ତି ।

ସେ ଠିକ୍ ସମୟରେ ତାଙ୍କ କାମ କରିଦେଲେ । ଜନ୍ମ ଦିନର ଉତ୍ସବ ମଧ୍ୟ ରାଜ ପରିବାର ମଧ୍ୟରେ ଠିକ୍ ଭାବରେ ପାଳିତ ହେଇଗଲା ।

ଠିକ୍ ଏତିକିବେଳେ କେହି ଜଣେ ହୁଏତ ପୁଲିସ୍ କଣ୍ଟ୍ରୋଲ୍ ରୁମ୍‌କୁ ଫୋନଟିଏ କରିଦେଲେ ଯେ ''ସେ ଦେଖିଲେ କେହି ଜଣେ ସେ ରାସ୍ତାର ନିୟମ ଭଙ୍ଗ କରି ୧୪୦ କିଲୋମିଟର ବେଗରେ ଗାଡ଼ି ଚଳେଇ ଯାଉଥିଲା ।'' ସେ ଏକଥା ମଧ୍ୟ କହିଲେ ଯେ ''ସେ ଗାଡ଼ିଟା ରାଜାଙ୍କର ପରି ମନେ ହେଉଥିଲା'' । ଭଦ୍ରଲୋକ କିନ୍ତୁ ତାଙ୍କ ନାମ ପ୍ରକାଶ କରି ନଥିଲେ ।

ଏଇଠି ଆମେ କେତୋଟି କଥା ବିଚାରକୁ ନେବା । ପ୍ରଥମ କଥା ରାଜାଙ୍କର କ'ଣ ଲୋକବାକ କେହି ନ ଥିଲେ ଯେ ସେ ନିଜେ ତାଙ୍କ ପିଲାମାନଙ୍କୁ ଆଣିବାକୁ ସ୍କୁଲ୍‌କୁ ଗଲେ ? ସେ ଦେଶର ରାଜା, ଶାସନର ସର୍ବମୟ କର୍ତ୍ତା । ଭାରତରେ ଏବେ ତଥା କଥିତ  ରାଜାଙ୍କ କଥା ଛାଡ଼, ତାଙ୍କ ଅଫିସରେ କାମ କରୁଥିବା କିରାଣି ମଧ୍ୟ ତା' ଅଫିସ ପିଅନକୁ ଏ କାମରେ ନିଯୁକ୍ତ କରି ପାରୁଛି । ତା' ଘରେ ମଧ୍ୟ ଦୁଇ ଚାରିଟା ଲୋକ ଅଛନ୍ତି ବଜାର ସଉଦା କରିବାକୁ, ଆମର ରାଜନେତାଙ୍କ ଅଫିସରେ କାମ କରୁଥିବା କର୍ମଚାରୀମାନେ ଗୋଟିଏ ଗୋଟିଏ ରାଜା । ସେଇମାନଙ୍କ ଅଙ୍ଗୁଳି ନିର୍ଦ୍ଦେଶରେ ହିଁ ଶାସନ ଚଳେ, ରାଜାଙ୍କ ନିର୍ଦ୍ଦେଶରେ ନୁହେଁ । ଏହା ହିଁ ଆମର ଗଣତାନ୍ତ୍ରିକ ବିଧି ପରମ୍ପରା । ଏହା ହିଁ ନିୟମ । ସରକାରୀ ଅଫିସର ଓ ରାଜନେତାମାନେ ତାଙ୍କ ନିଜ କାମ ନିଜେ କରିବା ଏକ ଅସମ୍ମାନ ଜନକ କଥା । ତେଣୁ ସରକାରୀ ପିଅନ ସେମାନଙ୍କର ସବୁ କାମ କରେ ।

କିନ୍ତୁ ସୁଇଡ଼େନର ସର୍ବୋଚ୍ଚ ଶାସନକର୍ତ୍ତା ସେ କଥା କରନ୍ତି ନାହିଁ । ତାଙ୍କର ବ୍ୟକ୍ତିଗତ କାମ ସେ ନିଜେ କରନ୍ତି କିମ୍ବା ତାଙ୍କ ଦ୍ୱାରା ନିଯୁକ୍ତ ସହଯୋଗୀ କେବଳ ସେ କାମ କରନ୍ତି । ରାଜା ବା ରାଜ ପରିବାର ତାଙ୍କ ନିଜ କାମ ପାଇଁ ସରକାରୀ କର୍ମଚାରୀଙ୍କୁ ବ୍ୟବହାର କରନ୍ତି ନାହିଁ ।

ଏବେ ଦ୍ୱିତୀୟ ପ୍ରଶ୍ନଟି ହେଲା ରାଜା ତାଙ୍କ ନିଜ ଗାଡ଼ି ନେଇ ସ୍କୁଲ୍‌କୁ ଯାଇଥିଲେ । ଭାରତ ହେଇଥିଲେ ? ଏଇ କାମ ପାଇଁ ସ୍ୱତନ୍ତ୍ର ଗାଡ଼ିର ପୁଲଟିଏ ଥାଏ । ସେଥିରେ

ହରେକ କିସମର ଗାଡ଼ି ଥାଏ । ତା'ର ଚାଳକ ସ୍ୱତନ୍ତ୍ର ସେ ଗାଡ଼ି ପଛରେ ଓ ଆଗରେ ସୁରକ୍ଷାବାହିନୀ ମଧ୍ୟ ଥାଏ । ସେ ସୁରକ୍ଷା ବାହିନୀ ରାସ୍ତାରେ ଯାଉଥିବା ବେଳେ ସାଧାରଣ ଜୀବନଯାତ୍ରା ଅଚଳ ହୋଇଯାଏ । ସେ ଗାଡ଼ି ରାସ୍ତାରେ ଯାଉଥିଲା ବେଳେ ୧୦୦ କିଲୋମିଟର ବେଗରେ ଯିବ କି ୫୦୦ କିଲୋମିଟର ବେଗରେ ଯିବ ସେ କଥା ତା'ର ଚାଳକ ଉପରେ ନିର୍ଭର କରେ- ଆଇନ ଉପରେ ନୁହେଁ । ସେ ଗାଡ଼ି ଟ୍ରାଫିକ ନିୟମ ମାନିବ କି ନା ସେ କଥା ମଧ୍ୟ ସେ ସ୍ଥିର କରିବ । ମୋଟ କଥା ସେ ଯାହା କରିବ ତାହା ହିଁ ଆଇନ । ଆଇନ ଡ୍ରାଇଭରକୁ ମାନିବ ସିନା, ଡ୍ରାଇଭର ଆଇନ ମାନିବାକୁ ବାଧ୍ୟ ନୁହେଁ ।

ସେ ମଧ୍ୟ ସେତେବେଳେ ଦୁର୍ଘଟଣା ଘଟାଇ ପାରେ । ମଣିଷ ମାରି ଦେଇପାରେ । କିନ୍ତୁ ସେ ଦୋଷ ତା'ର ନୁହେଁ । ସତର୍କ ଘଣ୍ଟିକୁ ତମେ ମାନି ନାହଁ । ତେଣୁ ସେ ଦୋଷ ତୁମର- ଡ୍ରାଇଭରର ନୁହେଁ । ଆଉ ତୁମେ ଯଦି ସେତେବେଳେ ପ୍ରତିବାଦ କରିବ ତେବେ କଥା ସରିଚି । ତମେ ଜେଲ ଯିବାକୁ ବାଧ୍ୟ । ତମେ ସେତେବେଳେ ଯଦି ସି.ଆଇ.ଏ. କି ଆଇ.ଏସ୍.ଆଇ. ଏଜେଣ୍ଟ ନୁହଁ ତେବେ ଆଉ କଅଣ ? ତମେ ନିଶ୍ଚୟ ରାଜଦ୍ରୋହୀ- ରାଜାଙ୍କ ପ୍ରତି ଶତ୍ରୁତା ଆଚରଣ କରୁଛ । ମନେ ରଖନ୍ତୁ, ଆମ ଜେଲ୍‌କୁ ଥରେ କେହି ଗଲେ ଆଉ ଫେରିବାର ସମ୍ଭାବନା ନାହିଁ । ନା ବିଚାର ହେବ ନା ତୁମେ ଖଲାସ ହେବ ।

ଶେଷ ଓ ତୃତୀୟ ପ୍ରଶ୍ନଟି ହେଲା ଟ୍ରାଫିକ ନିୟମ ଭଙ୍ଗ କରି ରାଜା ତାଙ୍କ ଗାଡ଼ିକୁ ୧୧୦ ପରିବର୍ତ୍ତେ ୧୪୦ କିଲୋମିଟର ବେଗରେ ନେଇଗଲେ । ସେତେବେଳେ ହୁଏତ ରାସ୍ତାରେ ଭିଡ଼ ନଥିଲା । ସେ ମଧ୍ୟ କୌଣସି ଦୁର୍ଘଟଣା ଘଟାଇ ନାହାନ୍ତି । ସେ କେବଳ ଯାଇଛନ୍ତି ଓ ଆସିଛନ୍ତି ।

ଏଥିରେ ତାଙ୍କର ଅପରାଧ ? ଯାକୁ କ'ଣ ଅପରାଧ କୁହାଯାଏ ? ତା'ଛଡ଼ା ଜଣେ ରାଜା ଯଦି ଏ କାମ କରିଛନ୍ତି ତାକୁ ଭୁଲ ବୋଲି କେମିତି କୁହାଯିବ ? ଆଉ ଯଦିବା ତାଙ୍କର ଭୁଲ ବୋଲି କୁହାଯାଏ, ତାଙ୍କୁ ଏ କଥା କିଏ କହିବ ? କିଏ ତାଙ୍କୁ କହିବ ଯେ, ଆପଣ ଟ୍ରାଫିକ୍ ରୁଲ୍ ଭଙ୍ଗ କରିଛନ୍ତି ବୋଲି ?

ଭାରତବର୍ଷରେ ଏବର ରାଜାମାନେ ଏସବୁ ଦିଗରୁ ଯଥେଷ୍ଟ ସୁରକ୍ଷିତ । ଖାଲି ଏ ସବୁ ଦିଗରୁ ନୁହେଁ ପ୍ରତ୍ୟେକ ଦିଗରୁ ସେମାନେ ସମ୍ପୂର୍ଣ୍ଣ ସୁରକ୍ଷିତ । ସେମାନେ ଯାହା କଲେ ମଧ୍ୟ ଆମ ଦେଶରେ ଆଇନ ତାଙ୍କ ଦେହରେ ଟିପ ଛୁଇଁ ପାରେ ନାହିଁ । ବରଂ ସେମାନଙ୍କୁ ଦେଖି ଖଣ୍ଡେ ଦୂରରୁ କୁର୍ଣ୍ଣିସ କରି ଆଡ଼େଇ ଯାଏ । ଆମେ ତାକୁଇ ଗଣତନ୍ତ୍ର କହୁଁ ।

ସୁଇଡ଼େନ୍‌ରେ ସେ କଥା ହୁଏ ନାହିଁ । ସେଠାକାର ପୁଲିସ ଅଭିଯୋଗକାରୀର ନାଁ ଜାଣି ନ ଥିଲେ ମଧ୍ୟ ଏବଂ ନିର୍ଦ୍ଦିଷ୍ଟ ଅଭିଯୋଗ ରାଜାଙ୍କ ବିରୁଦ୍ଧରେ ବୋଲି ଜାଣିଲା ପରେ ସଂଗେ ସଂଗେ ତଦନ୍ତ ଆରମ୍ଭ କଲେ । ସେମାନେ ରାଜାଙ୍କ ଅଫିସକୁ ଫୋନ କଲେ । ପଚାରିଲେ ଏପରି ହେଇଛି କି ? କଥାଟା ରାଜାଙ୍କ କାନକୁ ଗଲା ।

ଏ କ୍ଷେତ୍ରରେ ଆମ 'ରାଜାମାନେ' ହେଇଥିଲେ କ'ଣ କରି ଥାଆନ୍ତେ ? ରାଜାଙ୍କ ଅଫିସର ତଳିଆ କର୍ମଚାରୀଟିଏ (ରାଜାଙ୍କ କାନକୁ ଏ କଥା ମୋଟେ ନନେଇ) ସଂଗେ ସଂଗେ କହି ଥାଆନ୍ତା 'କୋଉ ପୁଲିସ ଏ କଥା ପଚାରୁଛି ? ତାକୁ ଆଗ ଦ୍ଵୀପାନ୍ତର ପଠେଇ ଦିଅ' ତା'ପରେ ସେ ନିଜେ କହି ଦିଅନ୍ତି- 'ଆମ ରାଜା ନିଜେ ଗାଡ଼ି ଚଳାନ୍ତି ନାହିଁ, ନିଜ ଝିଅଙ୍କୁ ଆଣିବାକୁ ଯାଆନ୍ତି ନାହିଁ କି କସ୍ମିନ୍ କାଳେ ନିୟମ ଭଙ୍ଗ ମଧ୍ୟ କରନ୍ତି ନାହିଁ ।

କିନ୍ତୁ ସୁଇଡ଼େନ୍‌ରେ ରାଜତନ୍ତ୍ର ଶାସନ ଚାଲୁଥିଲେ ମଧ୍ୟ ଏହା ପରମ୍ପରା ବିରୋଧି । ଶାସନର ମୁଖ୍ୟ ବା ରାଜାମାନେ ମଧ୍ୟ ମିଛ କହନ୍ତି ନାହିଁ, ଯେପରି ଆମର ପୃଥିବୀର ବୃହତ୍ତମ ଗଣତନ୍ତ୍ରରେ ହୁଏ । ଆଇନ ନ ମାନିବା ହିଁ ଆମର ପବିତ୍ର ପରମ୍ପରା । ସୁଇଡ଼େନ୍‌ରେ ରାଜା ସେଦିନ ସମସ୍ତ ଗଣମାଧ୍ୟମରେ ଏକ ବିବୃତି ଦେଲେ ଯେ, ସେ ଟ୍ରାଫିକ ନିୟମ ଭଙ୍ଗକରି ଭୁଲ୍ କରିଛନ୍ତି ଏବଂ ସେଥିପାଇଁ ସେ ଦୁଃଖିତ ।

ସତ୍ୟ, ସାଧୁତା, ସଚ୍ଚୋଟତା ଏବଂ ବିଶେଷକରି ଉଚ୍ଚ ଆସନରେ ଥିବା ବ୍ୟକ୍ତି ବିଶେଷଙ୍କ ନୈତିକ ମୂଲ୍ୟବୋଧ ହିଁ ସେ ଦେଶର ଶାସନର ମୂଳଦୁଆ । ତାହା ହିଁ ସେ ଦେଶକୁ ଉନ୍ନତ ଓ ସମୃଦ୍ଧ କରିଛି । 

(ସମୟ- ୨୨.୬.୨୦୦୦)

# ଆମେରିକାର କର୍ଣ୍ଣେଲମାନେ

ପାକିସ୍ତାନର ନବ ନିଯୁକ୍ତ ରାଷ୍ଟ୍ରପତି ଯେତେବେଳେ ଘୋଷଣା କରିଦେଲେ ଯେ ଭାରତ ତାଙ୍କୁ ଆମେରିକାର ଚାପରେ ନିମନ୍ତ୍ରଣ କରିଚି ସେତେବେଳେ ବାଜପେୟୀଙ୍କ ମୁହଁଟା ତଳକୁ ହୋଇଗଲା । ଏମିତି ଗୋଟିଏ କଥା ଯେ ମୁସାରଫ କହି ଦେବେ ସେକଥା ସେ ମୋଟେ କଳ୍ପନା କରି ନ ଥିଲେ । ପ୍ରକୃତରେ ଭାରତ ପାକିସ୍ତାନକୁ ଆଲୋଚନା ପାଇଁ ନିମନ୍ତ୍ରଣ କଲା ପରଠୁ ମୁସାରଫ ଜଣେ ପୋଖତ ରାଜନୈତିକ ଖେଳୁଆଡ଼ ପରି ଏମିତି କେତେକ କଥା କହିଚନ୍ତି, ଯୋଉଥିରେ ବାଜପେୟୀ ଅପ୍ରସ୍ତୁତ ହେଇ ଯାଉଚନ୍ତି । ପ୍ରଥମରେ ମୁସାରଫ କହିଲେ ''ବାଜପେୟୀଙ୍କ କବିତା ସେ ବୁଝି ପାରୁ ନାହାନ୍ତି । ସେ ଶାନ୍ତିର କଥା କହୁଚନ୍ତି କି ଯୁଦ୍ଧର କଥା କହୁଚନ୍ତି ସେ କଥା ମୁସାରଫ ବୁଝି ପାରୁ ନାହାନ୍ତି ।'' ଏହା ଏକ ଚମତ୍କାର ପରିହାସ । ତା'ର ରାଜନୈତିକ ଇଙ୍ଗିତ ଅତି ସ୍ପଷ୍ଟ । ଭାରତ ସହିତ ଗୋଟାଏ ସ୍ଥାୟୀ ଶାନ୍ତିର ଆଲୋଚନା ପରିପ୍ରେକ୍ଷୀରେ ଏ ପ୍ରକାର ବ୍ୟଙ୍ଗ ଯେ ବାଜପେୟୀଙ୍କୁ ଆଘାତ ଦେଇ ନ ଥିବ ସେ କଥା ନୁହେଁ । ବାଜପେୟୀ କେବେ ବି ଚିନ୍ତାକରି ନଥିବେ ଯେ ତାଙ୍କ କବିତାକୁ ମୁସାରଫ ରାଜନୈତିକ ଉଦ୍ଦେଶ୍ୟରେ ବ୍ୟବହାର କରିବେ । ଏବେ ଗୋଟିଏ କଥା ଅନ୍ତତଃ ହେବ ଯେ ଯଦି କୌଣସି କାରଣରୁ ବାଜପେୟୀ-ମୁସାରଫ ଆଲୋଚନା ବିଫଳ ହୁଏ ତେବେ ସେତେବେଳେ ମୁସାରଫ ହୁଏତ ଆଉ ଥରେ ତାଙ୍କ ମତ ଦୋହରାଇ କହିବେ, ''ମୁଁ ତ ଜାଣିଥିଲି ବାଜପେୟୀ ଦୁଇ ପ୍ରକାର କଥା କହନ୍ତି । ସେ ଯୁଦ୍ଧର କଥା କହନ୍ତି ଓ ଶାନ୍ତିର କଥା ମଧ କହନ୍ତି ।'' ସେ ସେତେବେଳେ ବାଜପେୟୀଙ୍କୁ ଦୁଇ ଚରିତ୍ରର ନେତା ବୋଲି ପ୍ରମାଣିତ କରିଦେବେ । ସେତେବେଳେ ବାଜପେୟୀ କି ଉତ୍ତର ଦେବେ ଆମେ ଜାଣୁନା । ତେବେ ଚୁପ ରହିବା ଛଡ଼ା ଆଉ କ'ଣ ସେ କରିବେ ?

କବିତା ବୁଝିପାରୁ ନ ଥିବା କଥା କହିବାର ମାତ୍ର ଦୁଇ ଦିନ ପରେ ମୁସାରଫ ତାଙ୍କର ଦ୍ୱିତୀୟ ବୋମା ବାଜପେୟୀଙ୍କ ଉଦ୍ଦେଶ୍ୟରେ ନିକ୍ଷେପ କଲେ । ସେ କହିଲେ ବାଜପେୟୀ ତାଙ୍କୁ ଆମେରିକାର ନିର୍ଦ୍ଦେଶରେ ଭାରତକୁ ନିମନ୍ତ୍ରଣ କରିଚନ୍ତି । ଏ କଥାଟା ବାଜପେୟୀଙ୍କୁ ଆହୁରି ବାଧିଥିବ । ତାଙ୍କ ବୈଦେଶିକ ବିଭାଗ ସଙ୍ଗେ ସଙ୍ଗେ ଉତ୍ତର ଦେଲେ ଯେ ଏକଥା ଠିକ୍ ନୁହେଁ । କାହାରି ଚାପରେ ପଡ଼ି ଭାରତ ପାକିସ୍ତାନକୁ ନିମନ୍ତ୍ରଣ କରିନାହିଁ ।

ଏଇ କଥା ପଦକରୁ ହୁଏତ ସାଧାରଣ ଲୋକେ ବୁଝିଯିବେ ଯେ ପ୍ରକୃତରେ ମୁସାରଫ ଠିକ୍ କଥା କହି ନାହାନ୍ତି । ଭାରତ ଯେତେବେଳେ ବରାବର କହି ଆସୁଚି ଯେ କାଶ୍ମୀର କଥାରେ ସେ କାହାରି ମଧ୍ୟସ୍ଥତା ଆବଶ୍ୟକ କରେ ନାହିଁ ସେତେବେଳେ ଆମେରିକା ଚାପର ପ୍ରଶ୍ନ ଉଠୁଚି କୋଉଠି ? ଉପରକୁ ଦେଖିବାକୁ ଏହା ବେଶ୍ ସ୍ପଷ୍ଟ ।

ବୈଦେଶିକ ବିଭାଗ ସାଧାରଣ ଭାବେ ମୁସାରଫଙ୍କ ବକ୍ତବ୍ୟର ପ୍ରତିବାଦଟିଏ ସମ୍ବାଦପତ୍ରକୁ ପଠାଇ ସାରିଲା ପରେ ଚୁପ ହୋଇ ଗଲେ । ତା' ଉପରେ ଆଉ ଅଧିକ ଖୋଳତାଡ଼ କରିବାକୁ ସେମାନେ ଚାହିଁ ନଥିଲେ । ଆମେ ତ କହିଛୁ ''ଲୁଚିଚି, ନା ଗୋଡ଼ ଦି'ଟା ଦେଖା ଯାଉଥିଲେ କାହାର କ'ଣ ଯାଏ ?''

ଯା' ହେଉ ଭାରତର ଏ ଅବସ୍ଥା ଦେଖି ମୁସାରଫ ମଧ୍ୟ ଆଉ ଥରେ କହିଲେ ଯେ ''ସେ ଏ କଥା କହି ନାହାନ୍ତି, ସଂବାଦପତ୍ରମାନେ ତାଙ୍କ ମନକୁ ଏ କଥା ଲେଖି ଥିବେ ।'' କଥାଟା ହୁଏତ ଏଇଠି ସରିଥିବ, କିନ୍ତୁ ପ୍ରକୃତ କଥାଟା କ'ଣ କାହାକୁ ଜଣାନାହିଁ ? ପୃଥିବୀର ସମସ୍ତେ ଜାଣନ୍ତି ଯେ ଏ କଥାବାର୍ତ୍ତାରେ ଆମେରିକାର ହାତ ଅଛି । ଆମେରିକାର ହାତରେ ଭାରତ ଓ ପାକିସ୍ତାନ ଦୁଇଟି କଣ୍ଢେଇ ଏବେ ନାଚୁଚନ୍ତି । ଆମେରିକା ଛଡ଼ା ସେମାନଙ୍କର ଅନ୍ୟ ଗତି ନାହିଁ । ଆମେରିକା କାଶ୍ମୀର ଘଟଣାରେ ଭୂତ ହେଇ ଯେତିକି ମାଡ଼ିବସେ, ଗୁଣିଆ ହେଇ ସେତିକି ମଧ୍ୟ ଝାଡ଼ିଦିଏ । ଏ କଥା କିଏ ନ ଜାଣେ ।

ଗତ ଜୁଲାଇ ୧ ତାରିଖର ଷ୍ଟେଟସ୍‌ମେନ୍ ତା'ର ପ୍ରଥମ ପୃଷ୍ଠାରେ ଲେଖିଚି ବାଜପେୟୀ-ମୁସାରଫଙ୍କ ଗସ୍ତର କାର୍ଯ୍ୟକ୍ରମ ଓ ତା'ର ଆଲୋଚନାର ବିଷୟବସ୍ତୁର ଚିଠା ନିଜେ ପ୍ରସ୍ତୁତ କଲାପରେ ପ୍ରଧାନମନ୍ତ୍ରୀଙ୍କର ଏକାନ୍ତ ବିଶ୍ୱସ୍ତ ବ୍ରଜେଶ ମିଶ୍ର ତାକୁ ନେଇ ଆମେରିକା ଯାଇଚନ୍ତି । ବାଜପେୟୀ ଏ ଚିଠା ତିଆରି ବେଳେ ତାଙ୍କ ବୈଦେଶିକ ମନ୍ତ୍ରଣାଳୟର ସାହାଯ୍ୟ ନେଇ ନାହାନ୍ତି କି ବ୍ରଜେଶ ମିଶ୍ରଙ୍କ ସହିତ ଅନ୍ୟ କେହି କର୍ମକର୍ତ୍ତା ମଧ୍ୟ ଆମେରିକା ଯାଇ ନାହାନ୍ତି । ସମ୍ବାଦରେ ଏ କଥା ମଧ୍ୟ କୁହା ଯାଇଚି ଯେ ବୁଶ୍ ସରକାର ବୋଧେ କାଶ୍ମୀର ପ୍ରସଙ୍ଗରେ କ'ଣ ଆଲୋଚନା ହେବ ସେ କଥା ଜାଣିବାକୁ ଚାହାନ୍ତି । ଯେହେତୁ ପାକିସ୍ତାନ ଚାହେଁ ଯେ ଆଲୋଚନାରେ କାଶ୍ମୀର ପ୍ରସଙ୍ଗ ବିଶେଷ ଭାବରେ ଆଲୋଚିତ ହେଉ । ଏହି ପ୍ରସଙ୍ଗରେ ପାକିସ୍ତାନ ବୈଦେଶିକ ମନ୍ତ୍ରୀ ଅବଦୁସ୍ ସତାର୍ ମଧ୍ୟ ଏବେ ଆମେରିକାରେ ଅଛନ୍ତି ।

ସଂବାଦପତ୍ରରେ ଏତେ କଥା ସ୍ପଷ୍ଟଭାବେ ପ୍ରକାଶ ପାଇଲା ପରେ ଆଉ କୋଉ କଥା ଅଛପା ରହିଗଲା ଯେ ଏବେ କୁହାଯାଉଚି ଆମେରିକା ଚାପରେ ଭାରତ ପାକିସ୍ତାନକୁ ନିମନ୍ତ୍ରଣ କରିନାହିଁ । ଅବଶ୍ୟ ଭାରତର ବୈଦେଶିକ ବିଭାଗ ବ୍ରଜେଶ ମିଶ୍ରଙ୍କ ଗସ୍ତ ସହିତ ଦୁଇ ରାଷ୍ଟ୍ରମୁଖ୍ୟଙ୍କ ଆଲୋଚନାର କୌଣସି ସମ୍ପର୍କ ନାହିଁ ବୋଲି କହିଚନ୍ତି । ସେ କଥା ଆଉ କହି ନଥାଆନ୍ତେ କି ?

ବ୍ରଜେଶ ମିଶ୍ରଙ୍କ ଅଚାନକ ଗସ୍ତ ସହିତ ଅବଦୁସ୍ ସତାରଙ୍କ ଆମେରିକା ଗସ୍ତକୁ ଯୋଡ଼ି ଦେଖିଲେ ଜଣାପଡୁଚି ଯେ ଦୁଇ ମୁଖ୍ୟ ଯେଉଁ ବିଷୟରେ ଆଲୋଚନା କରିବେ ତାହା ଆଗରୁ ଆମେରିକାର ମଞ୍ଜୁରି ପାଇଥିବା ଆବଶ୍ୟକ । 'କାଶ୍ମୀର' ଯେ ମୁଖ୍ୟ ବିଷୟ ହେବ ଏଥିରେ ସନ୍ଦେହ ନାହିଁ । କାରଣ ତାହା ହିଁ ପାକିସ୍ତାନର ଇଚ୍ଛା । ତେଣୁ ଏସବୁ ଦିଗରୁ ଦେଖିଲେ ଆମେରିକା ଯେ କାଶ୍ମୀର ବିଷୟରେ ଭାରତ ଉପରେ ଚାପ ସୃଷ୍ଟି କରୁଚି ଏଥିରେ

ସନ୍ଦେହ ନାହିଁ । ମୁସାରଫ ମିଛ କହିନାହାନ୍ତି । ଏଥିରୁ ଏ କଥା ମଧ୍ୟ ଜଣାପଡୁଚି, ଏଥର ଭାରତକୁ କିଛିଟା ତ୍ୟାଗ କରିବାକୁ ପଡ଼ିପାରେ । ସେ ତ୍ୟାଗଟା କୋଉ ପର୍ଯ୍ୟନ୍ତ ଯାଇପାରେ ତାହା ଏବେଠୁ କହିବା ସମ୍ଭବ ହେଉନଥିଲେ ମଧ୍ୟ 'ଲାଇନ୍ ଅଫ୍ କଣ୍ଟ୍ରୋଲ୍'କୁ ଉଭୟଙ୍କ ଆନ୍ତର୍ଜାତିକ ସୀମାରେଖା ହିସାବରେ ଗ୍ରହଣ କରିବାକୁ ପଡ଼ିପାରେ । 'ସିଟିବିଟି' ରେ ଦସ୍ତଖତ କରିବାକୁ ମଧ୍ୟ ଚାପ ପଡ଼ିପାରେ ।

ଏ ଦୁଇଟି ଯାକ ଏପରି ସ୍ପର୍ଶକାତର ସମସ୍ୟା ଯେ ତା' ସହିତ ଭାରତର ଭବିଷ୍ୟତ ବହୁ ଭାବରେ ଜଡ଼ିତ । ତା'ର ସମ୍ମାନ ମଧ୍ୟ ଜଡ଼ିତ । କିନ୍ତୁ ଏସବୁ ସତ୍ତ୍ୱେ ସମସ୍ତେ ଚାହାନ୍ତି କାଶ୍ମୀର ସମସ୍ୟାର ସମାଧାନ ହେଉ । ଲାଇନ୍ ଅଫ୍ କଣ୍ଟ୍ରୋଲ୍‌କୁ ଆନ୍ତର୍ଜାତିକ ସୀମାରେଖା ହିସାବରେ ଗ୍ରହଣ କରା ଗଲେ କାଶ୍ମୀରବାସୀ ଏଥିରେ ସନ୍ତୁଷ୍ଟ ହେବେ ତା'ର କୌଣସି ଗ୍ୟାରେଣ୍ଟି ନାହିଁ । ସେମାନେ ଏକଥା ମୋଟେ ଗ୍ରହଣ କରିବେ ନାହିଁ । ହୁଏତ କିଛିଦିନ ପାଇଁ ଉତ୍ତେଜନା ପ୍ରଶମିତ ହେଇ ଯାଇପାରେ । କିନ୍ତୁ ତାହା ସ୍ଥାୟୀ ସମାଧାନ ନୁହେଁ ।

ଆଉ ଏକ ସମସ୍ୟା ଯାହା ସମସ୍ତଙ୍କୁ ବିଚଳିତ କରୁଚି ତାହା ହେଲା 'ଆନ୍ତର୍ଜାତିକ ସନ୍ତ୍ରାସବାଦ' । ସେ ବିଷୟରେ ଦୁଇ ରାଷ୍ଟ୍ରମୁଖ୍ୟଙ୍କ ଭିତରେ ଆଲୋଚନା ହେଇପାରେ । କିନ୍ତୁ ତାକୁ ରୋକିବ କିଏ ? ଆନ୍ତର୍ଜାତିକ ସନ୍ତ୍ରାସବାଦର ଗୁରୁ ଏବେ ଆମେରିକା । ସବୁ ନାଟର ଗୋବର୍ଦ୍ଧନ ସେଇ । କେବଳ ତାଲିବାନ ସିନା ତା' ହାତରୁ ଏବେ ଅଲଗା ହେଇ ଯାଇଚି । ନଚେତ ସେମାନଙ୍କ ଜନ୍ମ ଦାତା ମଧ୍ୟ ଆମେରିକା । ଏଥିପାଇଁ ଯଦିବା କିଛି ବୁଝାମଣା ହୁଏ ତାହା ହେବ ଲୋକ ଦେଖାଣିଆ । ତା'ର ପ୍ରକୃତ ମୂଲ୍ୟ କିଛି ରହିବ ନାହିଁ ।

ଭାରତ ପାକିସ୍ତାନ ଦୁହେଁ ଅନେକ ଦିନରୁ ଆମେରିକାଠାରେ ବନ୍ଧା ପଡ଼ିଛନ୍ତି । ପୋଖରାନ-୨ ପରେ ବାଜପେୟୀ ସରକାର ଆମେରିକାର ଅର୍ଥନୈତିକ କଟକଣା (ସାଂକ୍‌ସନ) ପାଇଁ ନାକେଦମ ହେଇ ଗଲାଣି । ଆମର ଅର୍ଥନୈତିକ ଅବସ୍ଥା ରସାତଳକୁ ଚାଲି ଗଲାଣି । ଆମେରିକା ଏବେ ଏମାନଙ୍କୁ ନାକରେ ଦଉଡ଼ି ଦେଇ ଘୋଷାଡୁଚି । ସେ ଅବସ୍ଥାରେ ଆମେରିକା ଯାହା କହୁଚି ତାକୁ ଭାରତ ମାନିବାକୁ ବାଧ୍ୟ ହେଉଚି । ମୁଣ୍ଡଟାକୁ ପୂରା ବିକା ସରିଲାଣି ।

କାର୍‌ଗିଲ୍ ଭିଆଣ ମଧ୍ୟ ଆମେରିକାର ଏବଂ ତା'ର ଅସ୍ଥାୟୀ ସମାଧାନ ମଧ୍ୟ ତା'ର । ଏ ସବୁଯାକ ଦଉଡ଼ି ଆମ ବେକରେ ବନ୍ଧାହୋଇ ଏବେ ତାଙ୍କ ହାତରେ । ଆମର ହଲିବାକୁ ଶକ୍ତି ନାହିଁ, ଯଦି କିଛି ରାଜିନାମା ହେଇ ନ ପାରେ, ତେବେ ଅର୍ଥନୈତିକ କଟକଣା (ସାଂକ୍‌ସନ୍) ଉଠିବାର ସମ୍ଭାବନା ନାହିଁ । ବାଲ୍ ଥାକରେଙ୍କ କହିବା ଅନୁସାରେ ଆଉଥରେ ଯୁଦ୍ଧ ବି ଲାଗି ଯାଇପାରେ । ଏଇସବୁକୁ ଆଖିଆଗରେ ରଖି ସେ ହୁଏତ ଏ କଥା କହିଥିବେ । ତେଣୁ ଏ ଆଲୋଚନାର ଗତି କୁଆଡ଼େ ଯିବ ତାହା ଏବେ ଠାରୁ କହିହେବ ନାହିଁ । ଗୋଟିଏ ଦିଗରେ ଦେଶର ସମ୍ମାନ ଓ ତା'ର ନିରାପତ୍ତା ଓ ଅନ୍ୟ ଦିଗରେ ଦେଶର ଅର୍ଥନୀତି ଓ ଭବିଷ୍ୟତ । ବାଜପେୟୀ ସରକାର ଯେ ଖଣ୍ଡାଧାରରେ ଚାଲୁଚନ୍ତି ଏଥିରେ ସନ୍ଦେହ ନାହିଁ । ■

(ସମୟ-୬.୭.୨୦୦୧)

# ଆମ ଆଇନ ଓ ଆମ ସଂସ୍କୃତି

କିଛିଦିନ ତଳେ ଆଲ୍ଲାହାବାଦ ହାଇକୋର୍ଟ ଗୋଟାଏ ରାୟରେ କହିଥିଲେ ଯେ, ଜଣେ ପୁରୁଷ ଓ ଜଣେ ସ୍ତ୍ରୀ ସେମାନେ ଯିଏ ହେଇ ଥାଆନ୍ତୁ ନା କାହିଁକି, ସେମାନେ ଚାହୁଁଥିବା ଯାଏ ଏକାଠି ବସବାସ କରିପାରିବେ । ଅବଶ୍ୟ ହାଇକୋର୍ଟ ଏ କଥା ମଧ୍ୟ କହିଛନ୍ତି ଯେ, ଆମ ସଂସ୍କୃତି କିନ୍ତୁ ଏ କଥାକୁ ଗ୍ରହଣ କରେ ନାହିଁ ।

ଏ କଥାଟା ପ୍ରକାଶ ପାଇଲା ପରେ ଦେଶରେ ଗୋଟାଏ ଚହଳ ସୃଷ୍ଟି ହେଲା । ଯେ କୌଣସି ପୁରୁଷ ଓ ଯେ କୌଣସି ସ୍ତ୍ରୀ ଯଦି ବିନା ବାଧାରେ ସେମାନେ ଚାହୁଁଥିବା ଯାଏ ଏକାଠି ବସବାସ କରିପାରିବେ ତେବେ ପୁଲିସ୍ ସେମାନଙ୍କର ଆଉ କିଛି କରି ପାରିବ ନାହିଁ । ଏବେ ଯେମିତି ବେଳେ ବେଳେ ହୋଟେଲ୍ କିମ୍ବା ଅନ୍ୟ ବାସସ୍ଥାନ ମାନଙ୍କରେ ପୋଲିସ୍ ରାତିଅଧିଆ ରେଡ୍ କରି ଯୁବକ ଯୁବତୀମାନଙ୍କୁ ଆରେଷ୍ଟ କରୁଛି ଏବଂ ସେମାନଙ୍କୁ ବିଭିନ୍ନ ଆଇନରେ କୋର୍ଟକୁ ଚାଲାଣ କରୁଛି, ସେ ସବୁ ଆଉ ହୋଇ ପାରିବ ନାହିଁ । ସେମାନେ ଅତି ସ୍ପଷ୍ଟ ଭାବରେ କହିଦେଇ ପାରିବେ ଯେ, ଆମେ ଏଠି କିଛିଦିନ ରହିବୁଁ । ମଉଜ ମଜଲିସ୍ କରିବୁଁ । ବୁଲାବୁଲି କରିବୁଁ । ଜୀବନକୁ ଉପଭୋଗ କରିବୁଁ । ତା'ପରେ ଯେତେବେଳେ ଆଉ ମନ ନ ମାନିବ ସେତେବେଳେ ଅଲଗା ହୋଇଯିବୁଁ । ସ୍ତ୍ରୀ ପୁରୁଷର ଅନାଲୋଚିତ ଦିଗର ସମ୍ପର୍କଟା ଯେତେବେଳେ ଶୀର୍ଷରେ ପହଞ୍ଚି ଯାଏ ସେତେବେଳେ ତାହା ତଳକୁ ଖସିବାକୁ ବାଧ୍ୟ । ସେତେବେଳେ ତାହା ପୁଣିଥରେ ବିପରୀତ ଦିଗକୁ ପ୍ରବାହିତ ହୁଏ । ସେ ସମ୍ପର୍କରେ ସେଇଠି ପୂର୍ଣ୍ଣଚ୍ଛେଦ ପଡ଼ିଯାଏ । ଉପଭୋଗର ସମସ୍ତ ବସ୍ତୁ ସେତେବେଳେ ପିତା ଲାଗେ, ସ୍ୱର୍ଗଟା ସେତେବେଳେ ନର୍କରେ ପରିଣତ ହୋଇଯାଏ ।

ପାଶ୍ଚାତ୍ୟ ସଭ୍ୟତାରେ ଏସବୁ ଅତି ସାଧାରଣ କଥା । ବର୍ଷେ ଦୁଇବର୍ଷ ପାଇଁ କିମ୍ବା ବେଳେ ବେଳେ ତା'ଠୁ ଆହୁରି କମ୍ ସମୟ ପାଇଁ ମଧ୍ୟ ପୁରୁଷ ଓ ସ୍ତ୍ରୀ ଗୋଟାଏ ଅଲିଖିତ କିମ୍ବା ଲିଖିତ ଚୁକ୍ତି ମାଧ୍ୟମରେ ଘର ତିଆରି କରନ୍ତି ଏବଂ ପରେ ଯେତେବେଳେ ମନ ଫଟାଫଟି ହୋଇଯାଏ, ସେତେବେଳେ ସେମାନେ ଅଲଗା ହୋଇ ଯାଆନ୍ତି । ପାଶ୍ଚାତ୍ୟ ସମାଜରେ କୌଣସି ଉପର ତଳ ବାଛ ବିଚାର ନ ଥାଇ ଏହା ସ୍ୱାଭାବିକ ଭାବେ ସବୁ ସ୍ତରରେ କାମ କରେ । ଆମେରିକାର ପୂର୍ବତନ ରାଷ୍ଟ୍ରପତି ଜନ୍.ଏଫ୍.କେନେଡ଼ିଙ୍କ ମୃତ୍ୟୁ ପରେ ତାଙ୍କ ସ୍ତ୍ରୀ ଦୁଇ ଶିଶୁପୁତ୍ରଙ୍କୁ ନେଇ ବିଖ୍ୟାତ ଜାହାଜ ବ୍ୟବସାୟୀ ଏବଂ ୭୫ ବର୍ଷର ବୃଦ୍ଧ ଓନାସିସିଙ୍କୁ ବିବାହ କଲେ । ତାଙ୍କ ସହିତ କିଛି ବର୍ଷ

ବିଚ୍ଛେଦ ହେବା ପରେ (ଶ୍ରୀମତୀ କେନେଡ଼ି) ପୁଣି ଥରେ ଅନ୍ୟ ଜଣେ ପୁରୁଷଙ୍କୁ ବିବାହ କଲେ । ଅବଶ୍ୟ ଏ କ୍ଷେତ୍ରରେ ସେମାନେ କୋର୍ଟରେ ଗୋଟାଏ ଚୁକ୍ତି ପତ୍ରରେ ସ୍ୱାକ୍ଷର କରିଥିଲେ । କୌଣସି ଅଲିଖିତ ଚୁକ୍ତି ସେଠାରେ ନ ଥିଲା । ଇଂଲଣ୍ଡର ଯୁବରାଣୀ ଡାଏନାଙ୍କ କ୍ଷେତ୍ରରେ ମଧ୍ୟ ସେହି ଏକ ପ୍ରକାର କଥା । ଡାଏନା ଯୁବରାଜ ଚାର୍ଲସ୍‌ଙ୍କୁ ବିଧିବଦ୍ଧ ଭାବେ ବିବାହ କରିଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ସେ ଚାର୍ଲସ୍‌ଙ୍କ ଠାରୁ ମନ ଫେରାଇ ବହୁ ଜାଗାରେ ଲାଖି ଯାଉ ଥିଲେ । ତାଙ୍କର ମଧ୍ୟ ଦୁଇଟି ପିଲା ଥିଲେ । ଶେଷରେ ସେ ସେହି ପ୍ରକାର ଜଣେ ପ୍ରେମିକ ସହ ଥିଲା ବେଳେ ଗୋଟାଏ ଦୁର୍ଘଟଣାରେ ମୃତ୍ୟୁ ବରଣ କରି ଥିଲେ । ପୃଥିବୀର ବିଖ୍ୟାତ ପ୍ରେମ କାହାଣୀ ଭିତରୁ ଡାଏନାଙ୍କ କାହାଣୀ ହୁଏତ ଖୁବ୍ ଲମ୍ବା ଓ ବେଶ୍ ରୋମାଞ୍ଚକର । ସ୍ୱାମୀଙ୍କୁ ଛାଡ଼ି ଅନ୍ୟ ପୁରୁଷଙ୍କ ସାଥିରେ ମାତିବା ଡାଏନାଙ୍କର ଏକ ସୌଖୀନ ସଉକ ଥିଲା ।

ଏସବୁ କ୍ଷେତ୍ରରେ ସେ ଦେଶର ଆଇନ ସପକ୍ଷରେ ସେଠାର ସମାଜ ଦୃଢ଼ ଭାବେ ଛିଡା ହୁଏ । ତାହା ଏକ ଭିନ୍ନ ସଂସ୍କୃତି । ସେ ସଂସ୍କୃତିରେ ଜଣେ ପୁରୁଷ ବା ସ୍ତ୍ରୀ ଏକାଧିକ ପୁରୁଷ ବା ସ୍ତ୍ରୀ ସହିତ ସମ୍ପର୍କ ସ୍ଥାପନ କରିପାରେ । ସମାଜ ତାକୁ ବାଧା ଦିଏନା । ବରଂ ତାକୁ ତା'ର 'ପ୍ରାଇଭେଟ୍ ଲାଇଫ୍' ହିସାବରେ ଖାଲି ଗ୍ରହଣ କରେ ନାହିଁ ବରଂ ତାକୁ ଯଥେଷ୍ଟ ସମ୍ମାନ ଦିଏ । ଏ ସଂସ୍କୃତିରେ ଯଦି ସ୍କୁଲ ଯାଉଥିବା ଝିଅଟି ଘରକୁ ନ ଫେରି ରାତିରେ କେଉଁଠି ରହିଯାଏ କିମ୍ବା ୨/୪ ଦିନ ପରେ ଫେରି ଆସି କହେ, ''ମୁଁ ମୋ ପୁରୁଷ ବନ୍ଧୁ ସହିତ ହୋଟେଲ୍‌ରେ ରହିଗଲି'' ସେତେବେଳେ ତାକୁ ସମାଜ କିମ୍ବା ଆଇନ କେହି ବାଧା ଦିଅନ୍ତିନି । ଡାଏନାଙ୍କ ଘଟଣାରେ ତାହା ହିଁ ହୋଇଥିଲା । ରାଜ ପ୍ରାସାଦର ନିୟମ ନ ମାନି ଅନ୍ୟ ପୁରୁଷ ସହିତ ଚାଲି ଯାଇ ଥିବାରୁ ତାଙ୍କ ମୃତ୍ୟୁ ପରେ, ଯୁବରାଜ ତାଙ୍କୁ ଯୁବରାଣୀ ମାନ୍ୟତା ଦେବାକୁ ଚାହିଁ ନ ଥିଲେ ମଧ୍ୟ ସେଠାର ସମାଜ ତା'ର ପ୍ରତିବାଦ କରିଥିଲା ସେମାନେ କହିଥିଲେ ଜଣକର 'ପ୍ରାଇଭେଟ୍ ଲାଇଫ୍'ରେ ଆଇନ ହସ୍ତକ୍ଷେପ କରି ପାରିବ ନାହିଁ ।

ଆମ ଦେଶରେ କିନ୍ତୁ ସେ କଥା ହୁଏ ନାହିଁ । ପୁରୁଷ ଓ ସ୍ତ୍ରୀର ସମ୍ପର୍କକୁ ଆମ ଆଇନ ସମ୍ମାନ ଦିଏ ଠିକ୍ କିନ୍ତୁ ତାହା ଅବାରିତ ନୁହେଁ । ସ୍ୱାମୀ ଓ ସ୍ତ୍ରୀର ସମ୍ପର୍କ ବାହାରେ ଯେ କୌଣସି ସମ୍ପର୍କକୁ ନା ଆଇନ୍ ଗ୍ରହଣ କରେ, ନା ସମାଜ । ସ୍ୱାମୀ ସ୍ତ୍ରୀର ସମ୍ପର୍କକୁ ଆଇନ ଯେତିକି ସମ୍ମାନ ଦିଏ ତା'ର ସମାଜ ମଧ୍ୟ ସେତିକି ସମ୍ମାନ ଦିଏ । ଏହା ହିଁ ଏକମାତ୍ର କାରଣ, ଯେଉଁଥିପାଇଁ ଆମ ସମାଜରେ ପୁରୁଷ ଓ ସ୍ତ୍ରୀ ଥରେ ବୈବାହିକ ସମ୍ପର୍କରେ ଆବଦ୍ଧ ହୋଇ ଗଲା ପରେ ଅର୍ଥାତ୍ ବେଦୀରେ ବସିଗଲା ପରେ ଆଉ କୋର୍ଟକୁ ନ ଗଲେ ମଧ୍ୟ ସମ୍ପର୍କ ଏତେ ଦୃଢ଼ ହୋଇଯାଏ ଯେ, ତାକୁ ଛିନ୍ନ କରିହୁଏ ନାହିଁ । ସେ ସମ୍ପର୍କ ଏତେ ଅନାବିଳ ଓ ପବିତ୍ର ଥାଏ ଯେ, ଯେ କୌଣସି ଅବସ୍ଥାରେ ସେ ସମ୍ପର୍କରେ ଆଉ ପରିବର୍ତ୍ତନ ହୁଏ ନାହିଁ । ଏପରିକି ଜଣକର ମୃତ୍ୟୁ ପରେ ମଧ୍ୟ ସେ ସମ୍ପର୍କ ଅତୁଟ

ଥାଏ । ହିନ୍ଦୁ ଭାବଧାରର ପ୍ରାଚୀନତା ଓ ତା'ର ଧାର୍ମିକ ପବିତ୍ରତା ସେ ଦୁଇ ଜଣକୁ ଅତି ଶକ୍ତ ଭାବରେ ବାନ୍ଧି ରଖିଥାଏ । ମଣିଷଟି ସବୁବେଳେ ଭାବୁଥାଏ ଯେ, ବୈବାହିକ ସମ୍ପର୍କ ବାହାରେ ସେ ଯାହା କରିବାକୁ ଯାଉଛି କିମ୍ବା ବେଳେ ବେଳେ ଯାହା କରିବାକୁ ଭାବୁଛି ତାହା ନୈତିକ ଦୃଷ୍ଟିରୁ ଅନ୍ୟାୟ ଏବଂ ପ୍ରତ୍ୟେକ ଅନ୍ୟାୟ କାମ ପାଇଁ ତାକୁ ଦିନେ ନା ଦିନେ ଦଣ୍ଡ ଭୋଗିବାକୁ ପଡ଼ିବ । ଏହା ତା'ର ଧର୍ମ ପ୍ରତି ଥିବା ଭୟରୁ ସୃଷ୍ଟି ହୁଏ । ସେ ଭୟ ଚିରନ୍ତନ । ମଣିଷଟି ଯେତେ ସାହସୀ ହେଲେ ମଧ୍ୟ,ଯେତେ ଆଧୁନିକ ହେଲେ ମଧ୍ୟ ସେ ଭୟ ତା' ମନ ଭିତରେ ବସା ବାନ୍ଧି ଥାଏ । ଆଇନ ଯାହାକୁ ଅନ୍ୟାୟ ବୋଲି କହେ ଆମ ଶାସ୍ତ୍ର ତାକୁ ପାପ ବୋଲି କହେ । ପାପ ପାଇଁ ଶାସ୍ତ୍ରରେ ଯେମିତି ଦଣ୍ଡ ବିଧାନ କରା ଯାଇଛି, ପ୍ରତ୍ୟେକ ଅନ୍ୟାୟ କାମ ପାଇଁ ମଧ୍ୟ ଆଇନରେ ଦଣ୍ଡବିଧାନ କରା ଯାଇଛି । ମିଛକୁ ଶାସ୍ତ୍ର ପାପ ବୋଲି କହି ଥିଲା ବେଳେ ପାପ ଶବ୍ଦକୁ ଗ୍ରହଣ କରି ନଥିବା ଆଇନ ମିଛ ପାଇଁ ଦଣ୍ଡବିଧାନ କରିଛି । ତେଣୁ ଆମ ସମାଜରେ ଆଇନ ସବୁବେଳେ ଆମ ସଂସ୍କୃତିକୁ ଅନୁସରଣ କରି ଥାଏ । ତାକୁ ଛାଡ଼ି ସେ ଗୋଟାଏ ଇଞ୍ଚ ମଧ୍ୟ ଆଗକୁ ବଢ଼ିପାରେ ନାହିଁ । ଆଇନ ଯେତେବେଳେ ଆମ ସଂସ୍କୃତିକୁ ଆଡ଼େଇ ଅନ୍ୟ ବାଟରେ ଚାଲିଯାଏ ସେତେବେଳେ ଆମ ସମାଜ ତାକୁ ଚେତାଇ ଦିଏ । ତାକୁ ସତର୍କ କରେଇ ଦିଏ । କହେ, ''ତୋ ଚାରିପଟେ ଥିବା ଲକ୍ଷ୍ମଣରେଖାକୁ ଡେଇଁ ତୁ କୁଆଡ଼େ ଯାଉଚୁ ? ମୁଁ ତୋ ନିର୍ଦ୍ଦେଶ ମାନିବାକୁ ମୋତେ ବାଧ୍ୟ ନୁହେଁ । ବରଂ ତୁ ମୋତେ ମାନିବୁ ।''

ସେଇଠି ଆଇନ ନଇଁ ପଡ଼େ । ତେଣୁ ଯେତେବେଳେ ପୁରୁଷଟିଏ ବା ସ୍ତ୍ରୀଟିଏ ତା'ର ବୈବାହିକ ସମ୍ପର୍କ ବାହାରକୁ ଚାଲିଯାଏ ସେତେବେଳେ ଆଇନ ନିରବ ହେଇ ଯାଉଥିଲେ ମଧ୍ୟ ସମାଜ ତା'ର ପ୍ରତିବାଦ କରେ । ସଂସ୍କୃତି ସେଠାରେ ଚିତ୍କାର କରିଉଠେ । ତାକୁ ମୋଟେ ଗ୍ରହଣ କରେ ନାହିଁ । ଏହା ହିଁ ଆମ ସାମାଜିକ ପରମ୍ପରା । ସାମାଜିକ ପରମ୍ପରା ହିଁ ନିୟମ । ସେ ନିୟମର ଲିଖିତ ରୂପ ନ ଥିଲେ ମଧ୍ୟ ତାହା ଖୁବ୍ ଶକ୍ତିଶାଳୀ । ତାକୁ ଛାଡ଼ି ବାହାରକୁ ଯିବା ମୋଟେ ସମ୍ଭବ ନୁହେଁ ।

ତେଣୁ ଆଜି ଯେତେବେଳେ ହାଇକୋର୍ଟ କହୁଛି ଯେ କୌଣସି ପୁରୁଷ ଓ ସ୍ତ୍ରୀ ଗୋଟିଏ ଘରେ ଯେତେ ଦିନ ଇଚ୍ଛା ରହି ପାରିବେ ସେତେବେଳେ ସେଇ ହାଇକୋର୍ଟ ଏ କଥା ମଧ୍ୟ କହୁଛି ଯେ, ଆମ ସମାଜ ଓ ସଂସ୍କୃତି କିନ୍ତୁ ତାକୁ ସ୍ୱୀକୃତି ଦେଉନାହିଁ । ତେଣୁ ସେଇ ପ୍ରକାର ଘଟଣା ଯେତେବେଳେ ସମାଜରେ ସୃଷ୍ଟି ହୁଏ ସେତେବେଳେ ସମାଜ ତାକୁ କହେ ନୈତିକ ସ୍ଖଳନ । ନୈତିକ ସ୍ଖଳିତ ବ୍ୟକ୍ତିକୁ ସମାଜ ଭଲ ଆଖିରେ ଦେଖେ ନାହିଁ । ବେଳେ ବେଳେ ସମାଜରୁ ତଡ଼ି ଦିଏ । ବାସନ୍ଦ କରେ ।

ଏବେ ସମୟ ବଦଳି ଯାଇଛି । ଗ୍ଲୋବାଲାଇଜେସନ୍ ଫଳରେ ସମଗ୍ର ଗ୍ଲୋବ୍ ବା ପୃଥିବୀ ଏବେ ଛୋଟ ହେବାକୁ ବସିଛି । ଦିନକୁ ଦିନ ଛୋଟ ହେବାରେ ଲାଗିଛି । ପୃଥିବୀର ମଣିଷ ବସତି ବଦଳୁଛି । ଭୌଗଳିକ ସୀମାରେଖା ନ ବଦଳି ମଧ୍ୟ ଗୋଟିଏ

ଜାଗାର ମଣିଷ କାର୍ଯ୍ୟୋପଲକ୍ଷେ ଅନ୍ୟ ଜାଗାକୁ ଯାଉଛି । ସଭ୍ୟତା, ସଂସ୍କୃତି, ଭାଷା ଓ ସାହିତ୍ୟ ଏଥିରେ ପ୍ରଭାବିତ ହେଉଛି । ତା'ର ପ୍ରଭାବ ଫଳରେ ଭାରତରେ ଥିବା ହିନ୍ଦୁ ସଂସ୍କୃତି ପୃଥିବୀର ଅନ୍ୟ ସ୍ଥାନର,ଅନ୍ୟ ଧର୍ମର ସଂସ୍କୃତି ସହିତ ମିଶୁଛି । ଏଆଡୁ ଆମ ଚଳଣି ସେ ଆଡ଼କୁ ଯାଉଛି ଓ ସେଆଡ଼ର ଚଳଣି ଏ ଆଡ଼କୁ ଆସୁଛି । ଏଇ ମିଶାମିଶିର ପ୍ରଭାବରେ ଯେଉଁ ନୂଆ ଚିନ୍ତାଧାରା ସୃଷ୍ଟି ହେଉଛି ସେଥିରେ ଯେ କୌଣସି ପୁରୁଷ ବା ସ୍ତ୍ରୀ ଏକାଠି ମିଶି କୌଣସି ବୈବାହିକ ସମ୍ପର୍କ ବା ବନ୍ଧନ ନ ଥାଇ ମଧ ରହି ପାରୁଛନ୍ତି । ସେମାନଙ୍କ ଭିତରେ କୌଣସି ଲିଖିତ ଚୁକ୍ତିର ଆବଶ୍ୟକତା ମଧ ସେତେବେଳେ ରହୁନାହିଁ । 'ରହୁ ନାହିଁ' ର ଆଉ ଗୋଟିଏ କାରଣ ହେଲା, ସେମାନେ ପରସ୍ପରକୁ ବିଶ୍ୱାସ କରି ପାରୁ ନାହାନ୍ତି । ଯେଉଁ ବିଶ୍ୱାସ ବୈବାହିକ ସମ୍ପର୍କରୁ ସୃଷ୍ଟି ହୁଏ ତାହା ସେମାନଙ୍କ ପାଖରେ ନ ଥାଏ ।

କିନ୍ତୁ ଏସବୁ କେବଳ ସହରରେ ଚଳିବ । ସହରଟା ସବୁବେଳେ ମିଶ୍ର ସଂସ୍କୃତି । ମିଶ୍ର ସଂସ୍କୃତି ସେଠି ପ୍ରାଧାନ୍ୟ ଲାଭ କରିଥାଏ । କେହି କାହାରିକୁ ଚିହ୍ନି ନ ଥାନ୍ତି କି ଜାଣି ନ ଥାନ୍ତି । ସେସବୁ ସ୍ଥାନରେ ଯେ କୌଣସି ପୁରୁଷ ଓ ସ୍ତ୍ରୀ, ସ୍ୱାମୀ ସ୍ତ୍ରୀ ନ ହୋଇ ମଧ ଗୋଟିଏ ଘରେ ସ୍ୱାମୀ ସ୍ତ୍ରୀ ଭଳିଆ ଚଳ ପ୍ରଚଳ ହୋଇ ପାରିବେ । କିନ୍ତୁ ଗାଁରେ ଏକଥା ମୋଟେ ଚଳିବ ନାହିଁ । ସେଠାରେ ଲୋକମାନେ ସେମାନଙ୍କୁ ଧକ୍କାମାରି ବାହାର କରିଦେବେ । ତା'ର କାରଣ, ତା'ର ସଂସ୍କୃତି ଭିନ୍ନ । ସେ ସଂସ୍କୃତିରେ ଅନୈତିକତାର ମୋଟେ ସ୍ଥାନ ନାହିଁ । ପାରିବାରିକ ଜୀବନରେ ନୈତିକତା ସବୁଠାରୁ ଉଚ୍ଚ ସ୍ଥାନ ପାଏ । ସେଠି ଉଭୟ ନାରୀ ଓ ପୁରୁଷର ସ୍ୱାଧୀନତା ସୀମିତ । ତାକୁ ପୁରୁଷ ପ୍ରଧାନ ସମାଜ ବୋଲି ମଧ କହିହେବ ନାହିଁ । ତା'ର କାରଣ, ସେ ସଂସ୍କୃତିରେ ନାରୀ ଓ ପୁରୁଷ ସେମାନଙ୍କ ନିର୍ଦ୍ଦିଷ୍ଟ ସୀମାରେଖା ଭିତରେ ହିଁ ଗତି କରନ୍ତି । ଟିକିଏ ସୀମା ବାହାରକୁ ଗଲେ ସେମାନଙ୍କୁ ସମାଲୋଚନାର ଶରବ୍ୟ ହେବାକୁ ହୁଏ ।

ଏବର ଗ୍ଲୋବାଲାଇଜେସନ୍ ଓ ବଜାର ଅର୍ଥନୀତି ଆମର ଯୁଗ ଯୁଗରୁ ଚଳି ଆସୁଥିବା ସାମାଜିକ ଚଳଣି ଓ ନୀତିଗତ ଆଦର୍ଶକୁ ଆସ୍ତେ ଆସ୍ତେ ଭାଙ୍ଗି ଖଣ୍ଡ ଖଣ୍ଡ କରି ଦେଉଛି । ଏକ ନୂତନ ସମାଜର ସୃଷ୍ଟି କଥା କହୁଛି । ସେ ସମାଜରେ ପୁରୁଷ ଓ ସ୍ତ୍ରୀ, ସ୍ୱାମୀ ଓ ସ୍ତ୍ରୀ ଭାବରେ ରହି ଆସୁଥିବାର ଚଳଣି ସବୁବେଳେ ସ୍ୱୀକାର କରୁନାହିଁ । ଅସ୍ୱୀକୃତ ସ୍ୱାମୀ ଓ ସ୍ତ୍ରୀ ମଧ ସମାଜରେ ସେମାନଙ୍କର ରହିବାର ଅଧିକାର ଅଛି ବୋଲି କହୁଛନ୍ତି । ଆଇନ ସମଗ୍ର ମଣିଷ ପାଇଁ ତିଆରି ହୋଇ ଥିବାରୁ ଏବଂ ମଣିଷକୁ ମଣିଷ ହିସାବରେ ବଞ୍ଚିବାର ଅଧିକାର ଦେଇଥିବାରୁ ଓ ତତ୍‌ସମ୍ପର୍କିତ ସୁବିଧାସୁଯୋଗ ପାଇଁ ପ୍ରତିଶ୍ରୁତିବଦ୍ଧ ହୋଇଥିବାରୁ ଅସ୍ୱୀକୃତ ସ୍ୱାମୀ ସ୍ତ୍ରୀର ସ୍ଥିତି ପ୍ରତି ଆଖି ବୁଜି ଦେଉଛି । ତାକୁ ଖୋଲାଖୋଲି ସ୍ୱୀକୃତି ଦେଉନାହିଁ କି ତା ବିରୋଧରେ ଯୁଦ୍ଧ ଘୋଷଣା ମଧ କରିପାରୁ ନାହିଁ । ଏହା ହିଁ ଆମର ଏବର ସମାଜରେ ଗୋଟାଏ ଅତ୍ୟନ୍ତ ଦୟନୀୟ ଅବସ୍ଥା ।

(ସମୟ-୨୫.୮.୨୦୦୧)

# ରାଉରକେଲାର ସାହିତ୍ୟିକ ପଟଭୂମି ଓ ତାର ପ୍ରେକ୍ଷାପଟ

ଷାଠିଏ ଦଶକରେ ଓଡ଼ିଶାର ସାହିତ୍ୟ ଓ ସାଂସ୍କୃତିକ ଧାରା ଏକ ଭିନ୍ନ ମୋଡ଼ ନେଲା । ଉତ୍ତର ସ୍ୱାଧୀନତାର ସମାଜ ଓ ବିଧି ବ୍ୟବସ୍ଥା ତା ପାଇଁ ଏକ ନୂତନ କ୍ଷେତ୍ର ପ୍ରସ୍ତୁତ କଲା । ନୂତନ ଶିକ୍ଷାୟନ, ଶୈକ୍ଷିକ ଚିନ୍ତା ଓ ଚେତନା ମଧ ତା ପାଇଁ ଅନେକ ପରିମାଣରେ ସାହାଯ୍ୟ କଲା । ଠିକ୍ ଏଇ ପୃଷ୍ଠ ଭୂମିରେ ପଶ୍ଚିମ ଓଡ଼ିଶାରେ ଗଢ଼ି ଉଠିଥିବା ନୂତନ ଶିଳ୍ପ ତୀର୍ଥ ରାଉରକେଲା ଏକ ନୂତନ ଭୂମିକା ଗ୍ରହଣ କଲା ।

ରାଉରକେଲାର ଭୌଗଳିକ ଅବସ୍ଥିତି ସ୍ୱତନ୍ତ୍ର । ଗୋଟିଏ ପଟେ ବିହାର ଅବସ୍ଥିତ ଥିଲେ ମଧ ଛୋଟ ନାଗପୁରର ଆଦିବାସୀ ପ୍ରଧାନ ଅଞ୍ଚଳର ପ୍ରାଧାନ୍ୟ ଏବଂ ଅନ୍ୟପଟେ ଓଡ଼ିଶାର ସମ୍ବଲପୁର ଅଂଚଳ ଯାହା ଅତୀତରେ କୋଶଳ ନାମରେ ପରିଚିତ ଥିଲା ଏବଂ ତାର ସାହିତ୍ୟ ଓ ସଂସ୍କୃତିରେ ଥିଲା ଆଉ ଏକ ସ୍ୱାକ୍ଷର, ପୂର୍ବ ପଟେ ଥିଲା ଓଡ଼ିଶାର ପ୍ରାକ୍ ସ୍ୱାଧୀନତାର ରାଜକୀୟ ଶାସନାଧୀନ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ସମୂହ ।

ଏମିତି ଏକ ବହୁଧା ବିଭକ୍ତ ମାଟି ଓ ମେଖଳା ଭିତରେ ନୂଆ ସହରଟିଏ ଗଢ଼ି ଉଠିଲା- ରାଉରକେଲା । ଏହି ନୂତନ ପରିଗ୍ରହ ଭିତରେ 'ବହୁ'ର ମିଶ୍ରଣରେ ସବୁ କିଛି ବଦଳିଗଲା ରାଉରକେଲାର, ତାର ଭାଷା, ସାହିତ୍ୟ, ସଂସ୍କୃତି ଓ ଅନ୍ୟାନ୍ୟ ।

ସେଇ ପରିବର୍ତ୍ତନ ଭିତରେ, ସେଇ ବଦଳି ଯାଉଥିବା ସମୟର ସୁଅ ଭିତରେ, ତାର ନୂତନ ମହମହ ବାସ୍ନା ଭିତରେ ଯେଉଁ ନୂତନ ସାହିତ୍ୟଟି ସେ ଦିନ ଗଢ଼ି ଉଠିଲା ତାର ନାଁ ଥିଲା 'ଜୀବନ ଧର୍ମୀ ସାହିତ୍ୟ' । ସାମାଜିକ ବାସ୍ତବବାଦରେ ବିଶ୍ୱାସ ରଖୁଥିବା କେତେଜଣ ଯୁବକ ଯେଉଁମାନେ ସେ ଦିନ ରାଉରକେଲାର ମାଟିରେ ପାଦ ଥାପି ଥାଆନ୍ତି ପ୍ରଥମ କରି, ପ୍ରଥମ କରି ତାର ପାଣି ଓ ପବନକୁ ଆପଣେଇ ନେବାକୁ ଚେଷ୍ଟା କରୁ ଥାଆନ୍ତି, ପ୍ରଥମ କରି ଦେଖୁ ଥାଆନ୍ତି ଜୀବନ ଜିଜ୍ଞାସାର କଞ୍ଚାପତ୍ର ଓ ତାର ଶିରାକୁ, ପ୍ରଥମ କରି ଦେଖୁ ଥାଆନ୍ତି ଶିଳ୍ପ ଶ୍ରମିକର ଯନ୍ତ୍ରଣା, ସେମାନେ ଦି'ଜଣ ପ୍ରଥିତ ଯଶା ସାହିତ୍ୟିକ, ଲକ୍ଷ୍ମୀଧର ନାୟକ ଓ ରଜନୀକାନ୍ତ ଦାସଙ୍କ ନେତୃତ୍ୱରେ, ମାଟି ଉପରେ ଚକାମାଡ଼ି ବସି ପଡ଼ିଲେ ସେ ଯନ୍ତ୍ରଣା, ସେ ଜୀବନ, ସେ ଜୀବନର ମୂଲ୍ୟବୋଧକୁ ନୂତନ ତୁଳୀ, ନୂତନ ରଙ୍ଗ ଦେଇ ଆଙ୍କିବାକୁ । ଆଉ ଏକ ଇତିହାସ ଲେଖିବାକୁ ।

ଜନ୍ମ ନେଲା 'କଲଚରାଲ୍ ଏକାଡ଼େମୀ' । ଚିମିନୀର ଧୂଆଁର ବଳୟ କାଟି ଯୋଉ ନୂତନ ଆଲୋକର ରେଖା ବିଚ୍ଛୁରିତ ହେଲା ତାକୁ ଦେଖି ସମସ୍ତେ ବିସ୍ମିତ ହେଲେ ।

ବିସ୍ମିତ ହେଲେ ଓଡ଼ିଶାର ମାଟି ମଟାଳ । ହୁଏତ ସେମାନେ ଆଶା କରି ନ ଥିଲେ ଯେ, ରାଉରକେଲା ପରି ଏକ ଅଗମ୍ୟ ଉପାନ୍ତ ଅଞ୍ଚଳରେ ନୂଆ ଶ୍ରମିକ ବସ୍ତିରୁ ଜନ୍ମ ନେବ ଚିରାୟତ ସାହିତ୍ୟର ନୂତନ ନିର୍ଯ୍ୟାସ ।

ଆରମ୍ଭ ହେଲା 'ଶିଳ୍ପାଞ୍ଚଳ ସାହିତ୍ୟ ସମ୍ମିଳନୀ' ଷାଠିଏ ଦଶକର ଦ୍ୱିତୀୟାର୍ଦ୍ଧରେ । କବି କୂଳର ସୁଅ ଛୁଟିଲା ସାରା ଓଡ଼ିଶାରୁ । ସେତେବେଳେ ଆନ୍ତର୍ଜାତିକ ଖ୍ୟାତି ଲଭିଥିବା ତାଙ୍ଜୀ ଶିବଶଙ୍କର ପିଲାଇ ଏବଂ ଡକ୍ଟର ନାମୱର ସିଂ ମଧ୍ୟ ଆସିଲେ । ତାଙ୍କ ସହିତ ଆସିଲେ ଓଡ଼ିଶାକୁ ବିଶ୍ୱ ଦରବାରରେ ସମ୍ମାନିତ କରେଇ ଥିବା ଜଣେ ନୃତ୍ୟ ପଟ୍ଟିୟସୀ ସୋନାଲ ମାନସିଂ ।

ରାଉରକେଲାକୁ ସେମାନେ କହିଲେ 'ସାହିତ୍ୟର ମୁକ୍ତି ମଣ୍ଡପ' । ଖୋଲିଗଲା ସାହିତ୍ୟର ନୂତନ ଇସ୍ତାହାର । ଫର୍ଦ୍ଦ ପରେ ଫର୍ଦ୍ଦ ସାହିତ୍ୟ ସହିତ ଶିଳ୍ପର ସଂପର୍କ, ସାହିତ୍ୟ ସହିତ ଜୀବନର ସଂପର୍କ । ୧୯୬୨ରୁ ଏହି ସମ୍ପର୍କର ସେତୁ ହୋଇ ଜନ୍ମ ହୋଇଥିବା କଲଚରାଲ୍ ଏକାଡ଼େମୀର ମୁଖପତ୍ର 'ନବପତ୍ର' ସେତିକି ବେଳେ ପାଇଥିଲା ଆଉ ଏକ ସ୍ୱୀକୃତି । ରାଉରକେଲା ଶୁଣିଲା ଏକ ଅସମ୍ଭବ ସଫଳତାର ସ୍ୱର । ପ୍ରଗତିଶୀଳ ସାହିତ୍ୟର ଜନ୍ମ ।

ପରବର୍ତ୍ତୀ କାଳରେ ଅବଶ୍ୟ କଲଚରାଲ ଏକାଡ଼େମୀ ସୃଷ୍ଟି କରିଛି ଲୋକ ନାଟକ ମହୋତ୍ସବ- ଜୀବନ ଧର୍ମୀ ନାଟକର ରାଜ୍ୟସ୍ତରୀୟ ପ୍ରତିଯୋଗିତା । ଓଡ଼ିଶାର ପ୍ରଥମ ନାଟକ ପ୍ରତିଯୋଗିତା ଯାହା ଗତ କୋଡ଼ିଏ ବର୍ଷ ହେଲା ନୀରବଚ୍ଛିନ୍ନ ଭାବେ ଅନୁଷ୍ଠିତ ହୋଇ ଆସୁଛି ଏବଂ ତା ସହିତ ଆରମ୍ଭ ହୋଇଛି ଚାରୁ କଳାର ଶିକ୍ଷା ସ୍କୁଲ ଅଫ ଫାଇନ୍ ଆର୍ଟ । ମାତ୍ର କୋଡ଼ିଏ ବର୍ଷର ଜୀବନ ଏମାନଙ୍କର । ବହୁ ଘାତ, ପ୍ରତିଘାତ, ପରୀକ୍ଷା ନିରୀକ୍ଷା ଭିତର ଦେଇ ଏମାନଙ୍କର ସାବଲୀଳ ଗତିକୁ ମାପିବାର, ତଉଲିବାର ବେଳ ଏବେ ଆସିନାହିଁ ।

'ସଂଘମ' ଆଉ ଏକ ସାହିତ୍ୟ ଅନୁଷ୍ଠାନ । କ୍ଷୁଦ୍ର କିନ୍ତୁ ମହାନ ଥିଲା ତାର ଲକ୍ଷ୍ୟ ଓ ଆଦର୍ଶ । ପ୍ରଚଣ୍ଡ ଥିଲା ତାର ଗତି ଓ ବେଗ । ଦୁର୍ବାର ଥିଲା ତାର ମଣିଷ ମନର ଚିନ୍ତା ଉଦ୍ରେକ କାରୀ ଶକ୍ତି । ମାତ୍ର କେଇଟା ବର୍ଷ ଭିତରେ ସେ ଜବରଦସ୍ତ ଦଖଲ କରି ବସିଲା ତାର ସ୍ଥାନକୁ । ସବୁ ଚକ୍ଷୁ ବିସ୍ଫାରିତ ହୋଇଗଲା ଏ ଉଦ୍‌ବେଳନ ଦେଖି । ଚାଲେଞ୍ଜ କଲା 'ଆର୍ଟ ଫର ଆର୍ଟ ସେକ୍‌ର' ସୃଷ୍ଟି ଓ ସର୍ଜନାକୁ । ଗର୍କୀ ଜନ୍ମ ଶତବାର୍ଷିକୀ ମାଧ୍ୟମରେ ଘୋଷଣା କଲା 'ଗର୍କୀ ହିଁ ଶ୍ରେଷ୍ଠ ଓ ଗର୍କୀ ହିଁ ଶେଷ' । ମୂଲ୍ୟବୋଧ ଭିତ୍ତିକ ସାହିତ୍ୟ ତାର ଲକ୍ଷ ଓ ଉଦ୍ଦେଶ୍ୟ ।

ରାଉରକେଲାର ସାହିତ୍ୟାକାଶରେ ଫୁଟି ଉଠିଲା ଆଉ ଏକ ଝକ୍‌ମକ୍ କରୁଥିବା ତାରକା । ଫାଟି ପଡ଼ିଲା ରାଉରକେଲା ଗର୍ବ ଓ ଗୌରବରେ ।

ପରେ ପରେ ଜନ୍ମ ନେଲା 'ଇସ୍ପାତ ସାହିତ୍ୟ ସଂସଦ' । ରାଉରକେଲାର ମହାନ ପରମ୍ପରାକୁ ପାଥେୟ କରି ସୃଷ୍ଟି ହେଲା ଅସଂଖ୍ୟ ଗଳ୍ପ, କବିତା, ପ୍ରବନ୍ଧ ଓ ଆଲୋଚନା । ଯୋଉ ସାପ୍ତାହିକ ଆସରରୁ ହିଁ ଦିନେ ଜନ୍ମ ଲାଭ କରିଥିଲା କଲଚରାଲ ଏକାଡ଼େମୀ ସେ ଆସର ସେତେବେଳକୁ ମଉଳି ଆସୁଥିଲା । ସେ ସ୍ଥାନ ଦଖଲ କଲା ସଂଘମ ଓ ଇସ୍ପାତ ସାହିତ୍ୟ ସଂସଦ । ଅସମ୍ଭବ ଲୋକପ୍ରିୟତା ହାସଲ କଲେ ଏ ସାହିତ୍ୟ ବୈଠକମାନେ । ଗୋଟାଏ କି ଯୋଡ଼ାଏ ବୈଠକରେ ଯୋଗଦେଲା ପରେ ବେଶ୍ ସ୍ପଷ୍ଟ ବାରି ହୋଇ ଯାଉଥାଏ ରାଉରକେଲା ଓ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳର ସାହିତ୍ୟର 'ଟ୍ରେଣ୍ଡ' ଭିତରେ ଥିବା ପାର୍ଥକ୍ୟ । ଆଉ ଏକ ଯୁଗର ପ୍ରବର୍ତ୍ତନ ହେଲା । ନୂଆ ନୂଆ କବି ଓ ଲେଖକ ମାନଙ୍କୁ ଏଇ ନୂତନ ସାହିତ୍ୟର ସ୍ୱର ସହିତ ପରିଚିତ କରେଇବାରେ ଏକ ବୈପ୍ଳବାତ୍ମକ ଭୂମିକା ଗ୍ରହଣ କଲା ଇସ୍ପାତ ସାହିତ୍ୟ ସଂସଦ । ଏବେ ବି କର୍ମ ମୁଖର, ସଦା ଚଂଚଳ- ଠିକ୍ ବ୍ରାହ୍ମଣୀର ପ୍ରବହମାନ ସ୍ରୋତ ପରି । ଆକାଶର ଧାବମାନ ସୂର୍ଯ୍ୟ ଓ ଚନ୍ଦ୍ରପରି ।

ପାଠକଙ୍କ ଭିତରେ ଏକ ସଚେତନତା ସୃଷ୍ଟି କରିବାରେ, ମୂଲ୍ୟବୋଧ ଭିତ୍ତିକ ସାହିତ୍ୟ ପ୍ରତି ଶ୍ରଦ୍ଧା ସୃଷ୍ଟି କରିବାରେ ଏ ଅନୁଷ୍ଠାନର ଭୂମିକା ଅନନ୍ୟ । ବହୁ ଆଲୋଚନାଚକ୍ର, ସ୍ୱତନ୍ତ୍ର ବୈଠକର ଆୟୋଜନ କରି ସାହିତ୍ୟ ଗୋଷ୍ଠି ଆଉ ଏକ ମାଇଲ ଖୁଣ୍ଟ ସୃଷ୍ଟି କରି ପାରିଛି ।

ତା ପରେ ଆସିଛି 'ସ୍ୱସ୍ତି' । କୋଉ ବେଦର ମହାନ ମନ୍ତ୍ରୋଚ୍ଚାରଣ ପରି ସେ ଘୋଷଣା କଲା ସାହିତ୍ୟ ଏକ ନୂତନ ଜୀବନର ଖସଡ଼ା । ଏକ ନୂତନ ଜନ୍ମ ଓ ଯନ୍ତ୍ରଣାର ମନ୍ତ୍ର ପାଠ । ଏକ ନୂତନ ସ୍ୱର ଓ ସ୍ୱାକ୍ଷରର ଶାଶ୍ୱତ ସଂଗୀତ । ତାର ଆଦି ନାହିଁ କି ଅନ୍ତ ନାହିଁ । ବେଦର ବାଣୀ ପରି ତାହା ଯୁଗରୁ ଯୁଗକୁ, ଆକାଶରୁ ମହାକାଶକୁ, ପାତାଳରୁ ସ୍ୱର୍ଗକୁ, ଅନ୍ଧାରରୁ ଆଲୋକକୁ ଏବଂ ସର୍ବୋପରି ହୃଦୟରୁ ହୃଦୟକୁ ସ୍ୱତଃ ସଂଚରୀ ଯାଏ ଅବାରିତ ଭାବରେ ଏକ ଉତ୍ତାଳ ତରଙ୍ଗ ମାଧ୍ୟମରେ, ଯାହାର ସ୍ପର୍ଶ ନାହିଁ ଅନୁଭବ ଅଛି, ଯାହାର ମୃତ୍ୟୁ ନାହିଁ ଜୀବନ ଅଛି ଏବଂ ଯାହାର ସ୍ଥିତି ନାହିଁ ବ୍ୟାପ୍ତି ଅଛି ।

ସ୍ୱସ୍ତି କଲା ଆଉ ଏକ ଯୁଗର ଉଦ୍‌ଘୋଷଣା । ପରିବ୍ୟାପ୍ତ ପୃଥିବୀର ସବୁ ଶବ୍ଦ ମାନଙ୍କୁ ଅତି କୃଶଳୀ କଳାର ହାତରେ ଗୁନ୍ଥି ସେ ସୃଷ୍ଟି କଲା କାବ୍ୟ ଓ କବିତାର ଐନ୍ଦ୍ରଜାଲିକ ଇଙ୍ଗିତ, ଭାବ ଓ ଅନୁଭବ । ମାତ୍ର କେଇଟା ବର୍ଷ ଭିତରେ ଅନେକ ଗୁଡ଼ିଏ ବିଶେଷ ସାହିତ୍ୟାନୁଷ୍ଠାନ ସହିତ ସାହିତ୍ୟର ବିଚାର ମଞ୍ଚ ପ୍ରଭୃତି ଅନେକ ଗୁଡ଼ିଏ ଭିନ୍ନ ସ୍ୱାଦର ରଙ୍ଗ ଓ ତରଙ୍ଗ ସୃଷ୍ଟି କରି ସ୍ୱସ୍ତି ଓଡ଼ିଶାର ସମଗ୍ର ତଥା ସଫଳ ପାଢ଼ି ସୃଷ୍ଟି କରି ଥିବାର ଦାବି ରଖେ । ମାତ୍ର କେଇଟା ବର୍ଷ ଭିତରେ ଅନେକ ଗୁଡ଼ିଏ ପୁସ୍ତକ ଓ ପତ୍ରିକା ପ୍ରକାଶ କରି ରାଉରକେଲାର ଯୁବ ପୀଢ଼ିକୁ ସ୍ୱୀକୃତି ଓ ସମ୍ମାନ ଦେଇ ପ୍ରାଦେଶିକ ସ୍ତରରେ

ସେମାନଙ୍କୁ ପରିଚୟର ବଳୟ ଭିତରକୁ ଆଣି ପାରିଛି । ତାହା ହିଁ ସ୍ୱସ୍ତିର ବିଶେଷତ୍ୱ ।

ରାଉରକେଲାରେ ଆହୁରି ଅନେକ ସାହିତ୍ୟାନୁଷ୍ଠାନ ଅଛି । ସେ ସମସ୍ତେ ନିଜ ନିଜର ଦାନ ପାଇଁ ଏକ ମହତ୍ ସ୍ଥାନର ଅଧିକାରୀ । କିନ୍ତୁ ସେ ସମସ୍ତଙ୍କୁ ଏ ସୀମିତ ସମୟ ଭିତରେ ଆବଦ୍ଧ କରି ହେଉ ନ ଥିବାରୁ ମୁଁ ଦୁଃଖିତ ।

କିନ୍ତୁ ସାହିତ୍ୟର ମଣିମୟ ମନ୍ଦିର କଥା ଆଲୋଚନା କଲା ବେଳେ ତାର ମୁଖଶାଳା କଥା ଭୁଲି ହୁଏନା । ଏଡ଼େଇ ଦେଇ ହୁଏନା ତାର ଗୁରୁତ୍ୱପୂର୍ଣ୍ଣ ଭୂମିକାକୁ । ସାହିତ୍ୟକୁ ମନ୍ଦିରର ରୂପ ଦେଲେ ଗ୍ରନ୍ଥାଗାର ଗୁଡ଼ିକ ହେଲା ତାର ମୁଖଶାଳା । ମନ୍ଦିର ଓ ମୁଖଶାଳା ମଧ୍ୟରେ ଅବସ୍ଥିତ ପବିତ୍ର 'ବାଇଶ ପାହାଚ' ତାର ପାଠକ ମାନେ । ସେମାନଙ୍କୁ ବାଦ ଦେଲେ ସାହିତ୍ୟାଲୋଚନା ପୂର୍ଣ୍ଣାଙ୍ଗ ହୁଏନା ।

ରାଉରକେଲାର ଆଦର୍ଶ ପାଠାଗାର, ପ୍ରଗତି ଉତ୍କଳ ସଂଘ, କୋଣାର୍କ ସାଂସ୍କୃତିକ ପରିଷଦ, ବାସନ୍ତୀ ପାଠାଗାର ଏବଂ 'ସେଲ' ପରିଚାଳିତ ସେଣ୍ଟ୍ରାଲ ଲାଇବ୍ରେରୀ ଯାହା ଏବେ ଉତ୍କଳମଣି ଗୋପବନ୍ଧୁ ଲାଇବ୍ରେରୀ ନାମରେ ପରିଚିତ ସେ ସବୁର ଭୂମିକାକୁ ଏହି ଦୃଷ୍ଟିରୁ ପୁରୋଭାଗରେ ରଖିବା ଉଚିତ ହେବ ।

ଯେଉଁ ଦେଶର ଲାଇବ୍ରେରୀ ସଂଖ୍ୟା ଯେତେବେଶୀ ତାର ସାହିତ୍ୟ ସେତିକି ସମୃଦ୍ଧ । ସାହିତ୍ୟ ସହିତ ପୁସ୍ତକାଗାରର ନିବିଡ଼ ସମ୍ପର୍କ ହିଁ ସେ ଜାତିର ସାହିତ୍ୟକୁ ଉନ୍ନତରୁ ଉନ୍ନତତର କରାଏ । ଏମାନଙ୍କ ଛଡ଼ା ରାଉରକେଲାର ପ୍ରତ୍ୟେକ ସ୍କୁଲ ଓ କଲେଜ ମାନଙ୍କରେ ପୁସ୍ତକାଗାର ମାନ ଅଛି । ତା ସତ୍ତ୍ୱେ ଏସବୁ ଯଥେଷ୍ଟ ନୁହେଁ ବୋଲି ଅଭିଯୋଗ ହେଉଛି । ଓଡ଼ିଶା ସରକାରଙ୍କ ଭୂମିକା ଏ ଦିଗରେ ସଂପୂର୍ଣ୍ଣ ନୈରାଶ୍ୟ ଜନକ । ଏତେ ବଡ଼ ବିଶାଳ ରାଜ୍ୟରେ ବର୍ଷକୁ ପଚାଶ ଲକ୍ଷ ଟଙ୍କାର ବହି ମଧ କିଣା ଯାଇ ପାରୁନି ।

ଗୋଟିଏ ଜାତିର ସାହିତ୍ୟ ଓ ସାଂସ୍କୃତିକ ମାନ ତାର ଲାଇବ୍ରେରୀରୁ ନିର୍ଣ୍ଣିତ ହେଉଥିଲା ବେଳେ ଆମେ ଏ ଯାଏଁ ତାର ନିମ୍ନତମ ସୀମାରେଖା ଉପରକୁ ଉଠି ପାରିନୁଁ । ଆମେ ଆଜି ଏକବିଂଶ ଶତାବ୍ଦୀ ଆଡ଼କୁ ମୁହେଁଇ ଥିଲାବେଳେ ଏ କଥାର ପୁନରାଲୋଚନାର ଆବଶ୍ୟକତା ଜରୁରୀ ହୋଇ ପଡ଼ିଛି । ■

(ସଂବାଦ - ୨୭.୫.୯୭)

# ସାନ୍ଧୁ ଓ ସତ୍ୟ

ପଞ୍ଜାବର ଜଣେ ବରିଷ୍ଠ ପୁଲିସ ଅଫିସର ଅଜିତ ସିଂ ସାନ୍ଧୁ ଏଇ କିଛିଦିନ ତଳେ ଚଳନ୍ତା ରେଳଗାଡ଼ି ଆଗକୁ ଡ଼େଇଁ ପଡ଼ି ଆତ୍ମହତ୍ୟା କରିଛନ୍ତି । ଜଣେ ବରିଷ୍ଠ ଆଇ.ପି.ଏସ୍. ଅଫିସର ଆତ୍ମହତ୍ୟା କରିବା ଘଟଣା ପଞ୍ଜାବରେ ଏଇ ପ୍ରଥମ । ଏହା ଏକ ଦୁଃଖଦ ଘଟଣା ନିଶ୍ଚୟ । କେତେ ବା ତାଙ୍କର ବୟସ ହୋଇଥିବ ? ଏଇ ଚାଳିଶ ଭିତରେ । ଯୋଉ ବୟସରେ ଜଣକ ଠାରେ ଥାଏ ଅମାପ ପ୍ରତିଜ୍ଞା ଓ ପ୍ରଚୁର ପ୍ରତିଶ୍ରୁତି । ଯୋଉ ବୟସରେ ସ୍ୱପ୍ନମାନେ ଜଣକୁ ଆଖିପାଉ ନଥିବା ରାସ୍ତାରେ ଚାଲିବାର ଶକ୍ତି ଯୋଗାନ୍ତି ।

ସାନ୍ଧୁ ଥିଲେ ଜଣେ ସାହସୀ ଅଫିସର । ପଞ୍ଜାବ ଯେତେବେଳେ ସଂତ୍ରାସବାଦୀଙ୍କ କବଳରେ ପଡ଼ି ଛଟପଟ ହେଉଥିଲା, ଅଣନିଶ୍ୱାସୀ ହୋଇ ଉଠିଥିଲା, ସେଥିରୁ ମୁକୁଳିବାର ରାସ୍ତା ଖୋଜି ପାଉ ନ ଥିଲା ସେତେବେଳେ ସାନ୍ଧୁଙ୍କ ନେତୃତ୍ୱରେ କେତେକ ପୁଲିସ ଅଫିସର ନିଜ ଜୀବନକୁ ବିପନ୍ନ କରି ସେ ବିଷମ ପରିସ୍ଥିତିର ମୁକାବିଲା କରିଥିଲେ । ଏହା ଦେଶ ପକ୍ଷେ ଏବଂ ଜାତି ପକ୍ଷେ ଗୋଟାଏ ଗୌରବର କଥା । ଯୁଗେ ଯୁଗେ ଦେଶ ସେ ପ୍ରକାର ବୀରତ୍ୱକୁ ସ୍ୱୀକୃତି ଦେଇଚି । ତାକୁ ଉଚ୍ଚତର ସ୍ଥାନ ଦେଇଚି । ଦେଶର ଘୋର ସଂକଟ ବେଳେ ଯୋଉ ବୀର ସନ୍ତାନମାନେ ଅସୀମ ସାହସ ପ୍ରଦର୍ଶନ କରିଛନ୍ତି ସେମାନେ ଇତିହାସରେ ସ୍ୱତନ୍ତ୍ର ସ୍ଥାନ ଅବଶ୍ୟ ଦଖଲ କରିଛନ୍ତି । ଏହା ହିଁ ଜାତିର ଇତିହାସ ।

କିନ୍ତୁ ସେ ଆତ୍ମହତ୍ୟା କଲେ କାହିଁକି ? ଏପରି ଜଣେ ଅଦମନୀୟ ସାହସୀ ଅଫିସରଙ୍କ ଜୀବନରେ ଏପରି କଅଣ ଘଟିଲା ଯେ ସେ ଶେଷରେ ଜୀବନକୁ ପଛକରି ସଂସାରରୁ ଲୁଚି ପଳେଇଲେ ? ଏମିତି କେତେଗୁଡ଼ିଏ ପ୍ରଶ୍ନ ଏବେ ମୁଣ୍ଡ ଟେକିବା ସ୍ୱଭାବିକ । ଜଣେ ସମାଜ ସଚେତନ ବ୍ୟକ୍ତି ଏ ସବୁ ପ୍ରଶ୍ନର କାରଣ ଓ ସମାଧାନ କଥା ଏବେ ଚିନ୍ତା କରିବାର କଥା । ଜଣେ ବୀର କେବେ ଆତ୍ମହତ୍ୟା କରି ପାରେନା । ତେବେ ଏପରି କେଉଁ କାରଣ ମାନ ଶେଷରେ ସାନ୍ଧୁଙ୍କୁ ଏକ ଅନୁଚିତ ପଥକୁ ଟାଣି ନେଇ ଗଲା ?

ସାନ୍ଧୁଙ୍କ ମାନସିକ ଅତ୍ୟାଚାରର ସୀମା ନ ଥିଲା । ତାଙ୍କ ନାଁରେ କୁଆଡ଼େ ଚାଳିଶଟି ମକଦ୍ଦମା ରୁଜୁ ହୋଇ ଥିଲା । ଏ ସବୁ ମକଦ୍ଦମା ସେଇ ନରହତ୍ୟା, ଶାରୀରିକ ଅତ୍ୟାଚାର ଓ ମାନବିକ ଅଧିକାର ଉଲ୍ଲଂଘନ ସଂକ୍ରାନ୍ତରେ । ସଂନ୍ତ୍ରାସବାଦୀଙ୍କୁ ଦମନ

କରିବା ଅବସରରେ ସେ ଯାହା ସବୁ କରିଛନ୍ତି, ପରବର୍ତ୍ତୀ କାଳରେ ସେ ସବୁ ଆଇନ ଆଇନ ଆଖିରେ ପ୍ରଶ୍ନବାଚୀ ହୋଇ ଛିଡ଼ା ହେଉଛି । ଆଇନ୍ ତାକୁ ଭିନ୍ନ ଆଖିରେ ଦେଖୁଛି । ଗୋଟାଏ ଗଣତାନ୍ତ୍ରିକ ରାଷ୍ଟ୍ରରେ ଆଇନର ଭୂମିକା ସ୍ୱତନ୍ତ୍ର । ତାର ଏଇ ସ୍ୱାତନ୍ତ୍ର୍ୟ ହିଁ ଆମ ସଂସଦୀୟ ଗଣତନ୍ତ୍ରକୁ ସୁଦୃଢ଼ କରିଛି ।

ଚାଳିଶଟି ମକଦ୍ଦମା ସେମିତି କିଛି ବଡ଼କଥା ନୁହେଁ । ଏ ଦେଶରେ ୫୫ଟି ନରହତ୍ୟା, ଡ଼କାୟତି, ଗୃହଦାହ ପ୍ରଭୃତି ଘୃଣ୍ୟ ଅପରାଧର ଅପରାଧୀ ଆଜି ବେକରେ ଫୁଲମାଳ ପକେଇ ବୁଲୁଛି । ଦେଶର ଭାଗ୍ୟ ନିୟନ୍ତ୍ରଣରେ ଭାଗ ନେଇ ନେତା ହୋଇ ଯାଉଛି । ସେ ଆଜି ପୂଜ୍ୟ । ବରେଣ୍ୟ । ଆମ ଦେଶରେ କୋଟି କୋଟି ଅବୈଧ ଟଙ୍କାର ବିଛଣାରେ ଶୋଇ ମଧ୍ୟ ଜଣେ ନିଜକୁ ଦେଶସେବୀ ଭାବେ ଜାହିର କରୁଛି । ଗୋଟାଏ ଦେଶର ପ୍ରଧାନମନ୍ତ୍ରୀ ଠକାମି, ଜାଲିଆତି, ଲାଞ୍ଚଗ୍ରହଣ ଓ ପ୍ରଦାନ ପ୍ରଭୃତି ଜଘନ୍ୟ ଅପରାଧରେ ଜଡ଼ିତ ଥାଇ ମଧ୍ୟ ପବିତ୍ର ସଂସଦୀୟ ଆସନରେ ବସି ପୂଜା ପାଉଛି । ଆମ ଦେଶର ଆଇନ କହେ ଖାଲି କୋର୍ଟରେ କେଶ ଦାଏର ହେଲେ ଜଣେ ଅପରାଧୀ ହୋଇ ଯାଏନା, କୋର୍ଟ ତାକୁ ଦୋଷୀ ସାବ୍ୟସ୍ତ କଲେ ସେ ଅପରାଧୀ ହୁଏ । ସେତକ ମଧ୍ୟ ସହଜ କଥା ନୁହେଁ, ତା' ଯଦି ହୋଇ ଥାଆନ୍ତା ତେବେ ସାନ୍ଧୁଙ୍କ ଗୁରୁ ଗିଲ୍ ସାହେବ ଗୋଟାଏ କୋର୍ଟରେ ଦୋଷୀ ସାବ୍ୟସ୍ତ ହୋଇ ମଧ୍ୟ ଆଜି ଆରାମରେ ବୁଲୁ ନ ଥାଆନ୍ତେ ।

ଶିଖ୍ ଜାତି ଗୋଟାଏ ଲଢୁଆ ଜାତି । ଖାଲି ଭାରତରେ ନୁହେଁ ସମଗ୍ର ପୃଥିବୀରେ ତାର ବୀରତ୍ୱର ପଟାନ୍ତର ନାହିଁ । ଯୋଉ ପଞ୍ଜାବୀ ଆଇ.ପି.ଏସ୍. ଅଫିସର ସାନ୍ଧୁ ବୀର ପରି ସଂତ୍ରାସବାଦୀଙ୍କ ସହିତ ଲଢ଼େଇ କରି ପରେ ପରିବର୍ତ୍ତିତ ପରିସ୍ଥିତିର ମୁକାବିଲା କରି ନ ପାରି ଆତ୍ମହତ୍ୟା କଲେ ସେଇ ପଞ୍ଜାବର ଆଉ ଜଣେ ଆଇ.ପି.ଏସ୍. ଅଫିସର ସିମ୍ରନ ଜିତ୍ ସିଂ ମାନ ଆଇ.ପି.ଏସ୍. ପଦବୀକୁ ଫୋପାଡ଼ି ଦେଇ ସଂତ୍ରାସବାଦୀଙ୍କୁ ସମର୍ଥନ ଦେବାକୁ ଚାକିରିରୁ ବାହାରି ଆସିଲେ । ତାଙ୍କ ଉପରେ ମଧ୍ୟ କମ ଅତ୍ୟାଚାର କରା ଯାଇନି । ନେପାଳ ସୀମାରୁ ତାଙ୍କୁ ଯେତେବେଳେ ସେଇ ପଞ୍ଜାବ ପୁଲିସ ଗିରଫ କଲା ତାଙ୍କଠୁ ତଥ୍ୟ ଆଦାୟ କରିବା ପାଇଁ ତାଙ୍କ ଉପରେ ମଧ୍ୟ ଅତ୍ୟାଚାର କରା ଯାଇ ଥିଲା । ତାଙ୍କ ମୁଣ୍ଡ ଉପରେ ଏବେ ମଧ୍ୟ ୩୦/୪୦ କେଶ ଖଣ୍ଡାଧାର ପରି ଝୁଲୁଛି । ସେ କିନ୍ତୁ ଆତ୍ମହତ୍ୟା କରିବା ପାଇଁ ଚାକିରି ଛାଡ଼ି ନ ଥିଲେ କି ପୁଲିସ ଅତ୍ୟାଚାରରୁ ମୁକ୍ତି ପାଇବା ପାଇଁ ପଳାୟନର ପନ୍ଥା ଖୋଜି ନ ଥିଲେ । ମାନ୍‌ଙ୍କ ସିଦ୍ଧାନ୍ତ ଓ ବିଚାର ତାଙ୍କୁ ସେ ରାସ୍ତାରେ ନେଇଗଲା । ଆମେ ଏଠି କେବଳ ଦୁଇ ଆଇ.ପି.ଏସ୍. ଅଫିସରଙ୍କ ଭିତରେ ଥିବା ମାନସିକତାର ପାର୍ଥକ୍ୟ କଥା ଆଲୋଚନା କରୁଛୁଁ ।

ସାନ୍ଧୁଙ୍କ କଥା ଥିଲା ନିଆରା । ସାନ୍ଧୁଙ୍କୁ ତାଙ୍କର କେତେକ ଜୁନିଅର ଅଫିସରଙ୍କ ସହିତ ମାନବିକ ଅଧିକାର ଉଲ୍ଲଂଘନ ଏବଂ ନରହତ୍ୟା କେଶରେ ଗିରଫ କରି ଯେଉଁ ଜେଲରେ ରଖାଗଲା ସେହି ଜେଲରେ ସାନ୍ଧୁଙ୍କ ଦ୍ୱାରା ପୂର୍ବରୁ ଗିରଫ ହୋଇଥିବା ଏବଂ

ତାଙ୍କ ଦ୍ୱାରା ବହୁ ଅତ୍ୟାଚାରର ଶିକାର ହୋଇଥିବା କେତେକ ସନ୍ତ୍ରାସବାଦୀ ମଧ୍ୟ ଥିଲେ । ସାନ୍ଧୁଙ୍କ ଉପରେ ପ୍ରଥମ ଅତ୍ୟାଚାର ଆରମ୍ଭ ହେଲା ସେଇଠି । ସନ୍ତ୍ରାସବାଦୀମାନେ ପ୍ରତିଶୋଧ ନେବା ପାଇଁ ସାନ୍ଧୁଙ୍କ ଉପରେ ନଗ୍ନ ଆକ୍ରମଣ ଆରମ୍ଭ କରିଦେଲେ । ଜେଲ ଭିତରେ ଭୟଙ୍କର ପରିସ୍ଥିତି ସୃଷ୍ଟି ହେଲା । ପରବର୍ତ୍ତୀ କାଳରେ ଅବଶ୍ୟ ସାନ୍ଧୁ ଓ ତାଙ୍କ ପରି ପୁଲିସ ଅପରାଧୀମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ଜେଲର ବ୍ୟବସ୍ଥା କରାଗଲା ।

ରାଜନୀତିର ପଟ୍ଟ ପରିବର୍ତ୍ତନ ହେଲେ ଆଲୋକ ଅନ୍ଧାର ହୋଇଯାଏ ଏବଂ ଅନ୍ଧାର ଆଲୋକରେ ପରିଣତ ହୁଏ । ସାଧୁଟିଏ ଅସାଧୁ ବନିଯାଏ ଏବଂ ରାତି ପାହିଲା ବେଳକୁ ଅସାଧୁଟିଏ ତୁଳସୀ ମାଳ ପକେଇ ସାଧୁ ପାଲଟି ଯାଏ, ପ୍ରବଳ ପରାକ୍ରମୀ ଏବଂ ଦକ୍ଷ ଅଫିସରଟିଏ ମନ୍ତ୍ରିମଣ୍ଡଳ ବଦଳି ଗଲେ ନିଜର ସବୁ ଦକ୍ଷତାକୁ ପେଡ଼ିରେ ରଖି ମୂଷା ପରି ଲୁଚି ଲୁଚି ବୁଲେ । ଇନ୍ଦିରା ଗାନ୍ଧୀଙ୍କ ଏମର୍ଜେନସୀ ସମୟରେ ଯୋଉ ପୁଲିସ ଅଫିସରମାନେ ଅସୀମ ଦକ୍ଷତାର ପରିଚୟ ଦେଇଥିଲେ ଏମର୍ଜେନସୀ ପରେ ସେଇ ଅଫିସରମାନେ ତାଙ୍କର ବନ୍ଧୁମାନଙ୍କ ଦ୍ୱାରା ବନ୍ଧା ହୋଇ କମ୍ ଘୋଷଡ଼ା ଖାଇ ନ ଥିଲେ । ଏହା ହିଁ ସ୍ୱାଧୀନୋତ୍ତର ଭାରତରେ ପୁଲିସର ଇତିହାସ ।

କିନ୍ତୁ ଗୋଟିଏ କଥା ବୁଝି ହେଲା ନାହିଁ । ଯୋଉ ଜେଲରେ ସନ୍ତ୍ରାସବାଦୀମାନେ ଥିଲେ ସେଇ ଜେଲକୁ ସନ୍ତ୍ରାସବାଦୀମାନଙ୍କୁ ଦମନ କରିଥିବା ପୁଲିସ ଅଫିସରମାନଙ୍କୁ ପଠାଗଲା କେମିତି ? କିପରି ଏ କଥା ସେତେବେଳେ ଚିନ୍ତା କରାଗଲା ନାହିଁ ଯେ, ଜେଲରେ ଏହା ଏକ ବିଷମ ପରିସ୍ଥିତି ସୃଷ୍ଟି କରିବ ? ଏହା ତ ଏକ ସାଧାରଣ ପ୍ରଶ୍ନ । ଛୋଟ ପିଲାଟିଏ ମଧ୍ୟ ଏ କଥା ଚିନ୍ତା କରି ଥାଆନ୍ତା । କିନ୍ତୁ ପଞ୍ଜାବ୍ ପୋଲିସ ପ୍ରଶାସନ ସେତେବେଳେ ଏ କଥା ଚିନ୍ତା କରି ନ ଥିଲା । ଯୋଉ ମହାବଳ ବାଘମାନଙ୍କୁ ସାନ୍ଧୁ ପିଟି ପିଟି ସାବାଡ଼ କରି ଦେଇ ଥିଲେ ଏବଂ ପଞ୍ଜୁରୀରେ ଭର୍ତ୍ତି କରି ଦେଉ ଥିଲେ ସେଇ ପଞ୍ଜୁରୀ ଭିତରକୁ ପରେ ଜାଣିଶୁଣି ସାନ୍ଧୁଙ୍କୁ ଭର୍ତ୍ତି କରି ଦିଆଗଲା ।

ସାନ୍ଧୁଙ୍କ ଦମ୍ଭ ଓ ସାହସ ପ୍ରଥମେ ଏଇଠି ଧକ୍କା ଖାଇଲା । ସେ ଅନ୍ତତଃ ଆଶା କରି ନ ଥିବେ ଯେ ଆଇନ ଓ ପ୍ରଶାସନ ଯାହା ହେଉନା କାହିଁକି ତାଙ୍କ ପୁଲିସ ବିଭାଗ ତାଙ୍କୁ ସହାନୁଭୂତି ଦେଖେଇବ । ଅନ୍ତତଃ ସାମାନ୍ୟ ନ୍ୟାୟ ପ୍ରଦର୍ଶନ କରି ତାଙ୍କୁ ଏକ ସ୍ୱତନ୍ତ୍ର ସ୍ଥାନରେ ରଖିବ ।

କିନ୍ତୁ ସେ କଥା ହେଲା ନାହିଁ । ତାଙ୍କ ନିଜ ଲୋକେ ହିଁ ତାଙ୍କ ଉପରେ ବେଶି ଅତ୍ୟାଚାର କଲେ । ତାର କାରଣ, ପୁଲିସର ପ୍ରଥମ ଓ ପ୍ରଧାନ ଶତ୍ରୁ ପୁଲିସ । ପୁଲିସ ସହିତ ଶତ୍ରୁତା କରିବା ପାଇଁ ବାହାରୁ ଲୋକ ଆସନ୍ତିନି । ତା ନିଜ ଲୋକ, ତାର ଅତି ଆପଣାର ଲୋକ ହିଁ ପ୍ରଥମେ ତା ସାମ୍ନାରେ ଅସ୍ତ୍ର ଧରି ଠିଆ ହୁଏ । ବଡ଼ ବିଚିତ୍ର ସେ କାହାଣୀ । ପୁଲିସର ଶତ୍ରୁତା କେବଳ ତାର ବିଭାଗୀୟ କାର୍ଯ୍ୟକାଳ ଭିତରେ ଆବଦ୍ଧ ହୋଇ ରହେ ନାହିଁ । ତାହା ସେ ସୀମା ଡ଼େଇଁ ଅନେକ ଆଗକୁ ଚାଲିଯାଏ ।

ପଞ୍ଜାବ ପୁଲିସ ବିରୁଦ୍ଧରେ ଅଭିଯୋଗର ମଧ୍ୟ ସୀମା ନାହିଁ । ବିଶେଷ କରି ଗିଲ୍ ସାହେବ ଶାସନକୁ ଆସିବା ପରଠାରୁ ସେ ଅଭିଯୋଗ ଆକାଶକୁ ଉଠୁଥିବା ରକେଟ ପରି ଉଠିବାକୁ ଲାଗିଲା । ପଞ୍ଜାବର ସାଧାରଣ ଜନତା ସନ୍ତ୍ରାସବାଦୀମାନଙ୍କ ଦ୍ୱାରା ଯେତିକି ଅତ୍ୟାଚାରିତ ହେଲେ, ତାଠୁ ବେଶି ଅତ୍ୟାଚାରର ଶିକାର ହେଲେ ପଞ୍ଜାବର ପୁଲିସ ଦ୍ୱାରା । କେବଳ 'ପୁଲିସ ରାଜ' ହିଁ ଚାଲିଲା ସେଇଠି । ଅନ୍ୟ ସବୁ ଶାସନ ଅଚଳ ହୋଇ ପଡ଼ିଲା । ଜନ ଜୀବନର ଏପରି କ୍ଷେତ୍ର ନାହିଁ, ଯେଉଁଠି ପୁଲିସ ହସ୍ତକ୍ଷେପ ନ କରିଛି । ଏପରିକି ପ୍ରେମ ଓ ବିବାହରେ ମଧ୍ୟ ।

ଘଟଣା ଶେଷରେ ଏପରି ସ୍ତରକୁ ଗଲା ଯାହା ଦିଲ୍ଲୀ ଦରବାରକୁ ମଧ୍ୟ ଦୋହଲାଇ ଦେଲା । ଶେଷରେ ଫଳ ହେଲା ଯେ ଗିଲ ସାହେବଙ୍କୁ ଅସମ୍ମାନଜନକ ଭାବରେ ବିଦାୟ ନେବାକୁ ପଡ଼ିଲା । ଏବଂ ଅନ୍ୟ ପକ୍ଷରେ ସୁପ୍ରିମକୋର୍ଟକୁ ସାଧାରଣ ତଥା ନିରୀହ ଜନସାଧାରଣଙ୍କ ସ୍ୱାର୍ଥରକ୍ଷା ପାଇଁ ଆଗେଇ ଆସିବାକୁ ପଡ଼ିଲା ।

ଅଭିଯୋଗରୁ ଜଣାଗଲା ଯେ ପଞ୍ଜାବ ପୁଲିସ ୧୯୮୪ରୁ ୧୯୯୪ ଭିତରେ ଅନ୍ତତଃ ୨୫ ହଜାର ନିରୀହ ଲୋକଙ୍କୁ ହତ୍ୟା କରି ସେମାନଙ୍କ ଶବକୁ ଅନୁଚିତ ଉପାୟରେ ଦାହ କରିଛି । କେବଳ ତରନ୍ ତରନ୍ ଜିଲ୍ଲାରେ (ଯେଉଁଠି ସାନ୍ଧୁ ଏସ୍.ପି ଥିଲେ) ୯୮୪ ଟି ଶବକୁ ଅଚିହ୍ନା ବୋଲି କହି ଏସ୍.ପି. ସେମାନଙ୍କ ପରିବାରବର୍ଗଙ୍କୁ ନ କହି ପୋତି ଦିଆ ଯାଇଛି । ସୁପ୍ରିମକୋର୍ଟଙ୍କ ନିର୍ଦ୍ଦେଶରେ ସି.ବି.ଆଇ. ସମସ୍ତ ଘଟଣାର ତଦନ୍ତ କରି ରିପୋର୍ଟ ଦେବାରୁ କୋର୍ଟ ଏହାକୁ 'ୱର୍ସ ଦେନ୍ ଜେନୋସାଇଡ୍' ବୋଲି କହି ଏଥିପାଇଁ ଯେଉଁମାନେ ଦାୟୀ ତାଙ୍କ ବିରୁଦ୍ଧରେ କେଶ କରିବାକୁ ନିର୍ଦ୍ଦେଶ ଦେଲେ । ସାନ୍ଧୁ ଏହି ସବୁ କେଶରେ ଜଡ଼ିତ ।

ସାନ୍ଧୁ ହୁଏତ ଆଶା କରି ନ ଥିଲେ ଯେ ଏତେ ଶୀଘ୍ର ତାଙ୍କ ଉପରେ ଏତେ ଗୁଡ଼ିଏ କେଶ ଝୁଲି ପଡ଼ିବ ବୋଲି । ସେ ଏ କଥା ମଧ୍ୟ ଆଶା କରି ନ ଥିଲେ ଯେ ତାଙ୍କ ନିଜ ବିଭାଗ ତାଙ୍କ ପକ୍ଷ ସମର୍ଥନ କରିବ ନାହିଁ ବୋଲି, ଅଚାନକ ସବୁ କେମିତି ଓଲଟ ପାଲଟ ହୋଇଗଲା ।

କିନ୍ତୁ ଯାହା ହେଲେ ମଧ୍ୟ ଏସବୁ ଥିଲା ସାମୟିକ । ସମୟ ଗଡ଼ି ଯାଇଥିଲା । ରାଜନୀତିର ଦୃଶ୍ୟ ବଦଳି ଯାଇଥିଲେ ହୁଏତ ସବୁ ବଦଳି ଯାଇ ଥାଆନ୍ତା । ସାନ୍ଧୁ ହୁଏତ ବୁଝିଲେ ନାହିଁ ଯେ ଏ ସବୁ ପ୍ରଶ୍ନର ଉତ୍ତର ଆତ୍ମହତ୍ୟାରେ ମିଳେ ନାହିଁ । ତାର ସମାଧାନ ଆତ୍ମହତ୍ୟା ପରେ ମନକୁ ମନ ହେଇ ଯାଏ ନାହିଁ । ଆତ୍ମହତ୍ୟା ସତ୍ୟ ଉଦଘାଟନରେ ପ୍ରତିବନ୍ଧକ ସୃଷ୍ଟି କରେ, ସାନ୍ଧୁ ଯୋଉ ସତ୍ୟର ଅଧିକାରୀ ଥିଲେ ତାର ଉନ୍ମୋଚନ କାଳ କାଳକୁ ଅସମ୍ଭବ ହେଇ ରହିଗଲା । ■

(ସମ୍ବାଦ- ୭.୯.୯୭)

# ଅପରାଧୀର ସ୍ୱର୍ଗ-ବିହାର

ଯଥାର୍ଥରେ କୁହାଯାଏ, ବିହାର ହିଁ ଭାରତର ଏକମାତ୍ର ରାଜ୍ୟ ଯେଉଁଠି ସୁପ୍ରିମକୋର୍ଟର ଶହ ଶହ ଆଦେଶ ଓ ନିର୍ଦ୍ଦେଶ ସବୁକୁ ଯତ୍ନର ସହିତ କେବଳ ଅଳିଆ ଗଦାରେ ସାଇତି ରଖା ଯାଏ । ସତକଥା କହିବାକୁ ଗଲେ ବିହାର ଗୋଟିଏ ରାଜ୍ୟ ଯେଉଠି ଆଇନ ଛଡ଼ା ଆଉ ସବୁ କାମ କରେ । ଏ ପରିବି କଥା ଅଛି ଯୋଉଠି ଅର୍ଥ ଦେଲେ ଯେ କୌଣସି କାମ ଅତି ସହଜରେ କରେଇ ନେଇ ହୁଏ ତାର ନାମ ବିହାର ।

ସ୍ୱଷ୍ଟ ଦିବାଲୋକରେ ନରହତ୍ୟା କରି ଆସାମୀ ଯଦି ଥାନାରେ ଆତ୍ମ ସମର୍ପଣ କରିବାକୁ ଆସି ଦେଖେ ଯେ ତାର ଜାତି ଭାଇଟି ସେଠି ଦାରୋଗା ବାବୁଙ୍କ ଆସନ ବିମଣ୍ଡିତ କରୁଚି, ତେବେ ସେ ସସମ୍ମାନେ ସେଠୁ ଘରକୁ ଫେରିଯାଇ ପାରେ । ଚୋର କରିବାକୁ ଯାଇ ଯଦି ଅପରାଧୀ ଦେଖେ ଯେ ସେ ପ୍ରତିରୋଧର ସମ୍ମୁଖୀନ ହେଇଚି ଏବଂ ଆଘାତପ୍ରାପ୍ତ ମଧ୍ୟ, ତେବେ ସେ ଥାନାରେ ଯାଇ ଘରମାଲିକ ବିରୁଦ୍ଧରେ ଅଭିଯୋଗ ମଧ୍ୟ କରିପାରେ । ଏବଂ ସେ ଅବସ୍ଥାରେ ଘର ମାଲିକକୁ ପ୍ରଚୁର ମୂଲ୍ୟ ଦେବାକୁ ପଡ଼େ । ସପ୍ତମ ଶ୍ରେଣୀ ଛାତ୍ର ଯଦି ଯାଇ ଦେଖେ ଯେ କ୍ଲାସ୍‌ରେ ତାର ଆସନକୁ ଅନ୍ୟ ଜଣେ ବନ୍ଧୁ ବାଳକ ଦଖଲ କରି ନେଇଚି ଏବଂ ହୁଏତ ବଚସା ବେଳେ ସେ ଅପମାନସୂଚକ ଶବ୍ଦ ବ୍ୟବହାର କରିଚି ତେବେ ମଧ୍ୟାହ୍ନ ଭୋଜନ ସମୟରେ ସେ ନିଜ ଘରୁ ପିସ୍ତଲଟିଏ ଆଣି ସମସ୍ତଙ୍କ ସାମ୍ନାରେ ସେଇ ଶ୍ରେଣୀ ଗୃହରେ ତାକୁ ହତ୍ୟା ମଧ୍ୟ କରିପାରେ ଏବଂ ସେପରି ଅବସ୍ଥାରେ ସେ ଅପରାଧର ମୂଲ୍ୟ ଯେତେ ପଡୁନା କାହିଁକି ସେଥିପାଇଁ ପିତାମାତା ମୋଟେ ଚିନ୍ତା କରନ୍ତି ନାହିଁ । ବରଂ ତାଙ୍କ ପୁଅ ଯେ ଏକ ବୀରତ୍ୱର କାମ କରି ଆସିଚି ସେଥିପାଇଁ ତା ପିଠି ଥାପୁଡ଼େଇ ଦିଅନ୍ତି ।

ବିହାରରେ ବିଶେଷ କରି ଉତ୍ତର ବିହାରରେ ଏପରି ପରିବାର ନାହିଁ ଯେଉଁଠି ପରିବାରର ପ୍ରତ୍ୟେକଙ୍କର ଏକାଧିକ ଦେଶୀ/ବିଦେଶୀ ପିସ୍ତଲ ବା ରିଭଲଭର ନାହିଁ । ଏପରି ଗାଁ ନାହିଁ ଯେଉଁଠି ଦୁଇ ଚାରିଜଣ ସେ ସବୁ ମାରଣାସ୍ତ୍ର ମରାମତି ବା ତିଆରି କାମ ଜାଣି ନାହାଁନ୍ତି । ଏପରି ପଞ୍ଚାୟତ ନାହିଁ ଯୋଉଠି ଦୁଇ ଚାରିଟା ସେ ମାରଣାସ୍ତ୍ର ତିଆରି କାରଖାନା ନାହିଁ । କହିବାକୁ ଗଲେ ଏସବୁ ପରିବାର/ଗ୍ରାମ/ଗ୍ରାମ ପଞ୍ଚାୟତ ପରିବାରର ଏ ଗର୍ବ ସହିତ ସେମାନେ କେବେ ସାଲିସ କରନ୍ତି ନାହିଁ । ଜଣେ ଯଦି ଏକାଧିକ ପିସ୍ତଲର ଅଧିକାରୀ ନୁହେଁ, ତେବେ ସେ ଯେ ସମାଜର ନିମ୍ନସ୍ତରର ବ୍ୟକ୍ତି ଏମିତି ଚିନ୍ତା ତା ମନକୁ ସବୁବେଳେ ଆବୋରି ଥାଏ ।

ଲାଇସେନ୍ସ ପାଇଁ ସେମାନେ ଚିନ୍ତା କରନ୍ତିନି । ଲାଇସନ୍ସର ଆବଶ୍ୟକତା ଥାଏ ସେ କଥା ମଧ୍ୟ ସେମାନେ କେବେ ଭାବନ୍ତିନି । ଆମେ ଯେମିତି ବଜାରରୁ ପିଲାଙ୍କ ପାଇଁ କଣ୍ଢେଇ କିଣି ଆଣି ଉପହାର ଦେଉ, ସେମାନେ ସେମିତି ଭର୍ଣ୍ଣ ପିସ୍ତଲଟିଏ ପାଇଲେ କିଣି ଆଣି ସାନଭାଇ କିମ୍ବା ପ୍ରିୟ ପରିଜନଙ୍କୁ ଉପହାର ଦିଅନ୍ତି । ଏହା ହିଁ ଅପରାଧୀ ବିହାରର ଅଘୋଷିତ ସଂସ୍କୃତି । ଏ ସଂସ୍କୃତି ସେମାନଙ୍କର ରକ୍ତକଣିକା ସହିତ ନିବିଡ଼ ସମ୍ପର୍କ ରଖି ଆସୁଚି ଯୁଗ ଯୁଗ ଧରି । ଗାଁରେ ଏ ସଂସ୍କୃତି ଯେତିକି ସଜାଗ ଓ ସତେଜ, ସହରରେ ସେଇ ତୁଳନାରେ କୋଉ ସ୍ତରକୁ ଯାଇଥିବ ଅନୁମାନ କରା ଯାଇ ପାରେ । ପ୍ରଶାସନରେ ତାର ମାତ୍ରା ତାଠୁଁ ଆହୁରି ଅନେକ ଗୁଣ ବେଶି । ଏବଂ ସବୁଠୁ ବଡ଼ କଥା ହେଲା ଜଣେ ପ୍ରଶାସନରେ ଥାଉ ବା ପୁଲିସରେ ଥାଉ, ଅଫିସରରେ ଥାଉ ବା ସ୍କୁଲ ଶିକ୍ଷକ ହେଇଥାଉ, ଡାକ୍ତର ହେଇଥାଉ ବା ନିଜର ବ୍ୟବସାୟ କରୁଥାଉ, ତାଙ୍କୁ ପ୍ରଥମେ ଏହିପରି କେତେଜଣ ଅପରାଧୀଙ୍କୁ ହାତରେ ରଖିବାକୁ ପଡ଼ିବ । ଯିଏ ଯେତିକ ପରିମାଣରେ 'ସୁଦକ୍ଷ' ତଥା 'ସୁନାମ' ଅର୍ଜନ କରିଥିବା ଅପରାଧୀଙ୍କୁ ନିଜ ଅକ୍ତିଆରରେ ରଖିଥିବ ସେ ସେତିକି ପ୍ରତିଷ୍ଠିତ ତଥା ମାନ୍ୟଗଣ୍ୟ ବୋଲି ଧରି ନେବାକୁ ହେବ । ସୂକ୍ଷ୍ମ କଥାରେ ଆପଣଙ୍କୁ ଶାନ୍ତିରେ ବା ନିଶ୍ଚିନ୍ତରେ ବସବାସ କରିବାକୁ ହେଲେ ପ୍ରତ୍ୟକ୍ଷରେ ନ ହେଲେ ମଧ୍ୟ ପରୋକ୍ଷରେ, କିଛି ଅପରାଧୀଙ୍କ ସହିତ ଭଲ ସଂପର୍କ ରଖିବାକୁ ହେବ । ଏହା, ଅବଧାରିତ । ସାଧାରଣ ଭାବେ ସମାଜରେ ସମ୍ମାନର ସହିତ ଚଳପ୍ରଚଳ ହେବା ପାଇଁ ଏତକ ସେଠି ନ୍ୟୂନତମ ଆବଶ୍ୟକତା ।

ଯୋଉଠି ଅବସ୍ଥା ଏଇ ପ୍ରକାର, ସେଠି ରାଜନେତାମାନେ କୋଉ ସ୍ତରକୁ ଯାଇଥିବେ ବା ରାଜନୀତିରେ ନେତୃତ୍ୱ ନେବାକୁ ହେଲେ ଅପରାଧରେ କୋଉ ସ୍ତରକୁ ଯିବାକୁ ହେବ ସେ କଥା ମଧ୍ୟ ଚିନ୍ତା କରା ଯାଇପାରେ ।

ସାଧୁତା, ସଚ୍ଚୋଟତା, ସତ୍ୟବାଦୀତା ସେଠି ଗୋଟିଏ ଗୋଟିଏ ଅପାଂକ୍ତେୟ ଶବ୍ଦ । ତେବେ ଅପରାଧୀମାନଙ୍କର ପୃଷ୍ଠପୋଷକତା କରି, ସେମାନଙ୍କ ସହିତ ସୁସଂପର୍କ ସ୍ଥାପନ କରି ବା ଅନ୍ୟ ଅର୍ଥରେ ସେମାନଙ୍କ ଅପରାଧକୁ ଘୋଡ଼େଇ ରଖି ଜଣେ ନିଜର ସାଧୁତା ଜାହିର କରିପାରେ ।

ବର୍ଷ ବର୍ଷ ଧରି ସେଠି ସରକାରୀ ଟ୍ରେଜେରୀ ବା ସରକାରୀ ଅଫିସ୍ ଅଡ଼ିଟ୍ ନ ହେବା, ହେଲେ ମଧ୍ୟ ତାର ରିପୋର୍ଟ ପ୍ରକାଶ ନ ପାଇବା, ପାଇଲେ ମଧ୍ୟ ତାକୁ କାର୍ଯ୍ୟକାରୀ ନ କରିବାର ଏହା ହିଁ ଏକମାତ୍ର କାରଣ ।

''ଅଡିଟ୍ କେ ଲିୟେ ଆଏ ହେଁ ? ଓ୍ୱ କ୍ୟା ଚିଜ୍ ହେ ?'' ଏସବୁ କୌତୁକିଆ ପ୍ରବାଦ ସେଠି ବେଶ୍ ଶୁଣିବାକୁ ମିଳେ । ଖୁବ୍ ବେଶିରେ ଯଦି ଜଣେ କହେ ଯେ ସେ ଅଡ଼ିଟ କରିବ, ତାକୁ ସେମିତି ଅର୍ଡର ମିଳିଚି, ତେବେ ତାକୁ ଉତ୍ତର ମିଳେ ଯେ, 'ଠିକ୍

ଅଛି, ଆପଣ ଯାଆନ୍ତୁ ଗେଷ୍ଟ ହାଉସରେ ବିଶ୍ରାମ ନିଅନ୍ତୁ କିମ୍ବା ଆପଣଙ୍କ ଘରକୁ ଯାଇ ପିଲାମାନଙ୍କ କଥା ଦେଖୁ ଥାଆନ୍ତୁ ଆମେ ଆପଣଙ୍କ ଅଡିଟ୍ ରିପୋର୍ଟ ତିଆରି କରି ଆପଣଙ୍କ ପାଖକୁ ପଠାଇଦେବୁଁ' । ଏ ସବୁ ଅତି ସାଧାରଣ କଥା ।

ପୁଲିସର ପ୍ରଶାସନ ଆହୁରି ବିଚିତ୍ର । କନେଷ୍ଟବଳ ଠାରୁ ଆରମ୍ଭ କରି ଡି.ଆଇ.ଜି. କିମ୍ବା ଆଇ.ଜି. ପର୍ଯ୍ୟନ୍ତ ସମସ୍ତେ କିଛି ନା କିଛି ଅପରାଧୀକୁ ହାତରେ ରଖି ଥାଆନ୍ତି । ଏସବୁ ସେମାନଙ୍କ ପକ୍ଷେ ଏକ ଆବଶ୍ୟକତା । ଯାହାର ସେ ସବୁ ନାହିଁ ତାକୁ ତଳି ତଳାନ୍ତ ହେବାକୁ ହୁଏ । ଗୋଟିଏ ଉଦାହରଣ - ୧୯୯୩ ର ଘଟଣା । ଜଣେ ଅତିରିକ୍ତ ମହା ନିର୍ଦ୍ଦେଶକଙ୍କ ଆତ୍ମୀୟକୁ ଗୋଟିଏ ଇଂରାଜୀ ମିଡ଼ିଅମ୍ ସ୍କୁଲରେ ଭର୍ତ୍ତି କରେଇବାକୁ ଏସ୍.ପି. ଓ ଅନ୍ୟାନ୍ୟ ଅଫିସରଙ୍କୁ ନିର୍ଦ୍ଦେଶ ଆସିଲା । କିନ୍ତୁ ସ୍କୁଲର ଅଧ୍ୟକ୍ଷା ସେ ପିଲାକୁ ଗ୍ରହଣ ନ କରିବାରୁ, ଏସ.ପି.ଙ୍କୁ କୁହାଗଲା ଯେ, 'ସ୍କୁଲର ସମସ୍ତ କର୍ମଚାରୀଙ୍କୁ ଆରେଷ୍ଟ କର ଏବଂ ସ୍ଥାନୀୟ ଗୁଣ୍ଡାମାନଙ୍କୁ ଅଧ୍ୟକ୍ଷାଙ୍କର ଯତ୍ନ ନେବାକୁ ଛାଡ଼ିଦିଅ ।' ପୁଲିସ ଏସ୍.ପି. ସେତକ କରିପାରି ନ ଥିବାରୁ ତାଙ୍କୁ ତୁରନ୍ତ ଅଯୋଗ୍ୟ ବୋଲି ଘୋଷଣା କରି ବଦଳି କରି ଦିଆ ଯାଇଥିଲା । ପରେ ଗୁଣ୍ଡାମାନେ ଦିନରେ ଅଧକ୍ଷାଙ୍କ ଉପରେ ଯୌନ ଅତ୍ୟାଚାର କରିଥିଲେ ।

ଏବେ ପ୍ରଶ୍ନ ଉଠିପାରେ ଯଦି ଏପରି ଏସ୍.ପି.ଙ୍କୁ ଅଯୋଗ୍ୟ କୁହାଗଲା ତେବେ ଯୋଗ୍ୟ କିଏ ? ଉତ୍ତର ଅତି ସରଳ । ତାର ଉତ୍ତର ଭାଗଲପୁରରେ ମିଳିବ ଯୋଉଠି ଅପରାଧ ନିୟନ୍ତ୍ରଣ ନାମରେ ଗୋଟିଏ ପରେ ଗୋଟିଏ ଅପରାଧୀର ଆଖିରେ ଏସିଡ଼ ପକେଇ ଅନ୍ଧ କରି ଦିଆ ଯାଇଥିଲା ଏବଂ ପରେ ସରକାର ସେହି ଅଫିସରମାନଙ୍କୁ ପ୍ରଭୂତ ପରିମାଣରେ ପୁରସ୍କାର ଦେଇ ପ୍ରମୋଶନ ମଧ୍ୟ ଦେଇଥିଲେ ।

ସେଠି କଥାରେ ଅଛି, ରାଜନୀତି ଓ ଅପରାଧ ନୀତି, ଗୋଟିଏ ମୁଦ୍ରାର ଦୁଇ ପାର୍ଶ୍ୱ । ଦୁଇଟି ସମାନ ଓ ସମାନ୍ତର ସରଳରେଖା । କେହି କାହାକୁ ଛାଡ଼ି ପାରନ୍ତିନି । ସେମାନଙ୍କ ଭିତରେ ଥାଏ ଗୋଟାଏ ଅନନ୍ନୁଭୂତ ଆକର୍ଷଣର ମଧୁର ସମ୍ପର୍କ । ଗୋଟିକର ଅବର୍ତ୍ତମାନରେ ଅନ୍ୟଟିର ସ୍ଥିତି ଅସମ୍ଭବ ।

ବସରେ ହେଉ ବା ଟ୍ରେନରେ ହେଉ ରାତ୍ରୀ ଯାତ୍ରାରେ ମଣିଷର ଭାଗ୍ୟ ଖୁବ ଭଲ ନ ଥିଲେ ବର୍ତ୍ତିବା ସମ୍ଭବ ନୁହେଁ । ଅପରାଧୀ ଓ ପୁଲିସ ଏ କ୍ଷେତ୍ରରେ ସମ ପରିମାଣରେ କର୍ମଦକ୍ଷ । ଜଣେ ତାର ଚିରାଚରିତ ପ୍ରଥାରେ 'ଅପରେସନ' ଆରମ୍ଭ କରେ ଏବଂ ଅନ୍ୟ ଜଣେ ତାକୁ ସୁରକ୍ଷା ଯୋଗାଇ ଦିଏ । ଚକ୍ରଧରପୁର ଓ ରାଉରକେଲା ଭିତରେ କାଠଚୋର ଏବଂ ପୁଲିସ ଭିତରେ ଅପୂର୍ବ ସହଯୋଗ ଅନେକ ସମୟରେ ଟ୍ରେନ ଡ୍ରାଇଭରକୁ ବାଧ୍ୟ କରେ ଯଥା ସ୍ଥାନରେ ଗାଡ଼ି ରଖିବାକୁ । ଆଦେଶ ଅମାନ୍ୟ କରି ମୃତ୍ୟୁବରଣ କରିବା ଅପେକ୍ଷା ସେମାନଙ୍କ ସହିତ ସହଯୋଗ କରିବାକୁ ଯେ

କୌଣସି ଡ୍ରାଇଭର ପସନ୍ଦ କରିବ । ପାସେଞ୍ଜର କିମ୍ବା ଏକ୍ସପ୍ରେସ୍ ଟ୍ରେନରେ ମଧ୍ୟ ସେଇ ଏକାକଥା । ଯଦି ଆପଣଙ୍କୁ ରିଜରଭେସନ ମିଳୁ ନାହିଁ ତେବେ ଚଳନ୍ତା ଗାଡ଼ିରେ ଥିବା ପୁଲିସକୁ କହନ୍ତୁ । ସେ ଚାହିଁଲେ ରିଜର୍ଭବର୍ଥରେ ଶୋଇଥିବା ଲୋକକୁ ଉଠେଇ ଆପଣଙ୍କ ପାଇଁ ଆସନ କରିଦେବ ।

ବିହାରର ସମଗ୍ର ଅପରାଧର ପୃଥିବୀ, କେବଳ ରାଜନେତାଙ୍କୁ କେନ୍ଦ୍ର କରି ବୁଲୁଚି । ରାଜନେତା ହିଁ ସେ ଦୁନିଆର ସର୍ବମୟ କର୍ତ୍ତା । ତସଲିମୁଦ୍ଦିନ ସେହିପରି ଜଣେ ରାଜନେତା ଯାହାଙ୍କ ବିରୁଦ୍ଧରେ ଚୋରୀ, ଧର୍ଷଣ, ଗୃହଦାହ, ହତ୍ୟା, ଲୁଣ୍ଠନ ଇତ୍ୟାଦି ପ୍ରାୟ ତିରିଶଟା କେଶ ଏବେ ମଧ୍ୟ କୋର୍ଟରେ ଅଛି । ଲାଲୁଙ୍କ ସହିତ ତାଙ୍କର ସମ୍ପର୍କ ଅତି ନିବିଡ଼ ଥିବାରୁ ସେ ସେତେବେଳେ କେନ୍ଦ୍ରରେ ଗୃହମନ୍ତ୍ରୀ ପଦବୀ ପାଇ ପାରିଥିଲେ । କାରଣ ଲାଲୁ ଜାଣିଥିଲେ ଥରେ ଯଦି ସେ କେନ୍ଦ୍ରର ଘରୋଇ ବିଭାଗକୁ ନିଜ ହାତ ମୁଠାରେ ରଖି ପାରନ୍ତି ତେବେ ସମଗ୍ର ପ୍ରଶାସନଟା ନିଜ କବଳକୁ ଆସିଯିବ । ତା'ପରେ ତାଙ୍କ ଆଙ୍ଗୁଳି ଆଗରେ ବିହାର ଉଠ୍ ବସ ହେବ ।

ଅପରାଧୀମାନେ ଦୈବାତ ଆରେଷ୍ଟ ହେଲେ ସେମାନେ ଯେ ଭାଙ୍ଗି ପଡ଼ନ୍ତି ତା ନୁହେଁ । ସେ ସବୁ ତାଙ୍କ ଜାତକରେ ନାହିଁ । ତେଣୁ ଗୋଖାଦ୍ୟ ଦୁର୍ନୀତି ଅପରାଧରେ ଯେତେବେଳେ କିଛି ରାଜନେତା ଜେଲରେ ରହିଲେ ସେମାନେ ସେଇଠୁ ମୋବାଇଲ ଫୋନ ସାହାଯ୍ୟରେ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ, ପଦସ୍ଥ ଅଫିସର, ପୁଲିସ ଓ ଓକିଲଙ୍କ ସହିତ ଯୋଗାଯୋଗ ରଖିଲେ ଏବଂ ଦିନକୁ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ସାମ୍ବାଦିକମାନଙ୍କୁ ସେଇ ଜେଲରେ ପାର୍ଟି ମଧ ଦେଲେ । ନିଜକୁ ସୁହାଇଲା ଭଳିଆ ବିବୃତି ମଧ୍ୟ ଦେଲେ । ଏ ପରିକି ହାଇକୋର୍ଟରେ କେଉଁ ବିଚାରପତିଙ୍କୁ ନେଇ ବେଞ୍ଚ ଗଠିତ ହେଲେ ସେମାନଙ୍କର ସପକ୍ଷରେ ଯିବ ତାର ଯୋଜନା ମଧ୍ୟ ତିଆରି କଲେ ।

ପାଟନା ହାଇକୋର୍ଟ ତାକୁ ଏବେ 'ଜଙ୍ଗଲ ରାଜ' ବୋଲି କହୁଚି । ଯେପରି ଭାବରେ ମୁଖ୍ୟମନ୍ତ୍ରୀ ନିଯୁକ୍ତ ହେଲେ, ଯେପରି ଭାବରେ ସେ ଆସ୍ଥା ଭୋଟରେ ଜିତିଲେ, ଏବଂ ଶେଷରେ ଯେପରି ଭାବରେ ଲାଲୁ ଆରେଷ୍ଟ ହେଇ ରାଜ୍ୟ ଅତିଥିଶାଳାରେ ବନ୍ଦୀ ହେଇ ରହିଲେ ଏସବୁକୁ 'ଜଙ୍ଗଲ ରାଜ' ଛଡ଼ା ଆଉ କଅଣ କୁହାଯିବ ?

ବିହାରର ଅପରାଧ ସଂସ୍କୃତି ଏବେ ଅନ୍ୟାନ୍ୟ ରାଜ୍ୟକୁ କାୟା ବିସ୍ତାର କଲାଣି । ସେ ଅପରାଧ ସଂସ୍କୃତିକୁ ଜାତୀୟ ସ୍ତରରେ ଏକ ପ୍ରକାର ସ୍ୱୀକୃତି ମଧ୍ୟ ମିଳି ସାରିଲାଣି । ଲାଲୁଙ୍କ ଦୁର୍ନୀତିକୁ ଯେପରି ଭାବରେ ଘଣ୍ଟ ଘୋଡ଼େଇବାକୁ ଚେଷ୍ଟ ଚାଲିଛି ଏଥିରୁ ତାହା ହିଁ ସ୍ପଷ୍ଟ ହେଇଚି । ଦଳୀୟ ରାଜନୀତି ଓ ଶାସନ ପାଖରେ ଏବେ ମୂଲ୍ୟବୋଧକୁ ପୂରାପୂରି ବଳି ଦିଆ ସରିଲାଣି । ବର୍ତ୍ତମାନ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ପାଳନ ବେଳେ ସ୍ୱତଃ ଆମ ମନକୁ ଆସୁଚି, ଏ ସୁବର୍ଣ୍ଣ ଜୟନ୍ତୀ କାହାର ?

(ସଂବାଦ - ୨୮.୮.୯୭)

# ଶିବିରାୟୋଜନ

ଶବ୍ଦଟି ନୂଆ ନୁହେଁ । ଅନେକ ପୁରୁଣା । ରାଜାରାଜୁଡ଼ା ଅମଳରୁ ଚଳି ଆସୁଛି । ରାଜା ଯେତେବେଳେ ପାରିଧିରେ ଯାଉଥିଲେ କିମ୍ବା ସ୍ଥାନ ପରିବର୍ତ୍ତନ, ଜଳବାୟୁ ପରିବର୍ତ୍ତନ ଉଦ୍ଦେଶ୍ୟରେ ଯାଉଥିଲେ ସେତେବେଳେ ଏ ପ୍ରଥା ଥିଲା । ଗସ୍ତର ଯଥେଷ୍ଟ ପୂର୍ବରୁ ମନ୍ତ୍ରୀ, କଟୁଆଳ, ଦାସୀ, ପୋଇଲିଙ୍କ ଠାରୁ ଆରମ୍ଭ କରି ବହୁ ଲୋକ ଯାଇ ମହାରାଜାଙ୍କ ରହଣୀର ବ୍ୟବସ୍ଥା କରୁଥିଲେ । ରହଣୀ ସମୟରେ ତାଙ୍କର କିମ୍ବା ତାଙ୍କ ପରିବାରବର୍ଗଙ୍କର ଏପରିକି ତାଙ୍କ ପାଖଲୋକ/ବୟସ୍ୟଙ୍କର ମଧ୍ୟ ଯେପରି କିଛି ଅସୁବିଧା ନ ହୁଏ ତାହା ଦେଖିବା ଏମାନଙ୍କର ପ୍ରଥମ କାମ । ମହାରାଜାଙ୍କ ଉପଭୋଗ ପାଇଁ ସୁନ୍ଦରୀ ଯୁବତୀମାନଙ୍କୁ ମଧ୍ୟ ଅଣାଯାଇ ପ୍ରସ୍ତୁତ କରି ରଖାଯାଉଥିଲା । ନୃତ୍ୟ ଗୀତର କାର୍ଯ୍ୟ ରହୁଥିଲା ।

ସବୁ ପ୍ରକାର ଆୟୋଜନ ସତ୍ତ୍ୱେ ଏବଂ ସମସ୍ତ ପ୍ରକାର ସାବଧାନତା ଗ୍ରହଣ ସତ୍ତ୍ୱେ ଯଦି କେତେବେଳେ ଆୟୋଜନରେ ସାମାନ୍ୟ ଦୋଷତ୍ରୁଟି ଦେଖାଯାଉଥିଲା କିମ୍ବା କୌଣସି କାରଣରୁ ଯଦି ରାଜାଙ୍କର କିମ୍ବା ତାଙ୍କ ପାଖଲୋକଙ୍କର ଆୟୋଜନରେ ଅରୁଚି ଧରିଲା ତେବେ କଥା ସରିଲା । ବିଚରା ଆୟୋଜକଙ୍କର ମୁଣ୍ଡ କାଟ ହେଉଥିଲା । ନଚେତ୍ ଦେଶାନ୍ତରୀ ହେବାକୁ ପଡୁଥିଲା । ଆଦେଶ ଥରେ ମୁଖ ନିସୃତ ହେଲେ ତାର ପୁନର୍ବିଚାର ପାଇଁ ନ୍ୟାୟାଳୟରେ ଆବେଦନର ବ୍ୟବସ୍ଥା ନ ଥିଲା ।

ପରବର୍ତ୍ତୀ କାଳରେ ଇଂରେଜମାନେ ଯେତେବେଳେ ଆମ ଦେଶର ସିଂହାସନ ଦଖଲ କଲେ ସେତେବେଳେ ସେମାନେ ମଧ୍ୟ ସେଇ ପ୍ରଥା କାଏମ ରଖି ଥିଲେ । ଶାସନରେ ଥିବା ପଦସ୍ଥ ଅଫିସରମାନେ ରାଜ୍ୟରେ ତାଙ୍କ ଅଧସ୍ତନ କର୍ମଚାରୀମାନଙ୍କ କାର୍ଯ୍ୟର ସମୀକ୍ଷା ପାଇଁ ଏବଂ ଇଂଲଣ୍ଡର ରାଜା ରାଣୀଙ୍କ ସ୍ୱାର୍ଥକୁ ଆଖି ଆଗରେ ରଖି ତଳିଆ ଅଫିସରମାନେ ଠିକ୍ ଭାବେ ଶାସନ କାର୍ଯ୍ୟ ପରିଚାଳନା କରୁଛନ୍ତି କି ନାହିଁ ତା'ର ତଦାରଖ ନିମିତ୍ତ ଗସ୍ତ କରୁ ଥିଲେ । ଏହି ଗସ୍ତର ଆୟୋଜନକୁ ସେତେବେଳେ ଶିବିରାୟୋଜନ କୁହାଗଲା ।

ଭାରତ ସ୍ୱାଧୀନ ହେଲା ପରେ ଇଂରେଜମାନଙ୍କ ସ୍ଥାନ ମନ୍ତ୍ରୀମାନେ ଦଖଲ କଲେ । ସେମାନେ ହେଲେ ସର୍ବେସର୍ବା । ସମଗ୍ର ଶାସନ ସେମାନଙ୍କ ହାତ ମୁଠାରେ ରହିଲା । ଗଣତନ୍ତ୍ର ନାଁରେ ସେମାନେ ବିଶାଳ କ୍ଷମତାର ଅଧିକାରୀ ହୋଇ ଥିବାରୁ

ଏବଂ ପୁଲିସ, ପ୍ରଶାସନ ପ୍ରଭୃତି ସେମାନଙ୍କ ଅକ୍ତିଆରରେ ଥିବାରୁ ସେମାନେ ଯାହା ଚାହାଁନ୍ତି ତାହା କଲେ । ଯୋଉଠି କ୍ଷମତା ଯେତେ ବେଶି ତାର ଅପବ୍ୟବହାର ମଧ୍ୟ ସେତିକି ବେଶି । ଗଣତନ୍ତ୍ରରେ କ୍ଷମତାର ବ୍ୟବହାର ଓ ଅପବ୍ୟବହାର ଭିତରେ ପାର୍ଥକ୍ୟ ଏତେ କମି ଗଲାଣି ଯେ ସେ ଦୁଇଟି ଭିତରେ ପାର୍ଥକ୍ୟ ବାରିବା କଷ୍ଟ ହେଇ ପଡୁଛି । ତେଣୁ ଏବର ଶିବିରାୟୋଜନ ସେ କାଳର ମହାରାଜାଙ୍କ ଶିବିରାୟୋଜନକୁ ବଳି ପଡ଼ିଛି ।

ଏବେ ରାଷ୍ଟ୍ରପତି ଦିଲ୍ଲୀରୁ ଯାଇ ହାଇଦ୍ରାବାଦରେ ଅଛନ୍ତି । ସେଠି ତାଙ୍କ ପାଇଁ ଆଉ ଗୋଟିଏ ରାଷ୍ଟ୍ରପତି ଭବନ ଅଛି । ବେଳେ ବେଳେ ରାଷ୍ଟ୍ରପତି ସେଠାକୁ ଯାଇ ଅବସ୍ଥାନ କରନ୍ତି । ଠିକ୍ ସେମିତି ଆଉ ଗୋଟିଏ ରାଷ୍ଟ୍ରପତି ଭବନ ମଧ୍ୟ ସିମଳାରେ ଅଛି । ମନ ହେଲେ ରାଷ୍ଟ୍ରପତି ସେଠିକୁ ମଧ୍ୟ ଯାଇ କିଛି ଦିନ ଅବସ୍ଥାନ କରନ୍ତି । ଏବେ ରାଷ୍ଟ୍ରପତିଙ୍କ ପାଇଁ ହାଇଦ୍ରାବାଦସ୍ଥ '*ରାଷ୍ଟ୍ରପତି ନିଲୟମ*'ରେ ଯୋଉ ଆୟୋଜନ ହେଉଛି, ହେଉଥିବ ତାହା ମଧ୍ୟ ଶିବିରାୟୋଜନ । ସମଗ୍ର ଆନ୍ଧ୍ରପ୍ରଦେଶ ବର୍ତ୍ତମାନ କମ୍ପୁଥିବ । ରାଷ୍ଟ୍ରପତିଙ୍କ ରହଣି ଖେଳ କଥା ନୁହେଁ । ସମଗ୍ର ପ୍ରଶାସନ ଏବେ ସେଇ ରାଷ୍ଟ୍ରପତି ନିଳୟମର ଚାରି ପାଖେ ବୁଲୁଥିବ । କାରଣ ରାଷ୍ଟ୍ରପତି ତ ଆଉ ସେଠି ଯାଇ କେବଳ ପ୍ରାସାଦରେ ରହିବେନି । ସେ ସମଗ୍ର ରାଜ୍ୟ ଗସ୍ତ କରି ପାରିବେ । ଶାସନ ବିଷୟରେ ତାଙ୍କର ପ୍ରତ୍ୟକ୍ଷାନୁଭୂତି ହେବ । ଗୋଟିଏ ଜନମଙ୍ଗଳ ରାଷ୍ଟ୍ରରେ ତାହା ହିଁ ନୀତି ।

ଏଣେ ବିଧି ଅନୁସାରେ ଶାସନର ପ୍ରତ୍ୟେକ ଆଦେଶ ନିର୍ଦ୍ଦେଶ ରାଷ୍ଟ୍ରପତିଙ୍କ ନାଁରେ ଚାଲିବ । ତାଙ୍କ ଦସ୍ତଖତ ନ ହେଲେ କୌଣସି ନିର୍ଦ୍ଦେଶନାମା ପ୍ରକାଶ ପାଇବନି । କିନ୍ତୁ ସବୁ ନିର୍ଦ୍ଦେଶନାମା ଏବଂ ତତ୍‌ସମ୍ପର୍କୀୟ ଫାଇଲ୍ କାଗଜପତ୍ର ଦିଲ୍ଲୀରେ ତିଆରି ହୁଏ । ରାଷ୍ଟ୍ରପତି ଯଦି ମାସଟିଏ ହାଇଦ୍ରାବାଦରେ ରହନ୍ତି ତେବେ ଅନୁମାନ କରା ଯାଇପାରେ ଦୈନିକ କେତେ ଲୋକ ଦିଲ୍ଲୀରୁ ହାଇଦ୍ରାବାଦ ଉଡ଼ାଜାହାଜରେ ଯାଇ ରାଷ୍ଟ୍ରପତିଙ୍କ ଦସ୍ତଖତ ଆଣୁଥିବେ । ଦିନକୁ କେତେ ଟେଲିଫୋନ୍ , ଫ୍ୟାକସ୍ ଇତ୍ୟାଦିରେ ଖର୍ଚ୍ଚ ହେଉଥିବ ଏବଂ ଏଥିପାଇଁ କେତେ ଲୋକ ଟୁର କରୁଥିବେ ସେ କଥା ମଧ୍ୟ ଅନୁମାନ କରା ଯାଇପାରେ ।

ଭାରତ ପରି ଏପରି କେଉଁ ଗଣତନ୍ତ୍ର ଅଛି ଯେ ସେଠି ରାଷ୍ଟ୍ର ମୁଖ୍ୟଙ୍କର ତିନି ତିନିଟା ବିଶାଳ ପ୍ରାସାଦ ଅଛି ? ଏବଂ କେଉଁଠି ଏହି ପ୍ରାସାଦଗୁଡ଼ିକର ରକ୍ଷଣାବେକ୍ଷଣ ପାଇଁ ବର୍ଷକୁ ଶହ ଶହ କୋଟି ଟଙ୍କା ଖର୍ଚ୍ଚ ହେଉଛି ? ଇଂଲଣ୍ଡର ରାଣୀ ସେଠାକାର ଗଣତନ୍ତ୍ରର ମୁଖ୍ୟ । ଆମେ ତାଙ୍କଠୁ ଶିଖି ଆମ ସମ୍ବିଧାନ ତିଆରି କରିଚୁଁ । କିନ୍ତୁ ସେଠାକାର ରାଣୀ ଏବେ ଆୟକର ଦେଉଛନ୍ତି ଏବଂ ତାଙ୍କ ପ୍ରାସାଦର ମରାମତି ବା ରକ୍ଷଣାବେକ୍ଷଣ ପାଇଁ ପ୍ରାସାଦକୁ ଦେଖିବାକୁ ଆସୁଥିବା ଦୈନିକ ହଜାର ହଜାର ଦର୍ଶକଙ୍କ ଠାରୁ ଟିକସ ସୂତ୍ରରେ ଅର୍ଥ ଆଦାୟ କରା ଯାଉଛି । ଆମେ ଦେଶରେ ସେ କଥା ହୁଏ

ନାହିଁ । କାରଣ ଆମେ ଗଣତନ୍ତ୍ରକୁ ସମ୍ମାନ ଦେଉ ଏବଂ ଗଣତନ୍ତ୍ରର ମୁଖ୍ୟଙ୍କୁ ମଧ୍ୟ ସମ୍ମାନ ଦେଉଁ । ଯାହାଙ୍କୁ ଆମେ ସମ୍ମାନ ଦେଉଁ ସେ ଆମ ଠାରୁ ସବୁ ମାଗଣାରେ ପାଇବାର ହକ୍‌ଦାର । ଅନ୍ୟ ଅର୍ଥରେ ଗଣତନ୍ତ୍ରରେ ଯିଏ ଯେତେ ମାଗଣାରେ ଖାଇବାର, ପାଇବାର ଦାବି ହାସଲ କରି ପାରିଲା ସେ ସେତିକି ସମ୍ମାନିତ ବ୍ୟକ୍ତି ବୋଲି କୁହାଯିବ । ମନ୍ତ୍ରୀ / ମୁଖ୍ୟମନ୍ତ୍ରୀମାନେ ଯେତେବେଳେ ଗସ୍ତରେ ଯାଆନ୍ତି ସେମାନେ କ'ଣ ହାତରୁ ପଇସା ଖର୍ଚ୍ଚ କରନ୍ତି ? ଗୋଟିଏ କଥା ମନେ ପଡୁଚି । ଥରେ ମୁଖ୍ୟମନ୍ତ୍ରୀଙ୍କ ଗସ୍ତ ପାଇଁ ଜଳେଶ୍ୱରରେ ଶିବିରାୟୋଜନ ଦାୟିତ୍ୱରେ ଥାଆନ୍ତି ଜଣେ ସହକାରୀ ଯୋଗାଣ ଅଫିସର । ମୁଖ୍ୟମନ୍ତ୍ରୀଙ୍କ ଆସିବାର ପ୍ରାୟ ତିନିଘଣ୍ଟା ପୂର୍ବରୁ ତାଙ୍କ ଠାକୁ ବାର୍ତ୍ତା ଆସିଲା ଯେ ମୁଖ୍ୟମନ୍ତ୍ରୀ ଖାଇ ସାରିଲା ପରେ ପ୍ରାୟ ତିନିଶହ ଗ୍ରାମ୍‌ର ଛେନା ଖାଆନ୍ତି । ଯୋଗାଣ ଅଫିସରଙ୍କ ମୁଣ୍ଡରେ ବଜ୍ର ପଡ଼ିଲା । ସୁବର୍ଣ୍ଣରେଖାରେ ପ୍ରବଳ ବଢ଼ି । ଛେନା କେଉଁଠୁ ମିଳିବ ? ଟ୍ରେନ୍‌ରେ ଖଡଗ୍‌ପୁର ଯାଇ ଛେନା ଆଣିଲା ବେଳକୁ ମୁଖ୍ୟମନ୍ତ୍ରୀଙ୍କ ଲଞ୍ଚ ସରିଥିବ । ଟ୍ରେନ୍‌କୁ ମଧ ବିଶ୍ୱାସ ନାହିଁ । ତେଣୁ ସେ ତାଙ୍କର ଏମର୍‌ଜେନସୀ ପାୱାର ବ୍ୟବହାର କରି ରିଲିଫ୍ କାମ ପାଇଁ ଯାଇଥିବା ଲଞ୍ଚକୁ ତାରବାର୍ତ୍ତା ପଠାଇ ପାଖ ଗାଁରୁ ଛେନା ସଂଗ୍ରହ କରି ଆଣିବାକୁ ଆଦେଶ ଦେଲେ । ମୁଖ୍ୟମନ୍ତ୍ରୀଙ୍କ ଖାଇବା ପୂର୍ବରୁ ପୂର୍ତ୍ତ ବିଭାଗ ଲୋକେ ପାଞ୍ଚ କିଲୋ ଛେନା ଧରି ପହଞ୍ଚି ଥିଲେ । ଯାକୁଇ କୁହାଯାଏ ଏବର ଶିବିରାୟୋଜନ ବା କ୍ୟାମ୍ପ ଆରେଞ୍ଜମେଣ୍ଟ୍ ।

ପୁଲିସ ବିଭାଗର ଏହି କ୍ୟାମ୍ପ ଆରେଞ୍ଜମେଣ୍ଟ୍ ଆମର ସମଗ୍ର ବିଧି ବ୍ୟବସ୍ଥାର ଗୋଟିଏ କ୍ଷୁଦ୍ର ଅଂଶମାତ୍ର । ଏହା ଖାଲି ଓଡ଼ିଶାରେ ନାହିଁ ଭାରତର ସବୁଠି ଅଛି ଏବଂ ସବୁ ବିଭାଗରେ ଅଛି । ଯେତେ କେନ୍ଦ୍ରୀୟ ପୁଲିସ ସଂସ୍ଥା ଅଛି ଏ ବ୍ୟବସ୍ଥା ସବୁଥିରେ ଅଛି । ରହିବା ସ୍ୱାଭାବିକ ମଧ୍ୟ । ତେବେ ଶିଳ୍ପ ନିରାପତ୍ତା ବାହିନୀରେ ଏ ବ୍ୟବସ୍ଥା ଅତି ଉତ୍କଟ ଆକାର ଧାରଣ କରିଛି । ପୁଲିସ ବିଭାଗରେ ଯାହା ହୁଏ ସି.ଆଇ.ଏସ୍.ଏଫ୍.ରେ ତାର ଅନେକ ଗୁଣ ବେଶି । ବେଳେ ବେଳେ ସୀମାଟପି ଅନେକ ଦୂର ପଳେଇ ଯାଏ । ପୂରାପୂରି ବାଦଶାହୀ କାରବାରକୁ ମଧ୍ୟ ଟପି ଯାଇଥାଏ । ରାଜା ଆସନ୍ତି ସାଥୀରେ ତାଙ୍କର ପାତ୍ର ମନ୍ତ୍ରୀ, ସାଙ୍ଗ ସାଥୀ, ଭାଇ, ବନ୍ଧୁ, ନାତି ନାତୁଣୀ, ନାଚ ମାଷ୍ଟର, ଗୀତ ମାଷ୍ଟ୍ରାଣୀ କେହି ବାଦ୍ ଯାଆନ୍ତିନି । ସରକାରୀ କାମ ସାଥିରେ ବେସରକାରୀ କାମ-ମାନେ ବୁଲାବୁଲି, ବନ୍ଧୁ ସନ୍ଦର୍ଶନ, ପିତୃଶ୍ରାଦ୍ଧ, ପୁତୁରା ବ୍ରତ ଉପନୟନ ଇତ୍ୟାଦି ଇତ୍ୟାଦି ଯେତେ କାମ ଥାଏ ସବୁ ସେତିକି ବେଳେ ସରେ । 'ଗିଫ୍ଟ' ଥାଏ ଶେଷ ପର୍ବକୁ ।

ତେବେ ଏସବୁ ସେଠି କେହି ହାତରୁ ଖର୍ଚ୍ଚ କରନ୍ତି ନାହିଁ । ପବ୍ଲିକ୍ ସେକ୍ଟର ତାଙ୍କର ରତ୍ନଭଣ୍ଡାର ଏଥିପାଇଁ ସବୁବେଳେ ଉନ୍ମୁକ୍ତ କରି ରଖିଥାଆନ୍ତି । ସେଠି କ୍ୟାମ୍ପ ଆରେଞ୍ଜମେଣ୍ଟର ବିଶାଳ ଗର୍ଭ ଭିତରେ ଯେତେ ଯାହା ପଡ଼ିଲେ ମଧ୍ୟ ଜଣା ପଡ଼େନି ।

ମଧ୍ଯ ଦଣ୍ଡବତେ କହିଥିଲେ 'ପ୍ରାଇଭେଟ୍ ସେକ୍ଟର' ମାନେ ପ୍ରାଇଭେଟ୍‌ଲି ଖାଇବା ଏବଂ 'ପବ୍ଲିକ୍ ସେକ୍ଟର' ମାନେ ପବ୍ଲିକ୍‌ଲି ଖାଇବା । ଏଥିରେ ଲୁଚାଚୋରାର ଆବଶ୍ୟକତା ନାହିଁ । ସବୁଠି 'ଶିବିରାୟୋଜନ' ଦିନକୁ ଦିନ ଉତ୍କଟ ଆକାର ଧାରଣ କରିବାର ଏକମାତ୍ର କାରଣ ହେଲା ତା' ସହିତ ସରକାର ସରକାରୀ କର୍ମଚାରୀଙ୍କର 'ବାର୍ଷିକ ଗୁପ୍ତ ଚରିତ୍ର ଲିପି'କୁ ଯୋଡ଼ି ଦେଇଛନ୍ତି । ଶିବିରାୟୋଜନ ଯେମିତି ହେବ ବାର୍ଷିକ ଚରିତ୍ର ଲିପି ସେହିପରି ଲେଖାଯିବ । ପ୍ରକୃତ କାମ ସହିତ ତାର ମୋଟେ ସମ୍ପର୍କ ନ ଥାଏ । ଭଲ ଶିବିରାୟୋଜନ କରି ପାରୁଥିବା ଲୋକ ଫିଲଡ୍‌କୁ କେବେ ଯାଇ ନ ଥିଲେ ମଧ୍ୟ 'ରାଷ୍ଟ୍ରପତି ପୁରସ୍କାର' ପାଆନ୍ତି ଏବଂ ଗୋଛା ଗୋଛା ପ୍ରଂଶସାପତ୍ର ପାଇ ଗଣ୍ଡା ଗଣ୍ଡା ଲୋକଙ୍କୁ ପଛରେ ପକେଇ ଉପରକୁ ଉଠି ଯାଆନ୍ତି ।

ଶିବିରାୟୋଜନର କଳଙ୍କିତ ବିଧି ବ୍ୟବସ୍ଥା ଖାଲି ଓଡ଼ିଶାରେ ନାହିଁ । ଓଡ଼ିଶା ବାହାରେ ଯା ଅପେକ୍ଷା ଅନେକ ବେଶି । ହୁଏତ ଚିନ୍ତା ମଧ୍ୟ କରି ହେବନି । ତେଣୁ ଓଡ଼ିଶା ପୁଲିସରେ କିଏ କେତେ ପଇଡ଼ କି କୋକାକୋଲା ପିଇଲା କଥା ସମ୍ବାଦ ପତ୍ରରେ ପଢ଼ିଲା ମାତ୍ରେ ସେମାନେ ହସି ଦେଇଥିବେ । କହିଥିବେ, ପେଜଖିଆ ଓଡ଼ିଆ ଆଉ କୋଉ ହିସାବ ଦେଖନ୍ତେ ଯେ ? ଆମେ ତ ଦୈନିକ ରମ୍, ହୁଇସ୍କି ଓ ଭୋଡ୍‌କା ଛଡ଼ା କଥାବାର୍ତ୍ତା କରୁନା ।

ଏ ସବୁ ଅବଶ୍ୟ ବଡ଼ କଥା ନୁହେଁ । ସର୍ବଭାରତୀୟ ସ୍ତରରେ ଦେଖିବାକୁ ଗଲେ କିଏ କେତେ ପଇଡ଼ ପିଇଲା କି କାହାକୁ ୨୦ ଟଙ୍କା ଅପେକ୍ଷା ଅଧିକ ମୂଲ୍ୟର ଖାଇବାକୁ ଦିଆଗଲା, ସେଇଟା ବଡ଼ କଥା ନୁହେଁ । ନିହାତି ଛୋଟ ଓ ମାମୁଲି କଥା ବୋଲି ନାକ ମଧ୍ୟ ଟେକି ଦିଆ ଯାଇପାରେ । କିନ୍ତୁ ବଡ଼ କଥା ହେଉଛି ଯେ ଏ ଘୃଣ୍ୟ ପ୍ରଥା କଥା ଏବେ ପଦାକୁ ଆସିଛି ଏବଂ ସାଧାରଣରେ ଗୋଟାଏ ଆଲୋଚନାର ବିଷୟ ହୋଇଛି । ପୁରୀ ମନ୍ଦିରରେ ଦେବଦାସୀ ଯେମିତି ଠାକୁରଙ୍କୁ ନିଜକୁ ସମର୍ପି ଦିଏ, ଏଠି ସେମିତି ସରକାରୀ କର୍ମଚାରୀ ତାର ଜିଅନ୍ତା ଠାକୁର ପାଖରେ ନିଜକୁ ସମର୍ପଣ କରେ କେବଳ ସ୍ୱାର୍ଥ ଲାଳସାରେ ଏବଂ ଗୁପ୍ତ ଚରିତ୍ର ଲିପିର ଭୟରେ । ମାନବିକ ମୂଲ୍ୟବୋଧର ଏକ ଅଭାବନୀୟ ସ୍ଖଳନ ତାର ଏକମାତ୍ର କାରଣ । ତାକୁ ଆଇନ କରି ରୋକି ହେବ ନାହିଁ । କେବଳ ଆତ୍ମସଚେତନତା ହିଁ ତାକୁ ରୋକି ପାରିବ । ■

(ସମ୍ବାଦ - ୧୨.୧୧.୯୪)

# ଏଇ ଶୁଣ, ଭୁବନେଶ୍ୱର କାନ୍ଦୁଚି

ସ୍ୱାଧୀନ ଭାରତରେ ଦୁଇଟା ରାଜଧାନୀ ତିଆରି ହେଲା । ଗୋଟିଏ ଚଣ୍ଡୀଗଡ଼ ଓ ଅନ୍ୟଟି ଭୁବନେଶ୍ୱର । ଦୁଇଟି ସ୍ୱତନ୍ତ୍ର ଯୋଜନା ତିଆରି ହେଲା । ସ୍ୱତନ୍ତ୍ର ଭାବେ ଅର୍ଥ ମଞ୍ଜୁର ହେଲା । ଗଢ଼ି ଉଠିଲା ଦୁଇଟି ନୂଆ ସହର । ସ୍ୱାଧୀନ ଭାରତର ଏହା ହିଁ ପ୍ରଥମ ନବ ନିର୍ମାଣ । ପଚାଶ ବର୍ଷ ବି ପୂରି ନାହିଁ । କିନ୍ତୁ ଏବେ ଦୁଇଟାକୁ ଦେଖନ୍ତୁ । ଗୋଟିଏ କେମିତି ଅନନ୍ତ ଯୌବନର ଅଧିକାରୀ ହେଇ ବଢ଼ନ୍ତା ଝିଅ ପରି ବଢ଼ିବଢ଼ି ଚାଲିଛି, ଏବଂ ଅନ୍ୟଟି କ୍ଷୟରୋଗୀ ପରି ଖୁଁ ଖୁଁ ହେଉଛି । ବାର୍ଦ୍ଧକ୍ୟ ଆସି ଯାଇଚି । ସରି ଆସିଲାଣି ସମୟ ।

କୁହାଯାଉଛି ଭୁବନେଶ୍ୱରର ପ୍ରଥମ ଓ ପ୍ରଧାନ ଶତ୍ରୁ ସେଠାକାର ବିମାନ ବନ୍ଦର । ସହର ମଝିରେ ବିମାନ ବନ୍ଦରଟିଏ କୁତ୍ରାପି ଦେଖାଯାଏ ନାହିଁ । ଅନେକ କାରଣରୁ ସହର ମଝିରେ ବିମାନ ବନ୍ଦର ହୁଏନାହିଁ । ବିମାନ ବନ୍ଦର ଚାରି ପାଖରେ ମଧ କୋଠାବାଡ଼ି ତ ଦୂରର କଥା ଜନ ବସତି ମଧ୍ୟ ରଖାଯାଏ ନାହିଁ । ଏଇ ଅଳ୍ପଦିନ ତଳେ ଋଷିଆର ସାଇବେରିଆ ଅଞ୍ଚଳରେ ଗୋଟିଏ ବିମାନ ଉପରକୁ ଉଠୁ ଉଠୁ ରନ୍‌ୱେ ପାଖରେ ଥିବା ସୁଉଚ୍ଚ ଅଟ୍ଟାଳିକା ଦେହରେ ଧକ୍କା ଖାଇବା ଫଳରେ ଘରଦ୍ୱାର ଭାଙ୍ଗି ପକାଇବା ସହିତ ବହୁ ଜନଜୀବନ ନଷ୍ଟ ହେଲା । ସେଥିରେ ସାରା ପୃଥିବୀରେ ବିମାନ ବନ୍ଦରଗୁଡ଼ିକର ସୁରକ୍ଷା ବ୍ୟବସ୍ଥା ପ୍ରତି ଆଖି ବୁଜି ଦିଆ ଯାଉଥିବାରୁ ଆନ୍ତର୍ଜାତିକ ବିମାନ ବନ୍ଦର କର୍ତ୍ତୃପକ୍ଷ କ୍ଷୋଭ ପ୍ରକାଶ କରିଛି ।

ଭୁବନେଶ୍ୱର ବିମାନ ବନ୍ଦର ଚାରିପଟେ ସୁରକ୍ଷା ବ୍ୟବସ୍ଥା ମୋଟେ ନାହିଁ । ସହରର ମଧ୍ୟସ୍ଥଳରେ ଘନ ଜନ ବସତି ଥିବାରୁ ଏବଂ ଏହି ଅବସ୍ଥାରେ ବିମାନ ବନ୍ଦରର ସମ୍ପ୍ରସାରଣ କରି ତାକୁ ଆନ୍ତର୍ଜାତୀୟ ସ୍ତରକୁ ଅଣା ଯାଉଥିବାରୁ ସମଗ୍ର ସହର ପ୍ରତି ବିପଦ ଦୁଇଗୁଣ ବଢ଼ି ଯାଇଛି । ଗୋଟିଏ ଦିଗରେ ବିମାନ ବନ୍ଦରର ସମ୍ପ୍ରସାରଣ ଚାଲିଥିବା ବେଳେ ଅନ୍ୟ ଦିଗରେ ବିମାନ ବନ୍ଦରକୁ ଲାଗି ସୁଉଚ୍ଚ ଅଟ୍ଟାଳିକା ମଧ୍ୟ ଗଢ଼ି ଉଠୁଛି । ନଗର ଉନ୍ନୟନ ବିଭାଗର ଏଥିପ୍ରତି କୌଣସି କର୍ତ୍ତବ୍ୟ ଥିବାପରି ମନେ ହେଉନାହିଁ । ସେମାନଙ୍କର ଏ ସବୁ ପ୍ରତି କିଛି ଦାୟିତ୍ୱ ଅଛି ବୋଲି ଜଣାପଡୁ ନାହିଁ । ଗୋଟିଏ ଦିଗରେ ବିମାନ ବନ୍ଦରର ସମ୍ପ୍ରସାରଣ ଏବଂ ଅନ୍ୟ ଦିଗରେ କୋଠାବାଡ଼ିର ସମ୍ପ୍ରସାରଣ । ଏ ଉଭୟର ପ୍ରତିଯୋଗିତା ସହରର ମୃତ୍ୟୁଯନ୍ତାକୁ ଅଧିକ ଶକ୍ତିଶାଳୀ କରି ଦେଉଛି ।

ବିମାନ ବନ୍ଦରର ସମ୍ପ୍ରସାରଣ ପରେ ସେଠାକୁ ବୃହଦାକାର ବିମାନ ମାନ ଆସିବ । ଏସବୁ ବିମାନଗୁଡ଼ିକ ଆସିଲେ ବିଶେଷ କରି ସେ ଗୁଡ଼ିକ ଆକାଶକୁ ଉଠିବା ଓ ଓହ୍ଲେଇବା ସମୟରେ ଯେଉଁ ପ୍ରଚଣ୍ଡ ଶବ୍ଦ ସୃଷ୍ଟି ହେବ ତାହା ଏବର ଶବ୍ଦ ପ୍ରଦୂଷଣକୁ ହଜାରେ ଗୁଣ ଅଧିକ କରିବା ସଙ୍ଗେ ସଙ୍ଗେ ସେତେବେଳେ ବାୟୁମଣ୍ଡଳରେ ଯେଉଁ ଚାପ ସୃଷ୍ଟି ହେବ ତାର ପ୍ରଭାବ କୋଠାବାଡ଼ି, ଗଛ ପତ୍ର ସହିତ ମଣିଷ ଓ ଜୀବଜନ୍ତୁ ଉପରେ ମଧ୍ୟ ପଡ଼ିବ । ସେତେବେଳେ ଏକ ଭୟଙ୍କର ଅବସ୍ଥା ସୃଷ୍ଟି ହେବ । କୁହାଯାଉଛି ଏ ଶବ୍ଦର ପ୍ରଭାବ ଆମର ଐତିହାସିକ ଲିଙ୍ଗରାଜ ମନ୍ଦିର ଉପରେ ପଡ଼ିଲେ ତାର ଧ୍ୱଂସ ସାଧନ ଆଉ ବେଶି ଡେରି ହେବନାହିଁ । ଠିକ୍ ସେମିତି ସେ ଶବ୍ଦର ପ୍ରଭାବ ନନ୍ଦନକାନନରେ ଥିବା ଜୀବଜନ୍ତୁମାନଙ୍କ ଉପରେ ମଧ୍ୟ ପଡ଼ିବ ଏବଂ ସେମାନଙ୍କ ପ୍ରାକୃତିକ ପରିବେଶ ନଷ୍ଟଭ୍ରଷ୍ଟ ହେବ । ସେ ଶବ୍ଦର ପ୍ରଭାବରୁ ଖଣ୍ଡଗିରିର ଗୁମ୍ଫାଗୁଡ଼ିକ ମଧ୍ୟ ବର୍ତ୍ତିବେ ନାହିଁ । କାରଣ ତାହା ବିମାନ ବନ୍ଦରର ରନ୍‌ୱେଠାରୁ ମୋଟେ ବେଶି ଦୂର ନୁହେଁ । ଶହଶହ ବର୍ଷ ଧରି ଯୋଉ ଅମୂଲ୍ୟ ଐତିହାସିକ ସମ୍ପଦଗୁଡ଼ିକ ଆମ ଜାତିର ଗୌରବ ହୋଇ ରହି ଆସିଥିଲା ତାର ଧ୍ୱଂସ ପାଖେଇ ଆସିବ । ଆମ ଆଗରେ ଆମ ଇତିହାସ ଲୁଚି ଯିବ ।

ଆଉ ବର୍ଷେ ଦୁଇ ବର୍ଷ ପରେ ଏହି ବିମାନ ବନ୍ଦରର କାର୍ଯ୍ୟକାରିତା ବହୁଗୁଣ ବଢ଼ିଯିବ । ତାହା ଫଳରେ ଦିନରାତି ୨୪ ଘଣ୍ଟା ପ୍ରଚୁର ଶବ୍ଦ ପ୍ରଦୂଷଣ ଓ ତତ୍‌ଜନିତ ବାୟୁମଣ୍ଡଳୀୟ ଚାପ ମଣିଷମାନଙ୍କ ଉପରେ, ବିଶେଷ କରି ଶିଶୁ ଓ ବୃଦ୍ଧମାନଙ୍କ ଉପରେ କିପରି ଭାବରେ ପ୍ରଭାବ ପକାଇବ ତାହା ଅନୁମାନ କରା ଯାଇପାରେ । ସେମାନଙ୍କ ରାତ୍ରି ଅନିଦ୍ରାଜନିତ ବିଭିନ୍ନ ରୋଗ ଦେଖା ଦେବା ସ୍ୱାଭାବିକ । ସବୁଠାରୁ ବେଶି ଯନ୍ତ୍ରଣା ଭୋଗିବେ ହାସପାତାଲରେ ଥିବା ରୋଗୀମାନେ । ସେମାନଙ୍କର ବଞ୍ଚିବାର ଆଶା ସୁଦୂର ପରାହତ ହେବ । ସ୍କୁଲ ଓ କଲେଜମାନଙ୍କରେ ପାଠପଢ଼ା ପ୍ରହସନରେ ପରିଣତ ହେବ । କାରଣ ପ୍ରତି ପାଞ୍ଚ ମିନିଟରେ ଗୋଟିଏ ବିମାନ ଉଠିବ ଓ ଅନ୍ୟଟି ଅବତରଣ କରିବ ।

ଏବେ ଦ୍ୱିତୀୟ କଥାକୁ ଆସିବା । କୌଣସି ଯୋଜନା ନ ଥାଇ ଭୁବନେଶ୍ୱର ଚାରିପଟେ ଯେପରି ହୁ ହୁ କୋଠାବାଡ଼ି ତିଆରି ଚାଲିଛି, ସରକାରୀ କର୍ତ୍ତୃପକ୍ଷ ଏବଂ କଣ୍ଟ୍ରାକ୍ଟରଙ୍କ ସଲାସୂତ୍ରରେ ଯେପରି ନଗର ଉନ୍ନୟନର ନିୟମାବଳୀକୁ ଆଖି ବୁଜି ଦିଆ ଯାଉଛି ତାହା ଦେଖିଲେ ଯେ କେହି ବିସ୍ମିତ ହେବ । ଗୋଟିଏ ଦିଗରେ ବେଆଇନ ଭାବରେ ବିଲ୍ଡର୍‌ମାନେ ପାଞ୍ଚସାତ ମହଲା ଫ୍ଲାଟ୍ ନିର୍ମାଣ କରୁଛନ୍ତି । ଅନ୍ୟ ଦିଗରେ ବେପରୱା ଭାବରେ ବସ୍ତି ଓ ଝୁମ୍ପୁଡ଼ି ମଧ୍ୟ ତିଆରି ଚାଲିଛି । ଗାଁ ଗହଳିରୁ ହଜାର ହଜାର ସଂଖ୍ୟାରେ ଲୋକମାନେ ନିଜର ଜୀବିକା ନିର୍ବାହ ପାଇଁ ପଳାଇ ଆସିବାକୁ ବାଧ୍ୟ ହେଉଛନ୍ତି । ଏ ସମସ୍ତଙ୍କ ପାଇଁ ନାଗରିକ ସୁବିଧା ସୁଯୋଗ କେବେବି ସମ୍ଭବ

ନୁହେଁ । ସମସ୍ତେ କିନ୍ତୁ ଭୂତଳ ଜଳ ଉପରେ ନିର୍ଭର କରନ୍ତି । ଜଳ ବିଜ୍ଞାନୀମାନେ କହନ୍ତି ଯେଉଁ ହାରରେ ଏହି ଜଳର ବ୍ୟବହାର ବଢ଼ୁଛି ସେଥିରେ ଆଉ କେତେଟା ବର୍ଷ ପରେ ଭୂତଳ ଜଳ ନିଃଶେଷ ହୋଇଯିବ । ଫଳରେ ଲକ୍ଷ ଲକ୍ଷ ଲୋକଙ୍କ ପାଇଁ ଏକ ସଙ୍କଟମୟ ଅବସ୍ଥା ସୃଷ୍ଟି ହେବ । ଲୋକଙ୍କ ଦୁର୍ଦ୍ଦଶା କିନ୍ତୁ ସେତିକିରେ ସରିବ ନାହିଁ । ନାଳ ନର୍ଦ୍ଦମାର ଯୋଜନା ନ ଥିବାରୁ ମଇଳା ସବୁ ମାଟି ତଳକୁ ଯାଇ ସେଇ ପାଣିରେ ମିଶି ଭୟଙ୍କର ରୋଗ ଜୀବାଣୁ ସୃଷ୍ଟି କରିବ ।

ଏବେ ତୃତୀୟ କଥା । ଭୁବନେଶ୍ବରର ରାସ୍ତାଘାଟର ଅବସ୍ଥା ଏପରି ଯେ ଭାରତର ଅନ୍ୟ କୌଣସି ରାଜଧାନୀ ବା ସେଇ ଜନସଂଖ୍ୟାର ସହରରେ ସେପରି ରାସ୍ତାଘାଟ ନଥିବ । କେବଳ ଜାତୀୟ ରାଜପଥଟିକୁ ଛାଡ଼ିଦେଲେ ଅନ୍ୟଗୁଡ଼ିକର ଅବସ୍ଥା ଅତ୍ୟନ୍ତ ଖରାପ । ଗୋଟିଏ ଦିଗରେ ରାସ୍ତା ଖରାପ ଥିଲାବେଳେ ଅନ୍ୟ ଦିଗରେ ଲୋକସଂଖ୍ୟା ଓ ଗାଡ଼ିଘୋଡା ମଧ୍ୟ ହୁ ହୁ ବଢ଼ି ଯାଉଛି । ଏହି ଗାଡ଼ି ସଂଖ୍ୟା ବୃଦ୍ଧି ଜନିତ ପ୍ରଦୂଷଣକୁ ରୋକିବା ପାଇଁ କୌଣସି ଚିନ୍ତା ଏଯାଏ ସରକାରଙ୍କ ମୁଣ୍ଡକୁ ଆସିନାହିଁ । ଯେଉଁ ହାରରେ ଗାଡ଼ି ଓ ଅନ୍ୟାନ୍ୟ ଗଢ଼ି ଉଠୁଥିବା କଳକାରଖାନାମାନଙ୍କ ଦ୍ଵାରା ପ୍ରଦୂଷଣ ଦିନକୁ ଦିନ ବଢ଼ୁଛି ସେଥିରେ ଆଉ କିଛି ଦିନ ପରେ ଭୁବନେଶ୍ବରର ଆକଶ ଦିନରାତି ଦୂଷିତ ବାୟୁରେ ଆଚ୍ଛାଦିତ ହୋଇ ରହିବ । ସେତେବେଳେ ଆମ ପାଇଁ ଆଉ ଏକ ଭୟାବହ ପରିସ୍ଥିତି ସୃଷ୍ଟି ହେବ । ଭାରତର ଅନ୍ୟାନ୍ୟ ବଡ଼ ବଡ଼ ସହରମାନଙ୍କରେ ଏ ପ୍ରକାର ଭୟାବହତାରୁ ରକ୍ଷା ପାଇବା ପାଇଁ ସରକାର ଅନେକ କାମ ଆରମ୍ଭ କଲେଣି । ଆମେ କିନ୍ତୁ ଏସବୁ ବିଷୟ ଏବେ ଚିନ୍ତା ମଧ୍ୟ କରିନାହୁଁ । 

(ସଂବାଦ- ୩.୧.୯୮)

# ଆଉ ଏକ କଳଙ୍କିତ ଅଧ୍ୟାୟ

ଗୋଟାଏ ବିଦେଶୀ ବିମାନ ଆମ ସହିତ ଶତ୍ରୁତା ଆଚରଣ କରୁଥିବା ଦେଶରୁ ଆମ ଦେଶକୁ ଉଡ଼ିଆସି ପଶ୍ଚିମବଙ୍ଗର ଏକ ଅଖ୍ୟାତ ଅଞ୍ଚଳରେ ବିମାନରୁ ବହୁ ପରିମାଣରେ ବିଦେଶୀ ଅସ୍ତ୍ରଶସ୍ତ୍ରମାନ ପାରାଚୁଟ ସାହାଯ୍ୟରେ ଖସେଇ ଦେଇ ଚାଲି ଯିବାର ଘଟଣା ଏବେ ଦେଶରେ ଶିହରଣ ସୃଷ୍ଟି କରିଛି । ଖବରରୁ ଜଣାପଡ଼ିଛି ଯେ ଏହି ବିଦେଶୀ ମାଲ ବାହୀ ବିମାନଟି (AN-26) ଗତ ଡ଼ିସେମ୍ବର ୧୭ ତାରିଖ ରାତିରେ ଭାରତ ସରକାରଙ୍କ ଅନୁମତି କ୍ରମେ ଆମ ଦେଶ ଭିତର ଦେଇ ଉଡ଼ି ଯାଉଥିଲା ବେଳେ ପଶ୍ଚିମବଙ୍ଗର ପୁରୁଲିଆ ଠାରେ ଯଥେଷ୍ଟ ପରିମାଣରେ ଅତି ଆଧୁନିକ ଅସ୍ତ୍ରଶସ୍ତ୍ର ଖସେଇ ଦେଇଥିଲା । ତା'ପରେ ବିମାନଟି କଲିକତାରେ କିଛି ସମୟ ରହି ସେଠୁ ପୁଣି ଥାଇଲାଣ୍ଡର ଫୁକେଟ୍ ସହରକୁ ଯାତ୍ରା କରିଥିଲା । ନିୟମାନୁସାରେ ବିମାନଟି ପୁଣି କଲିକତା ଦେଇ କରାଚି ଫେରି ଥାଆନ୍ତା । କିନ୍ତୁ ସେ ତା' ନ କରି ଫୁକେଟ୍‌ରୁ ମାନ୍ଦ୍ରାଜ ଯାଇ ସେଠୁ ବମ୍ବେ ଦେଇ କରାଚି ଫେରୁଥିଲା ବେଳେ ତାକୁ ୨୧ ତାରିଖ ରାତିରେ ବମ୍ବେଠାରେ ଓହ୍ଲେଇ ଦିଆ ଯାଇଥିଲା । ବିମାନରେ କୁଆଡ଼େ ୬ ଜଣ ବୈମାନିକ ଥିଲେ । ସେମାନଙ୍କ ଭିତରେ ଜଣେ ବମ୍ବେ ଠାରେ କର୍ତ୍ତୃପକ୍ଷଙ୍କ ଠାରୁ ଖସି ପଳେଇଥିଲେ ଏବଂ ଅନ୍ୟମାନେ ଧରା ପଡ଼ିଚନ୍ତି । ଅନ୍ୟ ଏକ ଖବରରୁ ପ୍ରକାଶ ଯେ ଏହି ବିମାନ କଲିକତାରେ ଥିଲା ବେଳେ ସେଥିରୁ ଜଣେ ବୈମାନିକ ଓହ୍ଲେଇ ଥିଲେ । ତାଙ୍କର ପତ୍ତା ମିଳିନାହିଁ ।

ଏପରି ଘଟଣା ଯେ ଏଇ ପ୍ରଥମ ଥର ଘଟିଚି ତା ନୁହେଁ । ଗତ ନଭେମ୍ବର ମାସରେ ମଧ୍ୟ ଏହି ବିମାନଟି ଥରେ ଆସି ଥିବାର ଜଣାପଡ଼ିଚି । ହୁଏତ ତା'ଆଗରୁ ମଧ୍ୟ କେତେଥର ଆସିଥିବ । ତେଣୁ ବିମାନଟି ନିୟମିତ ଏହି କାମରେ ବ୍ୟାପୃତ ଥିଲା ବୋଲି ଅନୁମାନ କରା ଯାଉଚି । ସେମାନଙ୍କ ଦୁର୍ଭାଗ୍ୟ ଯୋଗୁଁ ଏଥର ଧରା ପଡ଼ିଗଲେ । ପୁରୁଲିଆ ଠାରେ ରାସ୍ତା ଦୁର୍ଘଟଣାରେ ଗୋଟିଏ ଛୋଟ ପିଲାର ଯଦି ମୃତ୍ୟୁ ହୋଇ ନ ଥାଆନ୍ତା, ତାର ପ୍ରତିବାଦରେ ଯଦି ସେଠାରେ ଲୋକମାନେ ଜମା ହୋଇ ନ ଥାଆନ୍ତେ, ତେବେ ସେଠାକୁ ପୁଲିସ ଆସି ନ ଥାଆନ୍ତା କି ଅସ୍ତ୍ରଶସ୍ତ୍ରର ବିଶାଳକାୟ ପେଟି ଗୁଡ଼ିକ ଜବତ୍ ହୋଇପାରି ନ ଥାଆନ୍ତା ।

ତେବେ ଘଟଣା ଯାହା ହେଉନା କାହିଁକି ଏ ସମସ୍ତ ଘଟଣା ଯେ ସମଗ୍ର ପୁଲିସ ପ୍ରଶାସନ, ଆମର ସମସ୍ତ ପ୍ରକାର ଗୋଏନ୍ଦା ସଂସ୍ଥା ଏବଂ ସର୍ବୋପରି ଆମ ଦେଶ

ରକ୍ଷା ବିଭାଗର ଗୋଏନ୍ଦା ସଂସ୍ଥାମାନଙ୍କର ଚରମ ଅପାରଗତାର ସୂଚନା ଦିଏ, ଏଥିରେ ସନ୍ଦେହ ନାହିଁ । ସମସ୍ତେ ଯେମିତି ମହାନିଦ୍ରାରେ ଶୋଇଚନ୍ତି ।

ପ୍ରଶାସନ, ପୁଲିସ ଏବଂ ଗୋଏନ୍ଦା ସଂସ୍ଥାମାନଙ୍କର ବିଫଳତାର ଇତିହାସ ହିଁ ଆଜି ଭାରତର ଇତିହାସ । ତାକୁ ଆଉ ନୂଆ କରି ଲେଖିବାର ଆବଶ୍ୟକତା ନାହିଁ । ସ୍ୱାଧୀନତା ଠାରୁ ଯଦି ଇତିହାସର ପୃଷ୍ଠା ଓଲଟାଯାଏ ତେବେ ଏ ସବୁ ଜଳ ଜଳ କରି ଦେଖାଯିବ । ମେଜର ଜେନେରାଲ ଏମ୍.ଏଲ୍. ଗୋପ୍ଲି Indian Defence Review' ରେ "Failure of the Indin Intelligence since 1947" ଶୀର୍ଷକ ଏକ ସୁଦୀର୍ଘ ପ୍ରବନ୍ଧ ଲେଖି ସେଥିରେ ପାକିସ୍ତାନର ପ୍ରଥମ କାଶ୍ମୀର ଆକ୍ରମଣ ଠାରୁ ଆରମ୍ଭ କରି ୧୯୬୨ ରେ ଚୀନ ଆକ୍ରମଣ ପର୍ଯ୍ୟନ୍ତ କିପରି ଆମର ଗୋଏନ୍ଦା ସଂସ୍ଥାମାନେ ତାଙ୍କ କାର୍ଯ୍ୟରେ ବିଫଳ ହେବାରୁ ସେତେବେଳେ ଦେଶକୁ ବହୁ ମୂଲ୍ୟ ଦେବାକୁ ପଡ଼ିଥିଲା ତାହା ଉଲ୍ଲେଖ କରିଚନ୍ତି । ଏ ଦୁଇଟି ଘଟଣା ସେତେବେଳେ ଆମ ପ୍ରଶାସନକୁ ଯଥେଷ୍ଟ ଶିକ୍ଷା ଦେଇଥିଲେ ମଧ୍ୟ, ଏବଂ ସେଇ ଶିକ୍ଷାରୁ ଆମର ଗୋଏନ୍ଦା ସଂସ୍ଥାମାନଙ୍କୁ ପୁଣିଥରେ ନୂଆକରି ଗଠନ କରିବାର ପ୍ରତିଶ୍ରୁତି ଦେଶବାସୀଙ୍କୁ ଆମ ଜନନେତାମାନେ ଶୁଣାଇଥିଲେ ମଧ୍ୟ ପ୍ରକୃତରେ ତାହା କାର୍ଯ୍ୟକାରୀ ହୋଇନାହିଁ । ୧୯୬୫ ରେ ପୁଣି ଥରେ ଯେତେବେଳେ ପାକିସ୍ତାନ ଭାରତ ଆକ୍ରମଣ କଲା ସେତେବେଳେ ସୀମା ସେ ପାଖର ବିପୁଳ ସମର ସଜ୍ଜା ସଂପର୍କରେ ଆମ ପାଖରେ ଯଥେଷ୍ଟ ଖବର ନଥିଲା । ଏପରିକି ସେଇ ସମୟରେ ସବୁଠାରୁ ଦୁଃଖଦାୟକ ଘଟଣା ହେଲା ପୂର୍ବ ପାକିସ୍ତାନର ଗୋଟିଏ ଲଢୁଆ ବିମାନ ଭାରତ ଭିତରକୁ ଅନାୟାସରେ ପ୍ରବେଶ କରି ଖଡ଼ଗ୍‌ପୁର ଠାରେ ଥିବା ଆମର ଏକ ପ୍ରଧାନ ଯୁଦ୍ଧ ଘାଟି କୁଲେଇକୁଣ୍ଡାଠାରେ ବୋମା ପକାଇ ଆରାମରେ ଫେରି ଯାଇ ପାରିଲା । ଏଥିରୁ ଜଣାପଡ଼ିଲା ଯେ ଆମ ଗୋଏନ୍ଦା ସଂସ୍ଥାମାନେ ଯୁଦ୍ଧ ସମୟରେ ମଧ ସଜାଗ ରହନ୍ତି ନାହିଁ । ଜେନେରାଲ ଗୋପ୍ଲି ୧୯୮୪ ରେ 'ଅପରେସନ ବ୍ଲୁ ଷ୍ଟାର' ଏବଂ ୧୯୮୯ରେ ଶ୍ରୀଲଙ୍କାରେ IPKF (ଇଣ୍ଡିଆନ ପିସ୍ କିପିଂ ଫୋର୍ସ) ମୁତୟନ ପୂର୍ବରୁ କୌଣସି ପ୍ରକାର ଗୁପ୍ତ ତଥ୍ୟ ଆଗରୁ ମିଳି ପାରି ନଥିବା କଥା ତାଙ୍କ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି ।

କଥା ଏତିକିରେ ସରୁନାହିଁ ଏକଦା ଚୀନ ପକ୍ଷରୁ ଅରୁଣାଚଳର ପାର୍ବତ୍ୟ ଉପତ୍ୟକାରେ ଗୋଟାଏ ବିମାନ ଘାଟି ତିଆରି ହେବାର ଅନେକ ଦିନ ପରେ ଘଟଣାଟା ସରକାରଙ୍କ ନଜରକୁ ଆସିଥିଲା । ସେଥିପାଇଁ ସେତେବେଳେ ପାର୍ଲାମେଣ୍ଟରେ ତୁମୁଳ ଝଡ଼ ସୃଷ୍ଟି ହୋଇ ସରକାରଙ୍କ 'ର'(RAW) ଏବଂ ଅନ୍ୟାନ୍ୟ ଗୋଏନ୍ଦା ସଂସ୍ଥାକୁ ଏ ବିଫଳତା ପାଇଁ ଦାୟୀ କରା ଯାଇଥିଲା । ଗୋଟାଏ ବିଦେଶୀ ରାଷ୍ଟ୍ର ଆସି ଆମ ମାଟି ଉପରେ ବିମାନ ଘାଟି ତିଆରି କରି ସାରିଲାଣି ଅଥଚ ଆମେ କିଛି ଜାଣୁଁନା ! ଏହାଠାରୁ

ଦୁର୍ଭାଗ୍ୟର କଥା ଆଉ କ'ଣ ଥାଇ ପାରେ ? ସରକାର ସେତେବେଳେ ମଧ୍ୟ ପ୍ରତିଶ୍ରୁତି ଦେଇଥିଲେ ଯେ ତାଙ୍କ ଗୋଏନ୍ଦା ସଂସ୍ଥାକୁ ସେ ଏଣିକି ଦୃଢ଼ କରିବେ । କିନ୍ତୁ ହେଲା ନାହିଁ । ରାଜୀବ ଗାନ୍ଧୀଙ୍କୁ ଶ୍ରୀଲଙ୍କାରେ ହତ୍ୟା କରିବାର ଷଡ଼ଯନ୍ତ୍ର ଆମର 'ର' ବିଭାଗ ମୋଟେ ଜାଣି ନ ଥିଲେ । ଏପରିକି ଆମେରିକାରେ ମଧ୍ୟ ଥରେ ତାଙ୍କୁ ହତ୍ୟା କରିବାର ଚକ୍ରାନ୍ତକୁ ଆମ ଗୋଏନ୍ଦାମାନେ ଜାଣିବା ପୂର୍ବରୁ ସେଠାକାର ପୁଲିସ ପଣ୍ଡ କରି ଦେଇଥିଲେ ।

ମେଜର ଜେନେରାଲ ଗୋପ୍‌ଲୀ ଏଇ ବିଫଳତା ପାଇଁ ସରକାରଙ୍କ କୋହଳ ବୈଦେଶିକ ନୀତି ସହିତ ଗୋଏନ୍ଦା ସଂସ୍ଥା ମାନଙ୍କ ଭିତରେ ଅସହଯୋଗ ଏବଂ ଅବ୍ୟବସ୍ଥାକୁ ଦାୟୀ କରିଛନ୍ତି ।

ଏ ଗଲା ଗୋଟିଏ ଦିଗ । ଦେଶର ଆଭ୍ୟନ୍ତରୀଣ ସୁରକ୍ଷା ପାଇଁ ଆମ ପୁଲିସ ବିଭାଗ ସହତ ଅନେକ ଗୁଡ଼ିଏ ଗୋଏନ୍ଦା ସଂସ୍ଥା ଅଛନ୍ତି । ଦେଶର ରାଜକୋଷରୁ ଶହ ଶହ କୋଟି ଟଙ୍କା ଏମାନଙ୍କ ପାଇଁ ବ୍ୟୟିତ ହୁଏ । କିନ୍ତୁ କେବେହେଲେ ଏମାନଙ୍କ ଠାରୁ ଠିକଣା ସମୟରେ ଖବରଟିଏ ମିଳେ ନାହିଁ, ଯଦିଓ ସରକାର ପୂରାପୂରି ଏମାନଙ୍କ ରିପୋର୍ଟ ଉପରେ ନିର୍ଭର କରନ୍ତି । ଏମାନଙ୍କ ବିଫଳତା ଯୋଗୁଁ ଦୁଃଖଦ ଘଟଣାଟିଏ ଘଟିଥିଲା ୧୯୮୪ ରେ । ସେତେବେଳର ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ତାଙ୍କ ବାସ ଭବନରେ ତାଙ୍କ ନିଜ ଦେହରକ୍ଷୀମାନେ ଗୁଳିକରି ହତ୍ୟା କରିବା ଦ୍ୱାରା ଏବଂ ଏଥିପାଇଁ ସନ୍ତ୍ରାସବାଦୀଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିବା ଦୀର୍ଘଦିନର ଷଡ଼ଯନ୍ତ୍ରକୁ ଆମ ଗୋଏନ୍ଦା ସଂସ୍ଥାମାନେ ଜାଣି ନ ପାରିବାର ବିଫଳତା ଯୁଗେ ଯୁଗେ ଇତିହାସ ପୃଷ୍ଠାରେ ଲିପିବଦ୍ଧ ହୋଇ ରହିଲା ।

ତା ପରେ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀଙ୍କୁ ଦିଲ୍ଲୀର ରାଜଘାଟ ଠାରେ ହତ୍ୟାର ଷଡ଼ଯନ୍ତ୍ର ହୋଇଥିଲା । ସୂଚନାଯୋଗ୍ୟ ଯେ ସେତେବେଳେ ରାଜୀବ ଗାନ୍ଧୀଙ୍କର ଜଣେ ଆତ୍ମୀୟ ତଥା ତତ୍‌କାଳୀନ କେନ୍ଦ୍ରମନ୍ତ୍ରୀ ଶୀଲା କଉଲଙ୍କ ପୁତ୍ର, ଯେ କି ଜଣେ ଆଇ.ପି.ଏସ୍. ଅଫିସର, ପ୍ରଧାନମନ୍ତ୍ରୀଙ୍କ ସୁରକ୍ଷା ଦାୟିତ୍ୱରେ ଥିଲେ ସେ ନେହେରୁ ପରିବାରର ଲୋକ । ରାଜୀବ ଗାନ୍ଧୀଙ୍କ ଉପରକୁ ରାଜଘାଟ ଠାରେ ଗୁଳି ଚାଳନା ହେଉଥିବା ବେଳେ ସେ ନିଜେ ଉପସ୍ଥିତ ଥିଲେ ଏବଂ ଗୁଳି ଚାଳନାର ଶବ୍ଦକୁ ମୋଟର ଟାୟାର ଫାଟିବାର ଶବ୍ଦ ବୋଲି ମନେ କରିଥିଲେ । ଯା ହେଉ, ପ୍ରଧାନମନ୍ତ୍ରୀଙ୍କୁ ସୁରକ୍ଷା ଦାୟିତ୍ୱରେ ଥିବା ଏହି ଅଫିସରଙ୍କୁ ସେତେବେଳେ ନାଁକୁ ମାତ୍ର- ସସ୍‌ପେଣ୍ଡ କରା ଯାଇଥିଲା । କିନ୍ତୁ ଏବେ ସେ ପ୍ରମୋଶନ ପାଇ ରାଷ୍ଟ୍ରପତି ପଦକ ମଧ୍ୟ ପାଇ ସାରିଲେଣି ।

୧୯୯୧ ରେ ରାଜୀବ ଗାନ୍ଧୀଙ୍କୁ ହତ୍ୟା କରା ଯାଇଥିଲା । ଏ ହତ୍ୟା ପଛରେ ଯେ କି ଗୂଢ଼ ରହସ୍ୟ ରହିଚି ତାହା ଏବେ ଜୈନ କମିଶନ ଉଦ୍‌ଘାଟନ କରୁଛନ୍ତି । ଦୁଃଖର କଥା ସ୍ୱାଧୀନତା ଠାରୁ ଆଜିଯାଏ ଦେଶରେ ଯେତିକି 'ତଦନ୍ତ କମିଶନ' ଗଠିତ ହୋଇଛି ତା'ର ଫଳାଫଳ ସମସ୍ତଙ୍କୁ ଜଣା । ତେଣୁ ଜୈନ କମିଶନ ଠାରୁ ମଧ୍ୟ ଦେଶ ବିଶେଷ କିଛି ଆଶା କରୁ ନାହିଁ; କେବଳ କିଛି ରାଜନୈତିକ ହଟଚେମଟ ଛଡା । ଏ ସବୁ ଆମର ଦେହସୁହା ହୋଇ ଗଲାଣି ।  ତେବେ ଜୈନ କମିଶନ ଆଗରେ ଆଜି ଯୋଉ ରାଜୀବ ହତ୍ୟା ଷଡ଼ଯନ୍ତ୍ରର ରହସ୍ୟମାନ ଉଦ୍‌ଘାଟିତ ହେଉଛି ତାହା ଆମର ଗୋଏନ୍ଦା ବିଭାଗ ମୋଟେ ଜାଣି ପାରି ନ ଥିଲେ । ଏ ବିଫଳତାକୁ କ୍ଷମା କରିହେବ ନାହିଁ ।

ପରବର୍ତ୍ତୀ କାଳରେ ଅଯୋଧ୍ୟାର ମନ୍ଦିର ଭଙ୍ଗା ଘଟଣା ଏବଂ ପରବର୍ତ୍ତୀ କାଳରେ ବମ୍ବେର ବୋମା ବିସ୍ଫୋରଣ କଥା ମଧ୍ୟ ଆମ ଗୋଏନ୍ଦା ବିଭାଗମାନେ ଜାଣି ପାରି ନଥିଲେ । ବମ୍ବେର ବୋମା ବିସ୍ଫୋରଣ ପଛରେ ଦେଶୀ ଓ ବିଦେଶୀ ଷଡ଼ଯନ୍ତ୍ରକାରୀମାନଙ୍କ ବିଶେଷ କରି ଦାଉଦ ଇବ୍ରାହିମର ହାତ ଥିଲା ବୋଲି ଏବେ ସ୍ପଷ୍ଟ ହେଲାଣି । ଭାରତର ସମଗ୍ର ଅର୍ଥନୀତିକୁ ଅଚଳ କରିଦେବାକୁ ଏଭଳି ସୁସଂଗଠିତ ଷଡ଼ଯନ୍ତ୍ର ଆଜିଯାଏ ଆଉ କୋଉ ଦେଶରେ ହେଇଚି କି ନା ଆମକୁ ଜଣାନାହିଁ  ।  କିନ୍ତୁ ଆମ ଗୋଏନ୍ଦା ବିଭାଗ ଏ ବିଷୟରେ ସଂପୂର୍ଣ୍ଣ ନୀରବ । ସେତେବେଳେ ମଧ୍ୟ ଦେଶ ଭିତରକୁ ସେଇ ପାକିସ୍ତାନରୁ RDX ପରି ମାରାତ୍ମକ ବୋମା ସରଞ୍ଜାମ ମାନ ବିମାନରେ ଅଣାଯାଇଥିଲା । ଆମ ସୀମାରେ ଲକ୍ଷ ଲକ୍ଷ ପୁଲିସ, ସୈନ୍ୟବାହିନୀର ଜବାନ ଏବଂ ଗୋଏନ୍ଦାମାନଙ୍କ ଆଖିରେ ସେତେବେଳେ ମଧ୍ୟ ଧୂଳି ପକା ଯାଇଥିଲା । ଏ ସବୁ ଘଟଣା ଦ୍ୱାରା ଆମ ଦେଶର ସମଗ୍ର ନିରାପତ୍ତା ବ୍ୟବସ୍ଥା ଆନ୍ତର୍ଜାତିକ ସ୍ତରରେ ଏକାନ୍ତ ଦୁର୍ବଳ ବୋଲି ପ୍ରମାଣ ହୋଇ ସାରିଲାଣି ।

ଜେନେରାଲ ବୈଦ୍ୟଙ୍କ ହତ୍ୟା ଆମ ବିଫଳତାର ଆଉ ଏକ କରୁଣ କାହାଣୀ । ଏହି ହତ୍ୟା ପାଇଁ ଟେରୋରିଷ୍ଟମାନେ ବହୁ ଆଗରୁ କର୍ତ୍ତୃପକ୍ଷଙ୍କୁ ସୂଚନା ଦେଇଥିଲେ ମଧ୍ୟ ସୁରକ୍ଷା ଦାୟିତ୍ୱରେ ଥିବା କର୍ମଚାରୀମାନେ ବିଫଳ ହୋଇଥିଲେ ।

ଉତ୍ତର ପୂର୍ବାଞ୍ଚଳ ରାଜ୍ୟସମୂହ ଏବଂ କାଶ୍ମୀରରେ ଅପହରଣ ଓ ହତ୍ୟା ଏକ ସାଧାରଣ ଘଟଣା । ଆସାମରେ ଉଲ୍‌ଫା ଉଗ୍ରବାଦୀମାନେ ସବୁବେଳେ ଆଗରୁ ନୋଟିସ୍ ଦେଇ ହତ୍ୟା ଓ ଅପହରଣ କରନ୍ତି । ବହୁ ଅଫିସର ତଥା ମାନ୍ୟଗଣ୍ୟ ବ୍ୟକ୍ତି ଓ ବ୍ୟବସାୟୀଙ୍କୁ ସେମାନେ ଅପହରଣ କରି ମାସ ମାସ କାଳ ଅଟକ ରଖନ୍ତି । ପରେ ହତ୍ୟା କରନ୍ତି କିମ୍ବା ଛାଡ଼ି ଦିଅନ୍ତି ସେମାନଙ୍କ ଦାବି ପୂରଣ ହେଲେ । ଶତଚେଷ୍ଟା ସତ୍ତ୍ୱେ ଗୋଏନ୍ଦା ବିଭାଗ ତାର ଟେର୍ ପାଆନ୍ତି ନାହିଁ । କାଶ୍ମୀରରେ ରୁମାନିଆର ଚାର୍ଜ ଡି ଆଫେଆର୍ ଶ୍ରୀ ରାଡୁଙ୍କୁ ଅପହରଣ କରା ଯାଇଥିଲା । ପୁଲିସ ତାର ପତ୍ତା ପାଇ ନଥିଲା

କିପରି ଭାବରେ ରାଜୁଙ୍କୁ ଉଦ୍ଧାର କରାଗଲା କି, ସେ ନିଜେ ଛାଡ଼ ପାଇଲେ ତାହା ଏବେ ମଧ୍ୟ ରହସ୍ୟାବୃତ ହୋଇ ରହିଚି । କାଶ୍ମୀରରେ ଚାରିଜଣ ବିଦେଶୀ ପର୍ଯ୍ୟଟକ ଆଜିକୁ ଦୀର୍ଘଦିନ ହେଲା ଉଗ୍ରବାଦୀଙ୍କ କବଳରେ ଅଛନ୍ତି । ତାଙ୍କୁ ଠାବ କରିବାକୁ ସରକାର ବିଦେଶୀ ଗୋଏନ୍ଦା ସଂସ୍ଥାର ସାହାଯ୍ୟ ନେବାକୁ ସ୍ଥିର କରି ନିଜ ଦୁର୍ବଳତାକୁ ପ୍ରମାଣିତ କରି ସାରିଛନ୍ତି । ଠିକ୍ ଏହିପରି ଆଉ ଏକ ଘଟଣା ଘଟିଥିଲା ବୋଫର୍ସ କେଶ୍ ସମୟରେ । ଆମ ଦେଶର ଗୋଏନ୍ଦା ସଂସ୍ଥାମାନେ ନିଜର ପାରଙ୍ଗମପଣିଆ ଦେଖେଇ ପାରିବେ ନାହିଁ ବୋଲି ହୃଦ୍‌ବୋଧ ହେବାରୁ ତତ୍‌କାଳୀନ ଅର୍ଥମନ୍ତ୍ରୀ ଭି.ପି. ସିଂହ ବିଦେଶୀ ଗୋଏନ୍ଦା ସଂସ୍ଥାର ସାହାଯ୍ୟ ଲୋଡ଼ିଥିଲେ । ସେମାନେ ଯେତେବେଳେ ଆମ ଆଖିରେ ଆଙ୍ଗୁଳି ଖେଞ୍ଚି ଦେଖେଇ ଦେଲେ ଯେ "କମ୍ବଳ ଯାକ ବାଳ" ସେତେବେଳେ ଆମ ନେତାଙ୍କ ଆଖି ଫିଟିଲା । ସେ ତଦନ୍ତ ଏ ଯାଏଁ ସରିନି କି କେବେ ସରିବାର ମଧ୍ୟ ଆଶା ନାହିଁ ।

ବିଫଳତାର କାରଣ ଅନେକ । କିନ୍ତୁ ତାର ପ୍ରଥମ ଓ ପ୍ରଧାନ କାରଣଟି ହେଲା ରାଜନୈତିକ ବା ସ୍ୱେଚ୍ଛାକୃତ । ପୁଲିସ, ପ୍ରଶାସନ, ଗୋଏନ୍ଦା ସଂସ୍ଥା ଏବଂ ଏପରିକି ଦେଶରକ୍ଷା ବିଭାଗରେ ମଧ୍ୟ ରାଜନୈତିକ ହସ୍ତକ୍ଷେପ ଏତେ ବେଶୀ ଯେ ସେଠି ପ୍ରକୃତ କାମ ଓ ଦକ୍ଷତାକୁ ପଛ ବେଞ୍ଚକୁ ପକେଇ ଦିଆଯାଏ । ଫଳରେ କାମ ଅପେକ୍ଷା ପଦପୂଜାର ପ୍ରାଧାନ୍ୟ ବଢ଼େ । ଯେତେଦିନ ଯାଏ ଏ ପୂଜା ଷୋଡ଼ଶୋପଚାରରେ ଚାଲିଥିବ ସେତେଦିନ ଯାଏ ଦେଶର ଭାଗ୍ୟ ସୂତା ଖିଅରେ ଝୁଲିବାକୁ ବାଧ୍ୟ । ■

(ସମ୍ବାଦ- ୧୮.୧.୯୬)

# ପ୍ରପଞ୍ଚ ପଞ୍ଚାୟତିରାଜ ଓ ପ୍ରତାରିତ ପ୍ରଜାମାନେ

ସ୍ୱାଧୀନତା ପ୍ରାପ୍ତିର ୫୦ ବର୍ଷ ପାଳନ ହୋଇ ସାରିଥିଲେ ମଧ୍ୟ ଆମେ ଦେଖୁଛୁଁ ଆମ ଗ୍ରାମାଞ୍ଚଳର ଏ ଯାଏ କୌଣସି ଉନ୍ନତି ହୋଇ ନାହିଁ । ଗାଁଗୁଡ଼ିକ ଯୋଉଠି ଥିଲେ ସ୍ୱାଧୀନତା ପୂର୍ବରୁ ଏବେ ମଧ୍ୟ ସେଇଠି । ଯୋଜନା କମିଶନଙ୍କ ରିପୋର୍ଟ ଅନୁସାରେ ଶତକଡ଼ା ୪୦ ଗାଁରେ ପିଇବା ପାଣିର ସୁବିଧା ନାହିଁ; ରାସ୍ତାର ଅବସ୍ଥା ଆହୁରି ଖରାପ ।

ଆମ ନେତାମାନେ କିନ୍ତୁ ଏକଥା ମୋଟେ ସ୍ୱୀକାର କରନ୍ତି ନାହିଁ । ସେମାନେ କହନ୍ତି, ଆମ ଯୋଜନାର ସୁଫଳଗୁଡ଼ିକ ଲୋକଙ୍କ ପାଖରେ ଠିକ୍ ଭାବରେ ପହଞ୍ଚି ପାରିନାହିଁ । ଆଉ କେହି କେହି କହୁଛନ୍ତି, ଯୋଜନାର ବାର୍ତ୍ତାଗୁଡ଼ିକ ଲୋକଙ୍କ ପାଖରେ ପହଞ୍ଚିବା ଦରକାର । ଖାଲି ଲୋକଙ୍କୁ ଭୁଲେଇବା ପାଇଁ ଶବ୍ଦକୁ ଏପାଖ ସେପାଖ କରିବା କଥା । ରାଜୀବ ଗାନ୍ଧୀଙ୍କ ସମୟରେ କଥାଟାକୁ ପ୍ରଥମେ ସ୍ୱୀକାର କରି କୁହାଗଲା ଯେ ଯୋଜନାର ଅର୍ଥ ସବୁ ବାଟ ମାରଣା ହୋଇ ଯାଉଛି । ଶତକଡ଼ା ୧୮ ଭାଗ ମଧ ଲୋକଙ୍କ ପାଖରେ ପହଞ୍ଚୁ ନାହିଁ । ସେ ସିନା ଏ କଥା କହିଲେ; କିନ୍ତୁ ବାଟ ମାରଣାକୁ ରୋକିବା ପାଇଁ କିଛି ବ୍ୟବସ୍ଥା କଲେ ନାହିଁ; କାରଣ ରାଜନୈତିକ ନେତାମାନେ ସବୁବେଳେ 'ଲୋକମାନଙ୍କ' ଅପେକ୍ଷା ତାଙ୍କ 'ଦଳକୁ' ବଡ଼ ବୋଲି ମାନନ୍ତି । ତେଣୁ ବାଟ ମାରଣାକୁ ଅଟକେଇବାକୁ ଯାଇ କିଏ ବା ଦଳ ପାଖରେ ଅପ୍ରିୟ ହେବ ?

ରାଜୀବଙ୍କ ପରେ ଯିଏ ଆସିଲେ ସେ ଏ କାମରେ ଆଉ ପାଦେ ଆଗେଇ ଗଲେ । ସେ ଯେତେବେଳେ ଦେଖିଲେ, ସେ ନିଜେ କୋଟିଏ ଟଙ୍କା ଲାଞ୍ଚ ନେଇ ଥିବାର ଅଭିଯୋଗରେ ଛନ୍ଦି ହୋଇ ପଡ଼ିଛନ୍ତି, ସେ ତୁରନ୍ତ କହିଲେ ମୁଁ ସେ ଟଙ୍କାକୁ ମୋ ଅଞ୍ଚଳର ଲୋକଙ୍କ କାମରେ ଲଗେଇଛି । ତୁମେ ଯଦି ଚାହୁଁଛ ତୁମେ ସବୁ ମଧ୍ୟ କୋଟିଏ ଲେଖାଁଏ ନିଅ- ନିଜ ଅଞ୍ଚଳର ଲୋକଙ୍କ କାମରେ ଲଗାଅ । ସେଇଠୁ ସାଂସଦଙ୍କ ଏରିଆ ଡେ଼ଭ୍‌ଲପ୍ ଫଣ୍ଡର ସୃଷ୍ଟି । ସେତେବେଳେ ମଧ୍ୟ କୁହାଗଲା ଯେ, ଯେଉଁ ଗାଁରେ ଯୋଜନାର ସୁଫଳ ଗୁଡ଼ିକ ପହଞ୍ଚି ପାରୁ ନାହିଁ ଏ ଟଙ୍କାକୁ ସେଇଠି କାମରେ ଲଗାଅ । କିଛି ହେଲେ ସେମାନେ ପାଆନ୍ତୁ । କିନ୍ତୁ ସେ କଥା ମଧ୍ୟ ହେଲା ନାହିଁ । ଏବେ ଏକ କୋଟିଟା ଦୁଇ କୋଟିରେ ପରିଣତ ହେଲାଣି । ତଥାପି ଗାଁକୁ କିଛି ଯାଉନାହିଁ । ଏଇତ ଆମେ ଦେଖିଲୁଁ, ଗତ ମହାବାତ୍ୟାବେଳେ ସବୁ ସାଂସଦ କୋଟିଏ ଟଙ୍କା ଓଡ଼ିଶାକୁ ଦେବେ ବୋଲି କହିଥିଲେ; କିନ୍ତୁ ଏବେ ଦେଖା ଯାଉଛି ଅଳ୍ପ କେତେଜଣଙ୍କୁ ଛାଡି ଅନ୍ୟମାନେ ସେ ଟଙ୍କା ଦେଇ ନାହାନ୍ତି । ଦେଇ ନ ଥିବା ଲୋକଙ୍କ ଭିତରୁ ଓଡ଼ିଶାର କେତେ ଏବଂ ସେମାନେ କିଏ

ସେ କଥା ଜଣାପଡ଼ି ନାହିଁ; କିନ୍ତୁ ଏକଥା ଅବଶ୍ୟ ଜଣାଅଛି ଯେ ମହାବାତ୍ୟା ପରଠାରୁ ଆଜିଯାଏ ଯେତେ ଲୋକ ରିଲିଫ ଦିଆ ଯାଉ ନାହିଁ ବୋଲି ପାଟି କରୁଥିଲେ/ କରୁଛନ୍ତି, ସେମାନଙ୍କ ଭିତରେ ଏଇ ନ ଦେବା ଲୋକମାନେ ମଧ୍ୟ ଅଛନ୍ତି । ସେମାନେ ଲୋକଙ୍କ ଦୁର୍ଗତି ବେଳେ ରାସ୍ତା ଫିଟି ନ ଥିବାରୁ ଗାଁକୁ ଯାଇ ନ ପାରି ରାଜଧାନୀରେ ସମ୍ବାଦପତ୍ରକୁ ବିବୃତି ଦେଇ ଲୋକମାନଙ୍କ ପାଇଁ କାନ୍ଦୁଛନ୍ତି ବୋଲି ଜଣାଇ ଦେଲେ । ଆଉ କେହି କେହି ଧାରଣା ଦେଲେ ଓ ଅନଶନ କଲେ ମଧ୍ୟ ।

କହିବାର ଉଦ୍ଦେଶ୍ୟ ହେଉଛି ଯେ ଗତ ୫୦ ବର୍ଷର ଅଭିଜ୍ଞତାରୁ ଆମେ ଜାଣିଛୁଁ ଯେ ଲୋକପ୍ରତିନିଧିମାନେ କେବଳ ନିର୍ବାଚନବେଳେ ଗାଁକୁ ଯାଆନ୍ତି, ଅନ୍ୟବେଳେ ଗାଁର ମୁହଁ ଦେଖନ୍ତି ନାହିଁ । ତେବେ ଗାଁର କାମ କରିବ କିଏ ? ଗାଁରେ ଲୋକଙ୍କ ଅଭିଯୋଗ ଯଥାର୍ଥ । ସେମାନେ କହନ୍ତି- ଯିଏ ଆମଠୁ ଭୋଟ ନେଲା, ସେ'ତ ଗଲା, ଆଉ ଆସିଲା ନାହିଁ । ଏ ଆଡ଼େ ଗାଁରେ ଯେଉଁମାନେ ପାଠଶାଠ ପଢ଼ିଲେ ସେମାନେ ମଧ୍ୟ ସହରକୁ ଚାଲି ଗଲେ । କାରଣ ଗାଁରେ ଗୁଜୁରାଣ ମେଣ୍ଟାଇବା ପାଇଁ କଅଣ ବା ଅଛି ? ଏଠି ଆଉ ଅଛି କିଏ ?

ଏ ପ୍ରଶ୍ନର ଏକମାତ୍ର ଉତ୍ତର ହେଉଛି ଗ୍ରାମ ପଞ୍ଚାୟତ । ମହାତ୍ମା ଗାନ୍ଧୀ ସେଇ କଥା କହୁଥିଲେ । ସେ କହିଲେ ଯେ ପର୍ଯ୍ୟନ୍ତ ଗାଁର ଲୋକଙ୍କ ପାଖରେ ସବୁ ସୁଖ ସୁବିଧା ନ ପହଞ୍ଚିଛି ସେ ପର୍ଯ୍ୟନ୍ତ ସ୍ୱାଧୀନତାର କୌଣସି ମୂଲ୍ୟ ନାହିଁ । ତେଣୁ ସେ ପଞ୍ଚାୟତକୁ ଗଣତନ୍ତ୍ରର ମେରୁଦଣ୍ଡ ବୋଲି କହୁଥିଲେ । ଗାଁର ସବୁ କଥା ସେଇ ଗାଁରେ ସମାଧାନ ହେଉ ବୋଲି କହୁଥିଲେ । ତେଣୁ ତାକୁ ଗୋଟେ ଅଣରାଜନୈତିକ ଅନୁଷ୍ଠାନ ହିସାବରେ ରଖିବାକୁ କହୁଥିଲେ । ତାଙ୍କର ବିଶ୍ୱାସ ଥିଲା ପଞ୍ଚାୟତରେ ରାଜନୀତି ପଶିଲେ ଲୋକଙ୍କ ସମସ୍ୟାର ସମାଧାନ ହେବ ନାହିଁ; ବରଂ ତାକୁ ଅଧିକ ସମସ୍ୟାରେ ଛନ୍ଦି ପକେଇବ । କିନ୍ତୁ ଏବର ରାଜନୀତି ସେ କଥା କରିବାକୁ ଦେଲା ନାହିଁ । ସେମାନେ କହିଲେ ରାଜନୀତି ସବୁଠି ରହିବ । ଈଶ୍ୱର ଯେମିତି ସବୁଠି ଥାଆନ୍ତି, ରାଜନୀତି ମଧ୍ୟ ସେମିତି ସବୁଠି ରହିବ- ଜଳ, ସ୍ଥଳ ଓ ଆକାଶରେ ମଧ୍ୟ ରହିବ । ପୃଥିବୀରେ ଏପରି କୌଣସି ସ୍ଥାନ ନାହିଁ ଯେଉଁଠି ରାଜନୀତିକୁ ବାଧା ଦିଆ ଯାଇ ପାରିବ । ଭାରତୀୟ ଗଣତନ୍ତ୍ରରେ ରାଜନୀତି ସର୍ବ ଶକ୍ତିମାନ । ଗଣତନ୍ତ୍ରର ସବୁ ଖୁଣ୍ଟକୁ ସେ ତିଆରି କରିବ ଏବଂ ତାକୁ ଭାଙ୍ଗିବାର କ୍ଷମତା ମଧ୍ୟ ତାର ରହିବ । ଫଳରେ ଏଇଆ ହେଲା, ଯେଉଁ ପଞ୍ଚାୟତ ଗାଁର ସର୍ବେସର୍ବା ହେବାର କଥା, ଗାଁର ହାନିଲାଭର ଭାଗୀଦାର ହେବାର କଥା, ସେ ଏବେ ରାଜନୀତିର ପାଦ ତଳେ ପଡ଼ି ଚିତ୍କାର କରୁଛି । ସେ ଜନ୍ମି ପାରୁ ନାହିଁ କି ଜନ୍ମିଲେ ବଞ୍ଚିପାରୁ ନାହିଁ । ରାଜନୀତି ତାକୁ ସଣ୍ଢୁଆସି ଲଗେଇ ଚାପି ଧରୁଛି ।

କେତୋଟି କଥାକୁ ବିଚାରକୁ ନିଆ ଯାଉ । ଏବେ ପ୍ରଧାନମନ୍ତ୍ରୀ ଯୋଜନା

କମିଶନର ପୂର୍ଣାଙ୍ଗ ଅଧିବେଶନରେ ଅଧ୍ୟକ୍ଷତା କରି ତାର କାର୍ଯ୍ୟର ସମୀକ୍ଷା କରିଥିଲେ । ଏହି ଅବସରରେ କମିଶନ ଯେଉଁ ରିପୋର୍ଟ ପ୍ରକାଶ କରିଛନ୍ତି, ସେଥିରେ ଦେଶର ମୋଟାମୋଟି ଅର୍ଥନୈତିକ ପ୍ରଗତିର ଗୋଟିଏ ଚିତ୍ର ପ୍ରକାଶ ପାଇଛି । ସେଥିରେ ଲେଖାଅଛି ଯେ ଉତ୍ତର ପ୍ରଦେଶ, ବିହାର ଏବଂ ଓଡ଼ିଶାର ବାର୍ଷିକ ଅଭିବୃଦ୍ଧିର ହାର ଯଥାକ୍ରମେ ୩.୫, ୩.୦୦ ଏବଂ ୨.୫ କୁ ଖସି ଆସିବା ଦ୍ୱାରା ଏହି ତିନୋଟି ରାଜ୍ୟ ଭାରତର ଦରିଦ୍ରତମ ରାଜ୍ୟ ପାହ୍ୟାକୁ ଖସି ଆସିଛି; ଅଥଚ ସେଥିରେ ଏ କଥା ମଧ୍ୟ ଲେଖାଅଛି ଯେ ପଶ୍ଚିମବଙ୍ଗର ଅଭିବୃଦ୍ଧିର ହାର ଅତି ସନ୍ତୋଷଜନକ ଭାବେ ୬.୯ କୁ ବୃଦ୍ଧି ପାଇଛି । ଉତ୍ତର ପ୍ରଦେଶ ବିଷୟରେ ଲେଖାଅଛି ଯେ ଗତ ଦୁଇବର୍ଷ ଭିତରେ ବୃଦ୍ଧିର ହାର ତଳକୁ ଖସିଛି - ଆଗରୁ ଭଲ ଥିଲା ।

ଏବେ ପ୍ରଶ୍ନ ଉଠୁଛି, ହଠାତ୍ ଉତ୍ତର ପ୍ରଦେଶର ଅଭିବୃଦ୍ଧି ହାର କମିଲା କାହିଁକି ? ଗୋଟାଏ ରାଜ୍ୟର ଉନ୍ନତି ମୁଖ୍ୟତଃ ସେଠାକାର ରାଜନୈତିକ ତଥା ପ୍ରଶାସନିକ ସ୍ଥିରତା ଉପରେ ନିର୍ଭର କରେ । ସେଠାରେ ସେ ପ୍ରକାର ଦୁରବସ୍ଥା କେବେ ବି ହୋଇନାହିଁ । ତାହା ଭାରତର ସବୁଠୁ ଜନ ବହୁଳ ରାଜ୍ୟ । ସ୍ୱାଧୀନତା ପ୍ରାପ୍ତିଠାରୁ ଆଜିଯାଏ ସେ ରାଜ୍ୟ ପ୍ରାୟ ସବୁବେଳେ ପ୍ରଧାନମନ୍ତ୍ରୀଙ୍କ ରାଜ୍ୟ ଭାବରେ ପରିଚିତ । ଏବର ପ୍ରଧାନମନ୍ତ୍ରୀ ମଧ୍ୟ ସେଇ ରାଜ୍ୟର ପ୍ରତିନିଧିତ୍ୱ କରୁଛନ୍ତି । ଭାରତର ବହୁ ମାନ୍ୟଗଣ୍ୟ ମନ୍ତ୍ରୀ, ପ୍ରଶାସନିକ ଅଫିସର ସମସ୍ତେ ସେଇ ରାଜ୍ୟର । ଏପରିକି ଯୋଜନା କମଶନର ଉପାଧ୍ୟକ୍ଷ ତଥା ଅନେକ ସଦସ୍ୟ ଏହି ରାଜ୍ୟର ଅଧିବାସୀ । ସେହି ଦୃଷ୍ଟିରୁ ଉତ୍ତର ପ୍ରଦେଶ ଯେଉଁ ସୁବିଧା ସୁଯୋଗ କେନ୍ଦ୍ରରୁ ପାଏ ତାର କାଣିଚାଏ ମଧ୍ୟ ଅନ୍ୟ ରାଜ୍ୟ ପାଆନ୍ତି ନାହିଁ । ଏବେ ଦୁଇବର୍ଷ ହେଲା ପ୍ରଧାନମନ୍ତ୍ରୀଙ୍କ ଦଳ ଏବଂ ତାଙ୍କ ମୁଖ୍ୟମନ୍ତ୍ରୀ ମଧ୍ୟ ସେଠି ଶାସନରେ ଅଛନ୍ତି । ପଞ୍ଚାୟତ ନିର୍ବାଚନ ସେଠି ଠିକ୍ ସମୟରେ ହେଉଛି । ଏ ସବୁ ପ୍ରକାର ସକାରାତ୍ମକ ସଂକେତ ଥିବା ସତ୍ତ୍ୱେ ରାଜ୍ୟର ଅଭିବୃଦ୍ଧି ହାର ହଠାତ୍ ଏତେ ତଳକୁ ଖସିବାର କାରଣ ସମ୍ପର୍କରେ ଅବଶ୍ୟ ରିପୋର୍ଟରେ କିଛି କୁହାଯାଇ ନାହିଁ ।

ଅନ୍ୟ ଦିଗରେ ପଶ୍ଚମବଙ୍ଗର ଅଭିବୃଦ୍ଧି ହାର ୬.୯ କୁ ବୃଦ୍ଧି ପାଇଛି । ପଶ୍ଚିମବଙ୍ଗରେ ମଧ୍ୟ ଗୋଟିଏ ସ୍ଥିର ଶାସନ ଚାଲିଛି- ଗତ ୨୩ ବର୍ଷ ହେଲା । ସ୍ୱାଧୀନତା ପରଠାରୁ ଏହି ରାଜ୍ୟ ବହୁ ଝଡ଼ଝଞ୍ଜା ଭିତର ଦେଇ ଗତି କରୁଥିଲା । ରାଜନୈତିକ ଅସ୍ଥିରତା, ସନ୍ତ୍ରାସବାଦ ଏବଂ ପ୍ରଶାସନିକ ଅବ୍ୟବସ୍ଥା ସମଗ୍ର ପ୍ରଦେଶକୁ କାବୁ କରି ରଖିଥିଲା । ଏପରିକି ନିଜେ ପଣ୍ଡିତ ନେହେରୁ ମଧ୍ୟ (ସେଠି କଂଗ୍ରେସ ଶାସନ ଥିବା ସତ୍ତ୍ୱେ) ସେଠାକୁ ଯିବାକୁ ଚାହୁଁ ନ ଥିଲେ; କିନ୍ତୁ ଗତ ୨୩ ବର୍ଷ ଭିତରେ ସେଠାରେ ଶାସନରେ ସ୍ଥିରତା ଆସିଛି । ପଞ୍ଚାୟତ ନିର୍ବାଚନ ଠିକ୍ ସମୟରେ ହେଉଛି ଏବଂ ରାଜୀବ ଗାନ୍ଧୀଙ୍କ କହିବା ଅନୁସାରେ ପଶ୍ଚିମବଙ୍ଗ ଏକମାତ୍ର ରାଜ୍ୟ ଯେଉଁଠି ଭୂ-

ସଂସ୍କାର କାର୍ଯ୍ୟକ୍ରମ ଠିକଣା ଭାବେ କାର୍ଯ୍ୟକାରୀ ହୋଇଛି । ତାର ପ୍ରମାଣ ହିସାବରେ ତାର ଅଭିବୃଦ୍ଧି ହାରକୁ ନିଆ ଯାଇ ପାରେ । ଏଇ ପ୍ରକାର ଏକ ସରକାରକୁ ଅବଶ୍ୟ କେନ୍ଦ୍ରମନ୍ତ୍ରୀ ମମତା ବାନାର୍ଜୀ ଏବେ ଭାଙ୍ଗି ଦେବାକୁ ପ୍ରଧାନମନ୍ତ୍ରୀଙ୍କ ଉପରେ ଚାପ ପ୍ରୟୋଗ କରୁଛନ୍ତି ଏବଂ ସେଇ ପ୍ରକାର ଏକ ଆଳରେ ଏବେ ଇସ୍ତଫା ମଧ୍ୟ ଦେଇଥିଲେ । କହିବାର କଥା, ସବୁ ପ୍ରକାର ଅନୁକୂଳ ଅବସ୍ଥା ସତ୍ତ୍ୱେ ଉତ୍ତର ପ୍ରଦେଶରେ ଅଭିବୃଦ୍ଧି ହାର ତଳକୁ ଖସି ଯେମିତି ରେକର୍ଡ଼ ସୃଷ୍ଟି କରିଛି, ସବୁପ୍ରକାର ପ୍ରତିକୂଳ ଅବସ୍ଥା ସତ୍ତ୍ୱେ ପଶ୍ଚିମବଙ୍ଗ ସେମିତି ଅଭିବୃଦ୍ଧି ହାରରେ ଉପରକୁ ଉଠିବାରେ ରେକର୍ଡ କରିଛି ।

ଆମେ ଏବେ ବିହାର ଓ ଓଡ଼ିଶା ପ୍ରସଙ୍ଗକୁ ଆସିବା । ଯୋଜନା ବୋର୍ଡ ଏ ଦୁଇ ରାଜ୍ୟକୁ ଉତ୍ତର ପ୍ରଦେଶ ସହିତ ମିଶାଇ ଥିଲେ ମଧ୍ୟ ଅଭିବୃଦ୍ଧିର ହାର କଥା ହିସାବକୁ ନେଲା ବେଳେ ତାହାକୁ ଦୁଇ ରାଜ୍ୟର ସାମାନ୍ୟ ଉପରେ ରଖିଛି । ବିହାରରେ ଅଭିବୃଦ୍ଧିର ହାର କମିବାର ଅନେକ ଗୁଡ଼ିଏ କାରଣ ରହିଛି । ପ୍ରଥମ କଥା ସେଠାରେ ରାଜନୈତିକ ଅସ୍ଥିରତା ଅନେକ ଦିନୁଁ ଲାଗି ରହିଛି । ନାଁକୁ ମାତ୍ର ମନ୍ତ୍ରୀମଣ୍ଡଳ ଥିଲେ ମଧ୍ୟ ସମଗ୍ର ରାଜନୀତିଟା ସେଠି ଦୁର୍ନୀତି ଓ ମାଫିଆମାନଙ୍କ ଦ୍ୱାରା କବଳିତ । ମୂଳକଥା, ସେଇମାନେ ହିଁ ସେଠି ସର୍ବେସର୍ବା । ସେମାନଙ୍କ ଇଙ୍ଗିତରେ ରାଜନୀତି ପରିଚାଳିତ ହେଉ ଥିବାରୁ ସେଠି ପ୍ରଶାସନ ମଧ୍ୟ ଅଥର୍ବ ଅବସ୍ଥାରେ ଅଛି । ପ୍ରଶାସନ ସେଠି ସେଇମାନଙ୍କ ଇଙ୍ଗିତକୁ ଅପେକ୍ଷା କରିବାକୁ ବାଧ୍ୟ । ପ୍ରଶାସନ ଓ ରାଜନୀତିରେ ସ୍ଥିରତା ନ ଥିବାରୁ ସେଠି ସାଧାରଣ ନିର୍ବାଚନ ମଧ୍ୟ ଠିକ୍ ଭାବରେ ହୋଇ ପାରେ ନାହିଁ । ହୁଏତ ଏ କଥା କହିଲେ ଭୁଲ ହେବ ନାହିଁ ଯେ ବିହାର ହେଉଛି ଭାରତର ଏକମାତ୍ର ରାଜ୍ୟ ଯେଉଁଠି ଆଇନର ଶାସନ ଚାଲେ ନାହିଁ । ଆଇନର ଶାସନ ଚାଲୁ ନ ଥିବାରୁ ବେଳେବେଳେ ନ୍ୟାୟପାଳିକା ମଧ୍ୟ ସେଠି ହତାଶ ହୋଇପଡ଼େ । ନ୍ୟାୟପାଳିକା ସିନା କେବଳ ଆଇନ କଥା କହିବ କିନ୍ତୁ ତାକୁ କାର୍ଯ୍ୟକାରୀ କରେଇବା କ୍ଷମତା ତାର ନାହିଁ; ତେଣୁ ସେଠି ଆଇନ କାମ କରେ ନାହିଁ । ଅଧିକନ୍ତୁ ଆଇନ ନିଜେ ତା' ନିଜ ଜାଲରେ ଛନ୍ଦି ହୋଇ ପଡ଼େ । ବିହାର ଏପରି ଏକ ରାଜ୍ୟ ଯେଉଁଠି ଯେ କୌଣସି କ୍ଷୁଦ୍ରତମ ଘଟଣା ପାଇଁ ଲୋକେ ନ୍ୟାୟାଳୟକୁ ଯାଆନ୍ତି ଏବଂ ଶେଷରେ ତାହା ସୁପ୍ରିମକୋର୍ଟକୁ ଯାଏ । ଯେଉଁଠି ତାର ସମାଧାନର ରାସ୍ତା ଫିଟିଲା ପରେ ପୁଣି ଆଉ ଏକ ବାହାନାରେ ସେମାନେ କୋର୍ଟକୁ ଯାଆନ୍ତି । ଯେମିତି ହେଉଛି ପଞ୍ଚାୟତ ନିର୍ବାଚନ ଘଟଣାରେ । ବିହାରରେ ଆଜକୁ ୨୨ ବର୍ଷ ହେଲା ପଞ୍ଚାୟତ ନିର୍ବାଚନ ହୋଇନାହିଁ । ହେବାକୁ ଦିଆଯାଉ ନାହିଁ । ପଞ୍ଚାୟତର ଶେଷ ନିର୍ବାଚନ ହୋଇଥିଲା ୧୯୭୮ ମସିହାରେ । ତା'ପରଠାରୁ କୌଣସି ନା କୌଣସି ବାହାନାରେ ସେଠି ପଞ୍ଚାୟତ ନିର୍ବାଚନ କରିବାକୁ ଦିଆ ଯାଉ ନାହିଁ । ଏପରିକି ୧୯୯୩ରେ ୭୩ ତମ ସମ୍ବିଧାନ ସଂଶୋଧନ ଅଣା ଯାଇ ରାଜ୍ୟରେ ପଞ୍ଚାୟତ ନିର୍ବାଚନକୁ ବାଧ୍ୟତାମୂଳକ କରା ଯାଇଥିଲେ ମଧ୍ୟ ରାଜ୍ୟ ସରକାର କୌଣସି ନା କୌଣସି ଆଳ ଦେଖାଇ ନିର୍ବାଚନ

କରାଇ ଦେଉ ନାହାନ୍ତି । ପ୍ରତ୍ୟେକ କଥାରେ ସେମାନେ କୋର୍ଟକୁ ଯାଉଛନ୍ତି ଏବଂ ନିର୍ବାଚନକୁ ଘୁଞ୍ଚାଇ ଦେଉଛନ୍ତି । କଥାଟା ଶେଷରେ ସୁପ୍ରିମକୋର୍ଟକୁ ଗଲା । ସେଠି ମଧ୍ୟ ବିଭିନ୍ନ ବାହାନା ନେଇ କଥାଟାକୁ ଝୁଲାଇ ରଖିଲା ପରେ ଏବେ ଅବଶ୍ୟ ସୁପ୍ରିମକୋର୍ଟ ନିର୍ବାଚନ ପାଇଁ ନିର୍ଦ୍ଦେଶ ଦେଇଛନ୍ତି; କିନ୍ତୁ ରାଜ୍ୟ ସରକାର ତାକୁ ମାନିଲେ ତ ? ଆମେ ଜାଣୁଁ ସରକାର ନିର୍ବାଚନ କରିବେ ନାହିଁ । ତାର କାରଣ ମୁଁ ଆଗରୁ କହିଛି । ରାଜନୀତି ଚାହୁଁ ନାହିଁ ବିଧାନସଭା ବାହାରେ ଆଉ ଗୋଟିଏ ଲୋକପ୍ରତିନିଧିମୂଳକ ଅନୁଷ୍ଠାନ ଥାଉ ଯାହା ବିଧାୟକମାନଙ୍କର କ୍ଷମତାକୁ କ୍ଷୁର୍ଣ୍ଣ କରିବ । ସମଗ୍ର ଜନ ସମାଜର କେବଳ ସେଇମାନେ ହିଁ ମାଲିକ ହୋଇ ରହିବା ସେମାନଙ୍କ ଇଚ୍ଛା ।

ଦ୍ୱିତୀୟ କଥାଟି ହେଲା, କେନ୍ଦ୍ର ସରକାର ଯେତେବେଳେ ଦେଖିଲେ ଗାଁରେ ଉନ୍ନୟନ ମୂଳକ ଯୋଜନା ପାଇଁ ଯେଉଁ ଅର୍ଥ ଯାଉଛି ତାର ଚାରି ଭାଗରୁ ତିନିଭାଗ ବାଟ ମାରଣା ହୋଇଯାଉଛି, ସେତେବେଳେ କେନ୍ଦ୍ର ସରକାର ସିଧା ସିଧା ପଞ୍ଚାୟତକୁ ଅର୍ଥ ମଞ୍ଜୁର କଲେ । ଯେମିତି ସାଂସଦମାନଙ୍କ ଏରିଆ ଡେଭଲପମେଣ୍ଟ ଫଣ୍ଡ ଏବଂ ବିଧାୟକମାନଙ୍କ ଏରିଆ ଡେଭଲପ୍‌ମେଣ୍ଟ ଫଣ୍ଡ । ଏ ଦୁଇଟି ଫଣ୍ଡର ମୂଳ ଉଦ୍ଦେଶ୍ୟ ହେଲା ଗାଁର ଲୋକଙ୍କ କାମ ହେଉ । ଲୋକପ୍ରତିନିଧିମାନେ ତାଙ୍କ ନିଜ ଏରିଆ ଡେଭଲପ୍‌ମେଣ୍ଟ ଫଣ୍ଡ ତ ନିଜ ପାଖରେ ରଖିଲେ ଅଧିକନ୍ତୁ ପଞ୍ଚାୟତ ପାଇଁ କେନ୍ଦ୍ରରୁ ଆସୁଥିବା ପାଣ୍ଠି ଉପରେ ମଧ୍ୟ ଆଖି ରଖିଲେ । ସେମାନେ ସେ ଅର୍ଥକୁ ମଧ୍ୟ ନିଜେ ବା ନିଜ ନିର୍ଦ୍ଦେଶରେ ଖର୍ଚ୍ଚ କରିବାକୁ ଚାହିଁଲେ । ଫଳରେ ବହୁ ଅବ୍ୟବସ୍ଥା ସୃଷ୍ଟି ହେଲା । ଶହ ଶହ କୋଟି ଟଙ୍କା ଖର୍ଚ୍ଚ ନ ହୋଇ ଫେରିଗଲା ଗୋଟିଏ ହିସାବରୁ ଜଣାପଡ଼ିଛି ଯେ ଗତ ବର୍ଷକ ଭିତରେ (୧୯୯୯-୨୦୦୦) ପଞ୍ଚାୟତ ସଂସ୍ଥା ନ ଥିବାରୁ ବିହାର ୪୫୦ କୋଟି ଟଙ୍କାର କେନ୍ଦ୍ରୀୟ ମଞ୍ଜୁରୀ ହରାଇଛି । ଏହି ଅର୍ଥ କେବଳ ଆଦିବାସୀ ଓ ହରିଜନମାନଙ୍କ ଉନ୍ନତି କଳ୍ପେ ଉଦ୍ଦିଷ୍ଟ ଥିଲା ।

ଓଡ଼ିଶାରେ ମଧ୍ୟ ସେଇ ଏକାପରି ଅବସ୍ଥା ସୃଷ୍ଟି ହୋଇଛି । ଓଡ଼ିଶାରେ ମଧ୍ୟ ଦୀର୍ଘ ଦିନଧରି ପଞ୍ଚାୟତଗୁଡ଼ିକୁ ଅକାମି କରି ରଖିବା ପରେ କଥା ଶେଷରେ ସୁପ୍ରିମକୋର୍ଟକୁ ଗଲା । ପରେ ସରକାର ଯେତେବେଳେ ଦେଖିଲେ ଯେ ସେଠାରେ ସରକାରଙ୍କ ହାରିବାର ସମ୍ଭାବନା ଦେଖା ଦେଇଛି ସେତେବେଳେ ଅବଶ୍ୟ ନିର୍ବାଚନ ଅନୁଷ୍ଠିତ ହେଲା ଏବଂ ପଞ୍ଚାୟତଗୁଡ଼ିକ ଗଠନ କରାଗଲା । ପଞ୍ଚାୟତ ସିନା ଗଠିତ ହେଲା; କିନ୍ତୁ ତାକୁ କାମ କରିବାକୁ ଦିଆଗଲା ନାହିଁ । ବିଭିନ୍ନ ରାଜନୈତିକ ଚାପ ପ୍ରୟୋଗ କରି ତାକୁ ଏକ ପ୍ରକାର ଅକାମି କରି ଦିଆଗଲା । ଓଡ଼ିଶାରେ ରାଜନୈତିକ କନ୍ଦଳ ବିହାର ଅପେକ୍ଷା ମୋଟେ କମ ନୁହେଁ । ଯେଉଁଠି ନ ଥିଲା ସେଠି କନ୍ଦଳଟିଏ ପୂରେଇବାକୁ କେତେ ସମୟ ଲାଗେ ? କୋଉଠି ସରପଞ୍ଚ ଗିରଫ ହେଲାଣି ତ ଆଉ କେଉଁଠି ପଞ୍ଚାୟତ

ଚେୟାରମ୍ୟାନଙ୍କ ସନ୍ତାନ ସଂଖ୍ୟା ବେଶି ଥିବାରୁ ତାଙ୍କ ବିରୋଧରେ ମୋକଦ୍ଦମା । ଯଦି କୋଉଠି କିଛି ନାହିଁ ସେଠି ନାରୀ ସମ୍ପର୍କିତ ମୋକଦ୍ଦମାଟିଏ ସୃଷ୍ଟି କରିବାକୁ ମୋଟେ ସମୟ ଲାଗେ ନାହିଁ । ଥରେ ପଞ୍ଚାୟତ ସମିତିଟି ମାଲି ମୋକଦ୍ଦମାରେ ଜଡ଼ିତ ହୋଇଗଲା ପରେ ସେଠି ଆଉ କି କାମ ହୋଇ ପାରିବ ?

ଓଡ଼ିଶାରେ ପଞ୍ଚାୟତଗୁଡ଼ିକ ଏହିପ୍ରକାର ଦୋଦୁଲ୍ୟମାନ ଅବସ୍ଥାରେ ଥିଲାବେଳେ ହଠାତ୍ ରାଜନୈତିକ ଚକ ଘୂରିଗଲା ଏବଂ ଏକ ଦଳିଆ ମନ୍ତ୍ରୀମଣ୍ଡଳ ବଦଳରେ ଦୁଇ ଦଳିଆ ମନ୍ତ୍ରୀମଣ୍ଡଳ ଆସିଗଲା । ସମସ୍ତେ ଆଶା କରୁଥିଲେ ଯେ ଏଥର ହୁଏତ ଅବସ୍ଥା ସୁଧୁରି ଯିବ । କେନ୍ଦ୍ରର ସମର୍ଥନ ଲାଭ କରୁଥିବା ଯେ କୌଣସି ରାଜ୍ୟ ସରକାରଠାରୁ ଲୋକେ ଅନେକ କିଛି ଆଶା କରନ୍ତି; କିନ୍ତୁ ସେ କଥା ହେଲା ନାହିଁ । ନବୀନ ସରକାର ଆସୁ ଆସୁ କହିଲେ, ପଞ୍ଚାୟତଗୁଡ଼ିକୁ ଭାଙ୍ଗି ଦିଆଯିବ । ଏକଥା ଶୁଣିଲା ମାତ୍ରେ ଯେଉଁ ପଞ୍ଚାୟତଗୁଡ଼ିକ ସୁକୁ ସୁକୁ ହେଉଥିଲେ ସେମାନଙ୍କ ଜୀବନ ନାଡିକା ହଠାତ୍ ବନ୍ଦ ହୋଇଗଲା । ସବୁଠି ଗୋଟିଏ କୋକୁଆ ଭୟ । ସତରେ ଭାଙ୍ଗିଗଲା କି ? ତେଣୁ ଯେଉଁଠି ଟିକିଏ କାମ ହେଉ ଥିଲା ସେଠି ସବୁ ଅଟକି ଗଲା । ସବୁଠୁ ବଡ଼କଥା ହେଲା ସେ ଅଞ୍ଚଳର କଣ୍ଟ୍ରୋଲ ଦୋକାନୀ କିଏ, ସେ କଥା ମଧ୍ୟ ଜଣା ପଡୁ ନାହିଁ । ଚାଉଳ, ଅଟା, କିରାସିନି ବ୍ଲକରୁ ଆସୁଛି କି ନା ସେସବୁ ଏବେ ସ୍ୱପ୍ନର କଥା । ରାଜ୍ୟ ସରକାର ଛ'ମାସ ହେଲା ସ୍ପଷ୍ଟ କହୁ ନାହାନ୍ତି ପଞ୍ଚାୟତ ରହିବ ନା ଭାଙ୍ଗିବ । ''ଆଇନ ବିଭାଗ ସହିତ କଥାବାର୍ତ୍ତା ଚାଲିଛି ।'' ଫଳରେ ସମଗ୍ର ପଞ୍ଚାୟତ ବ୍ୟବସ୍ଥା ଏବେ ସ୍ଥାଣୁ ଅବସ୍ଥାରେ । ଠିକ୍ ସେଇ ଅବସ୍ଥା ମଧ୍ୟ ଜିଲ୍ଲା ପରିଷଦମାନଙ୍କର- ସମସ୍ତେ ତ୍ରିଶଙ୍କୁ ।

ଅବସ୍ଥା ଏଇ ପ୍ରକାର ଥିବାବେଳେ ହଠାତ୍ କେନ୍ଦ୍ର ସରକାର ଘୋଷଣା କଲେ ଯେ ସେମାନେ ଓଡ଼ିଶାର ପଞ୍ଚାୟତମାନଙ୍କରେ ରାସ୍ତା ନିର୍ମାଣ ଓ ମରାମତି ପାଇଁ ୨୧୨ କୋଟି ଟଙ୍କା ଦେବେ ଏବଂ ତାକୁ ଏଇ ଆର୍ଥିକ ବର୍ଷରେ ହିଁ ଖର୍ଚ୍ଚ କରିବାକୁ ପଡ଼ିବ । କେନ୍ଦ୍ର ନିର୍ଦ୍ଦେଶ ଦେଇଛି ଯେ ଏ କାମ ଗ୍ରାମ୍ୟ ଉନ୍ନୟନ ବିଭାଗ ଦ୍ୱାରା ହେବ । ଏହି ବିଭାଗଟି ଏବେ ବିଜେପି ହାତରେ ଅଛି । ମୁଖ୍ୟ ଅଂଶୀଦାର ବିଜେଡି ଏ କଥା କେମିତି ସହ୍ୟ କରନ୍ତା ଯେ ତାଙ୍କର କନିଷ୍ଠ ଅଂଶୀଦାରଟି ଏତେ ଟଙ୍କା ଖର୍ଚ୍ଚ କରିବାର ସୁଯୋଗ ପାଇବ ? ସବୁ ସରକାରୀ ଖର୍ଚ୍ଚ ତ ରାଜ ନେତାମାନଙ୍କର ଗୋଟିଏ ବିରାଟ ସୁଯୋଗ । ତାକୁ ହାତଛଡ଼ା କଲେ ରାଜନୀତି ପଣିଆ ବୃଥା । କୋଉଠି କ'ଣ କାମ ହେବ ସେଇଟା ଅଲଗା କଥା । ଖର୍ଚ୍ଚଟାତ ଅସଲ କଥା । ଏବେ ତାକୁଇ ନେଇ ଟଣାଓଟରା ଯେତିକି ଘନେଇ ଆସୁଛି ଗ୍ରାମାଞ୍ଚଳର ଲୋକଙ୍କ ଭାଗ୍ୟ ସେତିକି ହା ହୁତାଶ ଓ ଅନିଶ୍ଚିତତା ଆଡ଼କୁ ପାଖେଇ ଯାଉଛି । ■

(ସମାଜ-୧୯-୧୦-୨୦୦୦)

# ବୃତ୍ତି, ପ୍ରବୃତ୍ତି ଓ ଅଧୋଗତି

ଚଳିତ ନଭେମ୍ବର ପହିଲା ତାରିଖଠାରୁ ଓଡ଼ିଶାରେ ବୃତ୍ତି କର ଲାଗୁ କରା ଯାଇଛି । ଏହି ଆଇନ ଦ୍ୱାରା ମାସିକ ପାଞ୍ଚ ହଜାର ଟଙ୍କା ଦରମା ପାଉଥିବା ସବୁ କର୍ମଚାରୀ ସରକାରଙ୍କୁ ବୃତ୍ତି କର ଦେବେ । ଯେଉଁମାନେ ବ୍ୟବସାୟ ବାଣିଜ୍ୟ କରୁଛନ୍ତି ସେମାନେ ମଧ୍ୟ ଦେବେ । ଡ଼ାକ୍ତର ଓ ଓକିଲ ମଧ୍ୟ ଏହି ଆଇନ ଭିତରକୁ ଆସି ଯିବେ । ତେବେ ଏ ସମସ୍ତଙ୍କ ପାଇଁ ଅଲଗା ଅଲଗା ଥାକ ରଖା ଯାଇଛି; କିନ୍ତୁ କୌଣସି କ୍ଷେତ୍ରରେ ସେ ଟିକସ ୨୫୦୦ ଟଙ୍କାରୁ ବେଶି ହେବ ନାହିଁ । ଏହା ଫଳରେ ସର୍ବୋଚ୍ଚ ରୋଜଗାର କରୁଥିବା ଲୋକ ବିତାଇଥିବା ବର୍ଷ ଅନୁସାରେ ଦେଉ ଥିବାରୁ ବେଶି ଦେବାକୁ ବାଧ୍ୟ ହେବ- ସେ ରୋଜଗାର କରୁ କି ନ କରୁ । ତେଣୁ ଏହା ସମାନୁପାତିକ ହେଉ ନାହିଁ ବୋଲି କୁହା ଯାଉଛି । ଯେମିତିକି ବ୍ୟବସାୟ କ୍ଷେତ୍ରରେ ଜଣେ ପନ୍ଦର ଲକ୍ଷ ରୋଜଗାର କଲେ ଯେତିକି ଦେବ ତିରିଶି ଲକ୍ଷ ରୋଜଗାର କଲେ ମଧ୍ୟ ସେତିକି ଦେବ । ଦରମା କ୍ଷେତ୍ରରେ ମଧ୍ୟ ସେଇ ନୀତି । କୋଡ଼ିଏ ହଜାର ଟଙ୍କା ଆୟ କଲେ ଯାହା, ୪୦ ହଜାର ଟଙ୍କା ଆୟ କଲେ ମଧ୍ୟ ସେଇଆ । ସର୍ବୋଚ୍ଚ ସୀମା ଧାର୍ଯ୍ୟ କରିବା ଦ୍ୱାରା ବଡ଼ ବଡ଼ିଆଙ୍କୁ ଅଧିକ ସୁରକ୍ଷା ଦିଆଗଲା ।

ରାଜେନ୍ଦ୍ର ନାରାୟଣ ସିଂହଦେଓ ଯେତେବେଳେ ମୁଖ୍ୟମନ୍ତ୍ରୀ ଥିଲେ ସେତେବେଳେ ସେ ଭୂ-ରାଜସ୍ୱ ସଂପୂର୍ଣ୍ଣ ଛାଡ଼ କରି ଦେଇ ଥିଲେ । ଏଥିରେ ମଧ୍ୟ ବଡ଼ ବଡ଼ିଆଙ୍କୁ ବେଶି ସୁବିଧା ଦିଆ ଯାଇଥିଲା । ଯାହାର ଯେତେ ବେଶି ଜମି ସେ ସେତିକି ଅଧିକ ଛାଡ଼ ପାଇଲା ।

ଏକ ସ୍ୱାଧୀନ ଦେଶର ସରକାର ଗଣତାନ୍ତ୍ରିକ ନିୟମକୁ ଅନୁସରଣ କରୁ ଥିବାବେଳେ ଏ ପାତର ଅନ୍ତର କଥା କେମିତି ଚିନ୍ତା କରେ କେଜାଣି ? ଆମ ଦେଶରେ ଏବେ ୨୦ ହଜାରରୁ ବେଶି ଦରମା ବା ୧୫ ଲକ୍ଷରୁ ଅଧିକ କାରବାର କରୁଥିବା ଲୋକଙ୍କ ସଂଖ୍ୟା ଅନେକ ବେଶି । ସେମାନଙ୍କ ଉପରେ ସେଇ ଅନୁସାରେ କର ଧାର୍ଯ୍ୟ କରି ଥିଲେ କ'ଣ କ୍ଷତି ହୋଇ ଥାଆନ୍ତା ?

ବୃତ୍ତିକର ଆଇନରୁ ବେଶି ଲାଭବାନ ହେବେ ମନ୍ତ୍ରୀ, ବିଧାୟକ ଓ ସାଂସଦମାନେ । କାରଣ ସେମାନଙ୍କ ଭିତରୁ ଅଧିକାଂଶ ଆୟକର ଦିଅନ୍ତି ନାହିଁ । ସେମାନଙ୍କୁ ସାମାନ୍ୟ ଦରମା ଦିଆ ଯାଏ ବୋଲି ବେଶି ପରିମାଣରେ କର-ରହିତ ଭତ୍ତା ଦିଆ ଯାଏ । ଯେଉଁ ଭତ୍ତା ଦିଆ ଯାଏ ତାହା ସେମାନଙ୍କ ପ୍ରକୃତ ଆବଶ୍ୟକତା

ଅପେକ୍ଷା ଯଥେଷ୍ଟ ବେଶି । ସେ ସବୁ ଏକ ପ୍ରକାର ଲାଭଜନକ ଆୟ ଥିଲେ ମଧ୍ୟ ତାହା ଆୟକର ଆଇନ ଭିତରକୁ ଆସେ ନାହିଁ । ସବୁ ଲୁଚାୟିତ ଥାଏ ବୋଲି ମନ୍ତ୍ରୀମାନେ ଏ ଯାଏ ସମ୍ପତ୍ତି ତାଲିକା ଦେଇ ନାହାନ୍ତି । ଜଣେ ସାଂସଦଙ୍କର ଏବେ ପ୍ରକୃତ ମାସିକ ଆୟ କେତେ ତାହା ଠିକ୍ ଭାବେ ଜାଣିବା ସମ୍ଭବ ନୁହେଁ । ତେବେ ଗୋଟାଏ ଆନୁମାନିକ ହିସାବରୁ ତାହା ଏକ ଲକ୍ଷରୁ କମ୍ ହେବ ନାହିଁ ବୋଲି ଗୋଟିଏ ସମ୍ବାଦରେ ପ୍ରକାଶ ପାଇଥିଲା । ସେମାନଙ୍କର ବିଭିନ୍ନ ସୁବିଧା ସୁଯୋଗ ଦିନକୁ ଦିନ ବଢୁଛି । ସେଥିପାଇଁ କୌଣସି ସ୍ୱତନ୍ତ୍ର ଅନୁମୋଦନ ଆବଶ୍ୟକ ହୁଏ ନାହିଁ । ଆଗରୁ ସେମାନଙ୍କୁ ମାଗଣାରେ କମ୍ପୁଟର ଦିଆ ଯାଇଥିଲା । ଏବେ ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ ଇଣ୍ଟରନେଟ୍ ସହିତ ଆଉ ଗୋଟିଏ ଟେଲିଫୋନ ମଧ୍ୟ ଦିଆ ଯାଉଛି । ଏସବୁ ସୁବିଧା ସୁଯୋଗ ଅବଶ୍ୟ ରୋଜଗାର ଭିତରକୁ ଆସେ ନାହିଁ । ସେମିତି ସେମାନଙ୍କର ମେଡ଼ିକାଲ ଖର୍ଚ୍ଚ, ଯିଏ ଯେତେ ନେଇ ପାରିଲା, ତାର ହିସାବ ନ ଥାଏ କି ଖର୍ଚ୍ଚର ସୀମା ନ ଥାଏ । ମିଛ ବିଲ୍ ଦେଲେ ମଧ୍ୟ କେହି କହିବାକୁ ନାହିଁ । କହିବାର ଉଦ୍ଦେଶ୍ୟ ହେଉଛି, ଏହି ଗୋଷ୍ଠୀଟି ଏବେ ସବୁ ପ୍ରକାର ଆଇନର ଉର୍ଦ୍ଧ୍ୱରେ । ସେମାନଙ୍କୁ ଧରିବାକୁ ଆଇନର ଲମ୍ବା ହାତଟିକୁ ସବୁବେଳେ ଛୋଟ କରି ଦିଆ ଯାଏ । ଯେଉଁମାନେ ଆଇନ ତିଆରି କରନ୍ତି ସେମାନେ ନିଜକୁ ସେ ଜାଲରୁ ଦୂରରେ ରଖିବାକୁ ରାସ୍ତା ମଧ୍ୟ ରଖି ଥାଆନ୍ତି । ଏହା ହିଁ ଏକମାତ୍ର କାରଣ ଯୋଉଥିପାଇଁ ଆମର ସଂସଦୀୟ ଇତିହାସ କହୁଛି, ବିଧାନସଭାରେ ହେଉ ବା ଲୋକସଭାରେ ହେଉ ଯେତେବେଳେ ଲୋକଙ୍କ ପାଇଁ କୌଣସି ବିଲ୍ ଆସେ ସେତେବେଳେ ତା' ଉପରେ ଘମାଘୋଟ ଲଢ଼େଇ ଚାଲେ ଏବଂ ତାହା ବେଳେ ବେଳେ ମାସ ମାସ ଏପରିକି ବର୍ଷ ବର୍ଷ ଚାଲିଯାଏ- ପାଶ୍ ହୋଇ ପାରେନା; କିନ୍ତୁ ଯେତେବେଳେ ମହାମାନ୍ୟ ସଦସ୍ୟମାନଙ୍କ ପାଇଁ କୌଣସି ବିଲ୍ ଆସେ, ବିଶେଷକରି ସେମାନଙ୍କ ଦରମା, ଭତ୍ତା ଓ ଅନ୍ୟାନ୍ୟ ସୁଖ, ସୁବିଧା ପାଇଁ ତାହା ପାସ୍ କରିବାକୁ ଗୋଟାଏ ମିନିଟ ମଧ୍ୟ ଲାଗେନା । ତା' ଉପରେ କେହି ଆଲୋଚନା କରନ୍ତି ନାହିଁ । ଏହା ହିଁ ହେଲା ଆମ ଗଣତନ୍ତ୍ରର ଦୟନୀୟ ଇତିହାସ ।

ତେବେ ସେ ଯା' ହେଉ ଓଡ଼ିଶା ସରକାର ଏହି ବୃତ୍ତି କରରୁ ବାର୍ଷିକ ୮୦ରୁ ୧୦୦ କୋଟି ଟଙ୍କା ପାଇବେ ବୋଲି ହିସାବ କରିଛନ୍ତି । ସରକାର ଯେତେବେଳେ ଏ ବିଲ୍ ବିଧାନସଭାରେ ଗତ ଜୁଲାଇ ମାସରେ ଆଣିଲେ ସେତେବେଳେ କହିଲେ ଯେ ଅଧିକ ଅର୍ଥ ସଂଗ୍ରହ ନ କଲେ ରାଜ୍ୟରେ ଉନ୍ନୟନମୂଳକ ଯୋଜନା ହୋଇ ପାରିବ ନାହିଁ । ରାଜ୍ୟ ତ ଋଣଭାରରେ ବୁଡ଼ି ରହିଛି, ନିଅଣ୍ଟିଆ ବଜେଟକୁ ସମତୁଲ କରିବାକୁ ପଡ଼ିବ । ଅବଶ୍ୟ ଏ ବିଲ୍ର ଇତିହାସ ଆଉ ଟିକିଏ ପୁରୁଣା । ପ୍ରଥମେ ଏହି ବିଲ୍କୁ ଜାନକୀ ବଲ୍ଲଭ ପଟ୍ଟନାୟକ ସରକାର ଆଣିବାକୁ ସ୍ଥିର କରିଥିଲେ । ସେତେବେଳେ ଅନ୍ୟମାନେ ତାର ପ୍ରବଳ ବିରୋଧ କରିଥିଲେ । ଏହି ବିରୋଧିତାକୁ ସମ୍ମାନ ଦେଇ ସେତେବେଳେ ସରକାର ତାକୁ ବିଧାନସଭାରେ ଉପସ୍ଥାପିତ କରି ନଥିଲେ; କିନ୍ତୁ ମାତ୍ର

କେଇ ମାସ ପରେ ସରକାର ବଦଳି ଗଲା ପରେ ଯେଉଁମାନେ ସେତେବେଳେ ବିଲ୍‌କୁ ବିରୋଧ କରିଥିଲେ ସେଇମାନେ ପୁଣି ସେହି ବିଲ୍‌କୁ ଆଣି ପାସ୍ କରାଇ ନେଲେ । ରାଜନୀତିରେ ଯେ ନୀତି ନିୟମ କିଛି ନ ଥାଏ ଏଇଟା ତାର ଗୋଟିଏ ଉଦାହରଣ ।

ତେବେ ଏ କଥା ସତ ଯେ ଲୋକଙ୍କ ଉପରେ କର ନ ବସେଇଲେ କିମ୍ବା ଅଧିକ ଅର୍ଥ ସଂଗୃହୀତ ନ ହେଲେ ଉନ୍ନୟନମୂଳକ ଯୋଜନାଗୁଡ଼ିକ କାର୍ଯ୍ୟକାରୀ ହୋଇପାରେ ନାହିଁ । ଅନ୍ୟ ଦିଗରୁ ଦେଖିଲେ ଓଡ଼ିଶାର ଆର୍ଥିକ ଅବସ୍ଥା ଏବେ ଅତ୍ୟନ୍ତ ଖରାପ । ଅବସ୍ଥା ଏତେ ତଳକୁ ଖସି ଗଲାଣି ଯେ ସରକାର ତାଙ୍କ କର୍ମଚାରୀମାନଙ୍କ ଭିତରୁ ଅଧେ କମେଇବାକୁ ବସିଲେଣି । ବିଶ୍ୱ ବ୍ୟାଙ୍କ ଏଥିପାଇଁ ବାରମ୍ବାର ଚାପ ପ୍ରୟୋଗ କରୁଛି । ଏବେ ତ ବିଶ୍ୱବ୍ୟାଙ୍କ ହିଁ ଆମର ମାଲିକ । ସେମାନଙ୍କ ପାଖରେ ଆମ ମୁଣ୍ଡ ବିକ୍ରି ସରିଚି । ଆମେ ସେଥିରୁ ଆଉ ମୁକୁଳି ପାରିବାର ସମ୍ଭାବନା ନାହିଁ । ତାଙ୍କ ଉପରେ ଆମେ ଏତେ ପରିମାଣରେ ନିର୍ଭରଶୀଳ ହୋଇ ପଡ଼ିଛୁଁ ଯେ ସେମାନଙ୍କର ଦୟା ନ ହେଲେ ଆମ ଗ୍ରାମରେ ପ୍ରାଇମେରୀ ସ୍କୁଲଟିଏ ଖୋଲା ହୋଇପାରିବ ନାହିଁ କି ଅଫିସରେ ପିଅନଟିଏ ମଧ୍ୟ ନିଯୁକ୍ତି ପାଇବ ନାହିଁ । ଆମର କେତେ ସ୍କୁଲ, କଲେଜ ରହିବ ସେ କଥା ମଧ୍ୟ ସେମାନେ ସ୍ଥିର କରିବେ । ଆମେ କାହାରିକୁ ଚାକିରି ଦେଇପାରିବୁଁ ନାହିଁ ।

ଆମ ରାଜ୍ୟରେ ଏବେ ସରକାରୀ ହିସାବ ଅନୁସାରେ ଆଠ ଲକ୍ଷରୁ ଅଧିକ ବେକାର ଅଛନ୍ତି । ଏମାନଙ୍କ ଭିତରୁ ୧୯୯୮ ସୁଦ୍ଧା ୫.୬୫ ଲକ୍ଷ ମାଟ୍ରିକୁଲେଟ ଏବଂ ୧.୬୭ ଲକ୍ଷ ଗ୍ରାଜୁଏଟ ଓ ପୋଷ୍ଟ ଗ୍ରାଜୁଏଟ୍ । ତା'ଛଡା ବହୁ ପରିମାଣରେ ଇଞ୍ଜିନିୟର, ଡ଼ାକ୍ତର, ଡ଼ିପ୍ଲୋମା ଇଞ୍ଜିନିୟର, ସି.ଟି. ଏବଂ ବି.ଇଡ଼ି. ମଧ୍ୟ ଅଛନ୍ତି । ଗୋଟିଏ ଦିଗରେ ଏପରି ଅବସ୍ଥା ଥିଲାବେଳେ ଆମେ ଏବେ ହଜାର ହଜାର ସଂଖ୍ୟାରେ ଛଟେଇ ଓ ସ୍ୱେଚ୍ଛାମୂଳକ ଅବସର ଯୋଜନା ଆରମ୍ଭ କଲୁଣି । ଶିଳ୍ପ କାରଖାନା ସବୁ ବନ୍ଦ ହୋଇ ଗଲାଣି, ନଚେତ ସେମାନଙ୍କ ଜୀବନ ନାଟିକା ଦୂକୁ ଦୂକୁ ହୋଇ ଚାଲୁଛି । ରାଜ୍ୟର ସବୁଠାରୁ ବଡ଼ ଇସ୍ପାତ କାରଖାନା ରାଉରକେଲା ଇସ୍ପାତ କାରଖାନାର ଅବସ୍ଥା ଆହୁରି ଶୋଚନୀୟ । ସେଠି କର୍ତ୍ତୃପକ୍ଷ କର୍ମରାରୀମାନଙ୍କୁ ବ୍ୟକ୍ତିଗତ ଭାବରେ ନୋଟିସ ଦେଇ ଜଣେଇ ଦେଲେଣି ଯେ ଆମେ ଏବେ ଦରମା ଗଣ୍ଡାକ ମଧ୍ୟ ଠିକ୍ ସମୟରେ ଦେଇ ପାରିବୁ କି ନା ସନ୍ଦେହ । ଟାଉନ୍‌ସିପ୍ ଅଞ୍ଚଳର କର୍ମଚାରୀଙ୍କ ଘର ଭିତରକୁ ପଶିଗଲେ ସେ ଦୟନୀୟ ଅବସ୍ଥା କଥା ଜଣା ପଡ଼େ ।

ଚାକିରିଆମାନଙ୍କ ଭିତରେ ଯେତେବେଳେ ଏଇ ଅବସ୍ଥା ସେତେବେଳେ ଅଣଚାକିରିଆ, ଯେଉଁମାନଙ୍କର ସ୍ଥାୟୀ ରୋଜଗାରର ପନ୍ଥା କିଛି ନାହିଁ, ଦିନ ମଜୁରିଆ, ଖଟିଖିଆ- ଏମାନଙ୍କ ଅବସ୍ଥା ଆହୁରି ଶୋଚନୀୟ । ଚାଉଳ ଓ କିରାସିନି ଦର ବଢ଼ିବା ଠାରୁ ଏମାନେ କୌଣସି ପ୍ରକାରେ ଖାଲି ବଞ୍ଚିଛନ୍ତି ବୋଲି କହିବାକୁ ହେବ । ଆମ ସରକାରଙ୍କ ନୀତି ମଧ୍ୟ ଏପରି ଲୋକାଭିମୁଖୀ ଯେ ଏଥର କେନ୍ଦ୍ର ସରକାର ତାଙ୍କ ବଜେଟରେ ସେଲଫୋନ ଓ କମ୍ପ୍ୟୁଟରର ଦାମ କମେଇ ଦେଇ ଚିନି, ଚାଉଳ ଓ

କିରାସିନିର ଦାମ ବଢ଼େଇ ଦେଲେ । ପରେ ପରେ ସବୁ ପ୍ରକାର ତେଲ ଓ ଗ୍ୟାସର ଦାମ ମଧ୍ୟ ବଢ଼ିଲା । ବଜାର ଦର ହୁ ହୁ ହୋଇ ବଢ଼ିବାରୁ ମଧ୍ୟବିତ୍ତ ଓ ନିମ୍ନ ମଧ୍ୟବିତ୍ତ ତଳି ତକାତ ହୋଇଗଲେ । ଦାରିଦ୍ର୍ୟର ସୀମାରେଖା ତଳେ ଥିବା ଲୋକମାନେ ଆହୁରି କ୍ଷତିଗ୍ରସ୍ତ ହେଲେ । ସେମାନେ ସବା ତଳକୁ ଚାଲିଗଲେ ।

କର ଭାର ବା ବଜାରର ଦରବୃଦ୍ଧି ଉଚ୍ଚବର୍ଗର ଲୋକଙ୍କୁ ମୋଟେ ବାଧେ ନାହିଁ । କାରଣ ସେମାନଙ୍କ ଆୟ ତୁଳନାରେ ଖର୍ଚ୍ଚ ଯଥେଷ୍ଟ କମ୍ । ତଳି ତକାତ ହୁଅନ୍ତି କେବଳ ସେମାନଙ୍କ ତଳେ ଥିବା ଲୋକମାନେ । କହିବାର ଉଦ୍ଦେଶ୍ୟ ହେଉଛି ଆମ ସାଧାରଣ ଜନ ଜୀବନ ଏହି ପ୍ରକାର ଶୋଚନୀୟ ଅବସ୍ଥା ଭିତର ଦେଇ ଗତି କରୁ ଥିଲାବେଳେ ବୃତ୍ତି କର ସେମାନଙ୍କୁ ଆହୁରି ତଳକୁ ତଳକୁ ନେଇଯିବ ।

ସେମାନଙ୍କ ମେରୁଦଣ୍ଡ ସଂପୂର୍ଣ୍ଣ ଭାଙ୍ଗିଯିବ । ମୁଁ ବହୁ ଓକିଲଙ୍କୁ ଜାଣେ, ଯେଉଁମାନେ ଦଶ ବାର ବର୍ଷ କାମ କଲା ପରେ ମଧ୍ୟ ବହୁ କଷ୍ଟରେ ଜୀବନ ବିତାଉଛନ୍ତି । ସେମାନଙ୍କ ଭିତରୁ କେତେକ କୋର୍ଟରୁ ଫେରି ଦୋକାନରେ କାମ କରନ୍ତି ଏବଂ ଆଉ କେତେକ ଏଯାଏ ବିବାହ ମଧ୍ୟ କରି ପାରି ନାହାନ୍ତି । ସେମାନେ କିନ୍ତୁ ସବୁ ପ୍ରକାର ପାଠ ପଢ଼ି ସାରିଛନ୍ତି । ଏ ଦୁରବସ୍ଥା ଭିତରେ ସେମାନେ କର ଦେଇ ପାରିବେ ? ଖାଲି ରିଟର୍ଣ୍ଣଯିଏ ଦାଖଲ କରିବାକୁ ଯେଉଁ 'ହାତଗୁଞ୍ଜା' ଦରକାର ସେତକ ମଧ୍ୟ ତାଙ୍କ ପାଖରେ ନାହିଁ । ସର୍ଦ୍ଦାର ପଟେଲଙ୍କ ଜନ୍ମ ତିଥିରେ ଶପଥ ନେଇଛନ୍ତି ବୋଲି ସେମାନେ କ'ଣ ଚିରାଚରିତ ପ୍ରଥାରେ ଆଞ୍ଚ ଆଣି ହାତଗୁଞ୍ଜା ଗ୍ରହଣ କରିବେ ନାହିଁ ?

ସରକାର ବୃତ୍ତି ଟିକସ ସେତିକି ବେଳେ ଆରମ୍ଭ କରିଛନ୍ତି ଯେତେବେଳେ ଆମ ରାଜ୍ୟ ଉତ୍କଟ ମରୁଡ଼ିର ସମ୍ମୁଖୀନ ହୋଇଛି । ହଜାର ହଜାର ସଂଖ୍ୟାରେ ଆମର ପଶ୍ଚିମାଞ୍ଚଳରୁ ଆଦିବାସୀ ଓ ହରିଜନମାନେ ଗାଁ ଛାଡି ଅନ୍ୟ ରାଜ୍ୟକୁ ଖାଦ୍ୟ ଓ କାମ ଅନ୍ୱେଷଣରେ ବାହାରି ଗଲେଣି ବୋଲି ପ୍ରାୟ ପ୍ରତିଦିନ ସମ୍ବାଦପତ୍ରମାନେ ଲେଖୁଛନ୍ତି । କାଁ ଭାଁ ଅନାହାର ମୃତ୍ୟୁର ଖବର ମଧ୍ୟ ପ୍ରକାଶ ପାଇଲାଣି । ସରକାର ଏଥିପାଇଁ କେବଳ ମେମୋରାଣ୍ଡାମଟିଏ କେନ୍ଦ୍ରକୁ ପଠାଇ ଦେଇ ହାତ ସଫା କରି ଦେଇ ବସିଛନ୍ତି । ପଚାରିଲେ କହୁଛନ୍ତି ''ଆମ ପାଖରେ ପଇସା କାହିଁ'' ?

ମହାବାତ୍ୟାର ଦାଗ ଏ ଯାଏ ଶୁଖି ନାହିଁ । ଏବେ ଏବେ ଆମେ ତାର ଏକ ବର୍ଷ ପୂର୍ତ୍ତି ପାଳନ କଲୁଁ ଏବଂ ମହାସମାରୋହରେ ଟି.ଭି. ଓ ଭିଡିଓ କେମେରା ସାମନାରେ ପୁଣି ଥରେ ଶପଥ ନେଲୁଁ ଯେ ଆମେ ଆଉ ଥରେ ମହାବାତ୍ୟା ହେଲେ ଦମ୍ଭ ଓ ସଚ୍ଚୋଟତାର ସହିତ କାମ କରିବୁଁ । ଏକଥା ଅବଶ୍ୟ ସତ ଯେ ମହାବାତ୍ୟା ହଜାର ହଜାର ଲୋକଙ୍କୁ ରସାତଳଗାମୀ କରାଇଥିଲାବେଳେ ବହୁ ପ୍ରଶାସନିକ ଅଧିକାରୀ ଓ ରାଜନେତାଙ୍କ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ସ୍ଥିତିକୁ ବେଶ୍ ସୁଦୃଢ଼ କରାଇ ପାରିଛି । ମହାବାତ୍ୟା ବହୁ ଲୋକଙ୍କୁ ଅଟଳାଟଳ ସମ୍ପତ୍ତିର ଅଧିକାରୀ କରେଇ ଦେଇଛି ।

ଓଡ଼ିଶାରେ ବୃତ୍ତିକର ଏପରି ସମୟରେ ଲାଗୁ ହେଲା ଯେ ଯେତେବେଳେ ରାଜ୍ୟ ମହାବାତ୍ୟା, ମରୁଡ଼ି, ଉତ୍କଟ ଆର୍ଥିକ ସଂକଟ, ବେକାରୀ, ଆଖିବୁଜା ଶ୍ରମିକ ଛଟେଇ, କଳ କାରଖାନାର ପୁଞ୍ଜି ପ୍ରତ୍ୟାହାର ଓ ଉତ୍ପାଦନ ହ୍ରାସ ଏବଂ ଅନ୍ୟାନ୍ୟ ଅନେକ ଅକଥ୍ୟ ଜୀବନ ଯନ୍ତ୍ରଣା ଭିତର ଦେଇ ଗତି କରୁଛି । ସବୁଠାରୁ ଆଶ୍ଚର୍ଯ୍ୟର କଥା ଯେ ସରକାର ଏହି ଟିକସ ଯାହା ମାଧ୍ୟମରେ ସଂଗ୍ରହ କରିବେ ସେ ସଂସ୍ଥା ଆଜିଯାଏ ବ୍ୟବସାୟୀ ସଂସ୍ଥାମାନଙ୍କଠାରୁ ହଜାର ହଜାର କୋଟି ଟଙ୍କା ଆଦାୟ କରିପାରୁ ନାହିଁ ବୋଲି ରାଜ୍ୟରେ ରେକର୍ଡ଼ ସୃଷ୍ଟି କରିଛି । ତେବେ ପ୍ରକୃତ ଫଳାଫଳ ବର୍ଷକ ପରେ ଜଣାପଡ଼ିବ ।

ଯା ଭିତରେ ଆଉ ଏକ ଚାଞ୍ଚଲ୍ୟକର ସମ୍ବାଦ ପ୍ରକାଶ ପାଇଛି । ଏବେ କୁଆଡ଼େ ଓଡ଼ିଶା ସରକାର ବିଧାୟକମାନଙ୍କର ଅବସରକାଳୀନ ମନୋରଞ୍ଜନ ପାଇଁ ପୁରୀ ସମୁଦ୍ର କୂଳରେ ଗୋଟିଏ ଉନ୍ନତମାନର ତଥା ବିଳାସପୂର୍ଣ୍ଣ ଅତିଥିଶାଳା ନିର୍ମାଣ କରିବେ । ଏଥିରେ କେତେ ଲକ୍ଷ କି କୋଟି ଖର୍ଚ୍ଚ ହେବ ସେ କଥା ଜଣାପଡ଼ି ନାହିଁ । ତେବେ କେହି କେହି କହୁଛନ୍ତି ଯେ ପାଞ୍ଚତାରକା ହୋଟେଲ ମାନର ହେବ ଏବଂ ଏଥିରେ ବାର, ହେଲଥ କ୍ଲବ, ସୁଇମିଂ ପୁଲ ଓ ଭିଡିଓ ଗେମର ମଧ୍ୟ ବ୍ୟବସ୍ଥା ରହିବ । ଆଉ କେହି କେହି ଏହା କର୍ଣ୍ଣାଟକ ସରକାର କରିଥିବା (ବିଧାୟକଙ୍କ ପାଇଁ) ଅତିଥିଶାଳା ପରି ହେବ ଏବଂ ଏଥିରେ ଯୋଗ ତଥା ପ୍ରାକୃତିକ ଉପାୟରେ ସ୍ୱାସ୍ଥ୍ୟରକ୍ଷା ମଧ୍ୟ ଶିକ୍ଷା ଦିଆଯିବ ବୋଲି କହୁଛନ୍ତି । ଯାର ଅନ୍ୟ ନାମ ହେଲଥ କ୍ଲବ କି ନା ଆମେ ଜାଣୁନା । ଠିକ୍ ସେହିପରି ଆଉ ଏକ ଅତିଥିଶାଳା ମଧ୍ୟ ଭୁବନେଶ୍ୱରରେ ହେବ । ତା' ସହିତ ସେକ୍ରେଟାରୀଏଟ ଓ ବିଧାନସଭାକୁ ସମସ୍ତ ପ୍ରକାର ଆଧୁନିକ ସାଜସରଞ୍ଜାମ ଓ ବିଳାସପୂର୍ଣ୍ଣ ଯନ୍ତ୍ରପାତିରେ ସଜ୍ଜିତ କରାଯିବ । କୋଟି କୋଟି ଟଙ୍କା ଏଥିରେ ଯିବ । ଲୋକପ୍ରତିନିଧିମାନଙ୍କ ବିଳାସ ବ୍ୟସନ ଏବେ ସୀମା ଟପିଲାଣି । ଏଇ ଅଳ୍ପଦିନ ତଳେ ମନ୍ତ୍ରୀମାନଙ୍କର ଘର ଓ ଅଫିସ ସାଜସଜ୍ଜାରେ କୋଟି କୋଟି ଟଙ୍କା ଖର୍ଚ୍ଚ ହୋଇଥିବାର ସମ୍ବାଦ ପ୍ରକାଶ ପାଇଥିଲା ।

ଆସନର ସୁରକ୍ଷା ପାଇଁ ସରକାର ଯେ କୌଣସି ଖର୍ଚ୍ଚ ଲାଗି ପଛଘୁଞ୍ଚା ଦେବେ ନାହିଁ । ଏଥିପାଇଁ ଗୋଟିଏ ବୃତ୍ତି କର ନୁହେଁ ଆହୁରି ଅନେକ କରର ଆବଶ୍ୟକତା ପଡ଼ିବ; କିନ୍ତୁ ଗରିବ ଜନସାଧରଣ କେତେ ଦିନ ଏକଥା ସହ୍ୟ କରିବେ ? ସହିବାର ସୀମା ଅତିକ୍ରମ କଲେ, ଶେଷରେ ଦିନ ଆସିବ ଯେତେବେଳେ ସେମାନେ ଲୋକପ୍ରତିନିଧି ମାନଙ୍କର ଭୋଟରଙ୍କୁ ଶୋଷଣ କରିବାର ଅଦମ୍ୟ ପ୍ରବୃତ୍ତିଟିକୁ ଦମନ କରିବାକୁ ନିଜେ ନିଜେ ଆଗେଇ ଆସିବେ । ସେତେବେଳେ ସେମାନଙ୍କର ନେତୃତ୍ୱ ନେବାକୁ ଆଉ କେହି ନଥିଲେ ମଧ୍ୟ କିଛି ଯାଏ ଆସେନି ।

(ସମାଜ : ୧୪.୧୨.୨୦୦୦)

# ବଜାର ଅର୍ଥନୀତିରେ 'ଅଙ୍ଗ ପ୍ରଦର୍ଶନ'

ସତରେ ଆମେ କୁଆଡ଼େ ଚାଲିଚୁଁ ? କୁଆଡ଼େ ଆମର ଗତି ? ଆମ ସମାଜ, ଆମ ସଭ୍ୟତା, ଆମ ସଂସ୍କୃତି ଏବଂ ସର୍ବୋପରି ଆମ ରାଜନୀତି, ଆମ ଅର୍ଥନୀତି, ଯାହା ଆମର ସାଧାରଣ ଜୀବନ ଯାତ୍ରାକୁ ନିୟନ୍ତ୍ରଣ କରେ- କୁଆଡ଼େ ଚାଲିଚନ୍ତି ସେମାନେ ? ଆମର ସ୍ୱାଧୀନତା ପରର ଦେଶରେ ଅର୍ଥନୈତିକ ପରିବର୍ତ୍ତନ କଅଣ ଘଟିଚି କେଜାଣି; କିନ୍ତୁ ଅଚିନ୍ତନୀୟ ପରିବର୍ତ୍ତନ ଘଟିଚି ଆମ ସଭ୍ୟତା ଓ ସଂସ୍କୃତିରେ ଯଦିଓ ସେଗୁଡ଼ିକ ମଧ୍ୟ ଅର୍ଥନୀତିକେନ୍ଦ୍ରିକ । ବେଳେ ବେଳେ ତାକୁଇ ଭାବିଲେ ଆମକୁ ବିସ୍ମିତ ହେବାକୁ ପଡ଼େ ।

ଗୋଟିଏ ଉଦାହରଣ ଏଥିପାଇଁ ବୋଧେ ଯଥେଷ୍ଟ ହେବ । ଏବେ ଆମ ଭାରତର ଗୋଟିଏ ସାଧାରଣ ମଧ୍ୟବିତ୍ତ ପରିବାରର ଝିଅ 'ବିଶ୍ୱସୁନ୍ଦରୀ-୨୦୦୦' ଉପାଧି ପାଇବାର ଯୋଗ୍ୟତା ହାସଲ କଲା । ଭାରତୀୟ ଝିଅଟିଏ ଯେ ପ୍ରଥମକରି ଏ ସୌଭାଗ୍ୟ ଅର୍ଜନ କଲା ତା ନୁହେଁ । ବରଂ ଏମିତି କହିଲେ ଠିକ୍ ହେବ ଯେ ଭାରତ ସେ ସୌଭାଗ୍ୟ କେତେ ଥର ଅର୍ଜନ କରି ସାରିଲାଣି । ଯଦିଓ ପୃଥିବୀରେ ଭାରତ ଗୋଟିଏ ଗରିବ, ଦୁଃଖୀ ଓ ଦରିଦ୍ରର ଦେଶ ହିସାବରେ ପରିଚିତ । ତେବେ ତାହା ଏକ ଭିନ୍ନ କଥା । ଥରେ ଜଣେ ବିଶ୍ୱ ସୁନ୍ଦରୀ ଉପାଧି ପାଇଗଲା ପରେ ତା' ପାଇଁ ସ୍ୱର୍ଗଟା ତଳକୁ ଓହ୍ଲାଇ ଆସେ । ଅମାପ ଧନରତ୍ନ, ଭୂୟସୀ ପ୍ରଶଂସା, ଅଜସ୍ର ସୁଖ ସୁବିଧା ତା ପାଦତଳେ କୁଢ଼େଇ ହୋଇ ପଡ଼େ । ସେ ଏକ ସୀମାହୀନ ଐଶ୍ୱର୍ଯ୍ୟର ଅଧିକାରୀ ହୋଇଯାଏ । ପୃଥିବୀର ମହାନ୍ ରାଜନେତା, ସମ୍ମାନର ସର୍ବୋଚ୍ଚ ଆସନରେ ଥିବା କୁବେର ଓ ସମ୍ରାଟମାନେ ତାର ସାମନ୍ୟ ଦର୍ଶନ ପାଇଁ ବ୍ୟାକୁଳ ହେଇ ଉଠନ୍ତି ଏବଂ ସେଇ ସେତକ ପାଇଁ ସେମାନେ ଅଜସ୍ର ଅର୍ଥ ଅକାତରେ ମୃଛି ଦିଅନ୍ତି । ବିଶ୍ୱସୁନ୍ଦରୀ ହାତରୁ ଗୋଟିଏ କପ୍ ଚା' କି ମୃଦୁ ପାନୀୟ ଟିକିଏ ପାଇବା ପାଇଁ ପୃଥିବୀର ବିଭିନ୍ନ ଆତୁ ରୂପ-ପିପାସୁମାନେ ଧାଇଁ ଆସନ୍ତି ଏବଂ ମନେ ମନେ ନିଜକୁ ତାଙ୍କ ପାଦ ତଳେ ସମର୍ପି ଦିଅନ୍ତି । ଏହା ଏବେ ଏକ ପରମ୍ପରାରେ ପରିଣତ ହୋଇ ଗଲାଣି ।

ସୁନ୍ଦରୀ ପ୍ରତିଯୋଗିତା ଏକ କ୍ରୀଡ଼ା ନୁହେଁ । ଅନ୍ତତଃ ତାକୁ ସେଇ ଭାବରେ ଗ୍ରହଣ କରା ଯାଇନାହିଁ କି ସେଇ ଉଦ୍ଦେଶ୍ୟରେ ବ୍ୟବହାର ମଧ୍ୟ କରା ଯାଉନାହିଁ । ତାକୁ କେବଳ ବ୍ୟବସାୟ ଉଦ୍ଦେଶ୍ୟରେ ଗ୍ରହଣ କରା ଯାଉଛି । ପୃଥିବୀର ବାଣିଜ୍ୟ ବ୍ୟବସାୟରେ ଧନାଢ଼୍ୟ ବ୍ୟକ୍ତିମାନେ ନାରୀର ରୂପ, ତାର ଉନ୍ମୁକ୍ତ ଅଙ୍ଗ ସୌଷ୍ଠବକୁ

ବ୍ୟବହାର କରନ୍ତି । ବଜାରର ଅର୍ଥନୀତି ତାରି ଉପରେ ନିର୍ଭର କରେ ।

ପ୍ରିୟଙ୍କା ଚୋପ୍ରା ଜଣେ ସାଧାରଣ ମଧ୍ୟମ ବର୍ଗର ଅଫିସରଙ୍କ ଝିଅ । ବାପା ଜଣେ ସାମରିକ ଡ଼ାକ୍ତର । ସେ କୋଟିପତି ନୁହନ୍ତି । ଅଠର ବର୍ଷିୟା ଝିଅ ଜଣକ କୁଆଡ଼େ ପ୍ରଥମରୁ ଇଂଜିନିୟରିଂ ଆଡକୁ ଯିବାକୁ ଇଚ୍ଛା ରଖିଥିଲେ; କିନ୍ତୁ ଶେଷରେ ସେ ଦିଗ ଛାଡି ସୁନ୍ଦରୀ ପ୍ରତିଯୋଗିତାରେ ଯୋଗଦେଲେ ଏବଂ ତାର ଶୀର୍ଷରେ ପହଞ୍ଚି ଗଲେ । କାହିଁକି ଓ କେଉଁ ପରିସ୍ଥିତିରେ ସେ ଗୋଟିଏ ଲକ୍ଷ୍ୟରୁ ଓହରି ଯାଇ ଜୀବନର ଗତିପଥ ବଦଳାଇ ଦେଲେ ତାହା ଏକ ଭିନ୍ନ ପ୍ରଶ୍ନ; କିନ୍ତୁ ଅର୍ଥଟାକୁ ମଣିଷ ଯେତେବେଳେ ଜୀବନର ସବୁ କିଛି ଏବଂ ଚରମ ପ୍ରାପ୍ତି ବୋଲି ମନେ କରେ ସେତେବେଳେ ସେ ତାର ସମସ୍ତ ସର୍ବୋତ୍କୃଷ୍ଟକୁ ଅଜାତରେ ସେଇ କାମନାର ବେଦିରେ ଅଜାଡି ଦିଏ ।

ନାରୀ ସବୁବେଳେ ଚାହେଁ ସେ ନିଜକୁ ସୁନ୍ଦର ଭାବେ ସଜେଇବ । ଯେତେଦୂର ସମ୍ଭବ ସେ ନିଜକୁ ସୁନ୍ଦର କରି ତୋଳିବ ଏବଂ ଅନ୍ୟ ଆଗରେ ଆକର୍ଷଣ ସୃଷ୍ଟି କରିବ । ଏହା ତାର ସହଜାତ ପ୍ରବୃତ୍ତି; କିନ୍ତୁ ସେ ତାର ସୌନ୍ଦର୍ଯ୍ୟ, ତାର ସୁଠାମ ତଥା ମୁକ୍ତ ଅଙ୍ଗ ସୌଷ୍ଠବକୁ ନେଇ ବ୍ୟବସାୟ କ୍ଷେତ୍ରରେ ପ୍ରୟୋଗ କରିବ ଓ ଅର୍ଥ ଉପାର୍ଜନ କରିବ ଏ କଥା ସେ କେବେ ଚିନ୍ତା କରି ନ ଥିଲା । ସମାଜରେ ଅଳୀକ ପ୍ରତିଷ୍ଠା ଲାଭ ପାଇଁ ସେ ତାର ଈଶ୍ୱରଦତ୍ତ ରୂପ ମାଧୁରୀକୁ ନେଇ ବ୍ୟବସାୟ କ୍ଷେତ୍ରରେ ପ୍ରୟୋଗ କରିବ, ଏ କଥା କେବେ ବି ଚିନ୍ତା କରି ନ ଥିଲା । ସମାଜ ମଧ୍ୟ ଏ ପ୍ରକାର ବ୍ୟବସାୟକୁ କେବେ ସ୍ୱୀକୃତି ଦେବା ତ ଦୂରର କଥା ବରଂ ବରାବର ଘୃଣା କରି ଆସିଛି । ଏହା ହିଁ ଭାରତୀୟ ନାରୀର ମହତ୍ତ୍ୱ ।

ଏବେ ସେ ସମୟ ବଦଳି ଯାଉଛି । ନାରୀର ରୂପ ଲାବଣ୍ୟକୁ ନେଇ ଏବେ ବିଶ୍ୱ ବଜାରରେ ବିପଣୀ ଖୋଲା ଯାଇଚି । ଆମ ବଜାର ନାରୀ ଛଡା ପ୍ରଜ୍ଜ୍ୱଳିତ ହେଇ ପାରେନା, ନାରୀ ଅଙ୍ଗ ଖୋଲା ନ ଥିଲେ ଆମ ବଜାର ଚାଲି ପାରେନା । ଅଧିକନ୍ତୁ ଅଟକି ଯାଏ ଆମର ଅର୍ଥନୀତି ଏବଂ ମୁକ୍ତ ବଜାରର ମାନସିକତା ।

ପ୍ରିୟଙ୍କା ବିଶ୍ୱସୁନ୍ଦରୀ-୨୦୦୦ ଉପାଧି ପାଇଲା ପରେ ସାରା ପୃଥିବୀର ହଜାର ହଜାର ସାମ୍ବାଦିକ ତାଙ୍କୁ ଘେରି ଗଲେ । ସେମାନଙ୍କ ପ୍ରଶ୍ନର ଉତ୍ତର ଦେଇ ସେ କହିଲେ, ''ନୈତିକ ମୂଲ୍ୟବୋଧ ଏବଂ ସର୍ବୋପରି ଭାରତୀୟତା ହିଁ ତାଙ୍କ ସଫଳତାର ମୂଳମନ୍ତ୍ର'' । କି ଦୃପ୍ତ ଘୋଷଣା ? ସମସ୍ତେ ଏକଥା ଶୁଣି ସ୍ତମ୍ଭିତ ହୋଇ ଯାଇ ଥିବେ ।

ପ୍ରିୟଙ୍କାଙ୍କ ବିଶ୍ୱସୁନ୍ଦରୀ ବେଶର ଫଟୋ ଏବେ ବିଭିନ୍ନ ସମ୍ବାଦପତ୍ରରେ ପ୍ରକାଶ ପାଇଲାଣି । ଇଲେକ୍‌ଟ୍ରୋନିକ ଗଣମାଧ୍ୟମ ତାଙ୍କୁ ତାଙ୍କ ବ୍ୟବସାୟର ଏକମାତ୍ର ପୁଞ୍ଜିକରି ଗତ କେତେ ଦିନ ହେଲା ଖୁବ୍ ପ୍ରଚାର ଚଳାଇଛନ୍ତି । ଏହିସବୁ ଫଟୋରେ ପ୍ରିୟଙ୍କା ତାଙ୍କ ଶରୀରର ନଗ୍ନାଂଶ ଅତି ହସ ହସ ମୁହଁରେ ପ୍ରଦର୍ଶନ କରୁଥିବା ଦେଖାଯାଇଚି ।

ନାରୀଟିଏ ଉଲଗ୍ନ ହେବାରେ ମଧ୍ୟ କେତେ ପ୍ରସନ୍ନତା, କେତେ ଆତ୍ମ ବିଭୋରତା । ପୁରାଣର ମାତ୍ର ଗୋଟିଏ ଦ୍ରୌପଦୀକୁ ସଭାରେ ବିବସ୍ତ୍ର କରା ଯାଉଥିଲା ବେଳେ କି କରୁଣ ଆର୍ତ୍ତନାଦ ତାଙ୍କର । ସମଗ୍ର ମଣିଷ ସମାଜ ଲଜ୍ଜିତ ହୋଇ ପଡ଼ିଥିଲା ସେତେବେଳେ । ଆଉ ଏବେ ଅସଂଖ୍ୟ ଦ୍ରୌପଦୀ ସମସ୍ତଙ୍କ ସାମନାରେ ହସ ହସ ମୁହଁରେ ନିଜେ ନିଜେ ବିବସ୍ତ୍ର ହୋଇ ଯାଉଛନ୍ତି । ଜାଣେନା ଏଠି ଭଗବାନ ଶ୍ରୀକୃଷ୍ଣ ନିଜେ ଲଜ୍ଜିତ ହେଇ ପଡ଼ିଥିବେ କି ନା ? ତେବେ ସେ ଯାହେଉ, ବିବସ୍ତ୍ରତା ହିଁ ବିଶ୍ୱ ସୁନ୍ଦରୀ ପ୍ରତିଯୋଗିତାର ପ୍ରଥମ ଓ ପ୍ରଧାନ ଆବଶ୍ୟକତା । ସମଗ୍ର ଅଙ୍ଗ ସୌଷ୍ଠବ ଯଦି ଉନ୍ମୁକ୍ତ ନ ଥାଏ, ବିଶେଷ କରି କେତେକ ନିର୍ଦ୍ଦିଷ୍ଟ ଅଂଶ ଯାହା ନାରୀ ତାର ଲଜ୍ଜାଶୀଳତା ଯୋଗୁଁ ସବୁବେଳେ ପୁରୁଷଠୁ ଲୁଚେଇ ରଖିଥାଏ, ସେତକ ଯଦି ଦୃଶ୍ୟ ହେଉ ନ ଥାଏ ତେବେ ପ୍ରତିଯୋଗିତାର ବିଚାରକ ମଣ୍ଡଳୀ ତାକୁ କିପରିଭାବରେ ଗ୍ରହଣ କରିବେ ସେ କଥା ଆମେ ଜାଣୁନାଁ ।

ନାରୀର ନିଷିଦ୍ଧ ଅଞ୍ଚଳକୁ ନେଇ ହଜାର ହଜାର ଦର୍ଶକ ସାମନାରେ ଖୋଲି ଧରିବାକୁ ଯଦି ପ୍ରିୟଙ୍କା 'ଭାରତୀୟତା' ଓ ନୈତିକ ମୂଲ୍ୟବୋଧ' ବୋଲି କହୁ ଥାଆନ୍ତି ଏବଂ ତାକୁ ଯଦି ଆମର ଏବର ସମାଜ ନିର୍ବିବାଦରେ ଗ୍ରହଣ କରିଯାଏ ତେବେ ଆମର କିଛି କହିବାର ନାହିଁ । ସମୟ ସହିତ ତାଳ ଦେବା ପାଇଁ ଆମେ ମଧ୍ୟ ଆଖି, କାନ ବନ୍ଦ କରି ବସି ରହିବାକୁ ବାଧ୍ୟ । କିନ୍ତୁ ଆମର ମନେ ହୁଏ ଆମର ଚଳନ୍ତି ସମାଜରେ ବାସ୍ତବତା ଏହା ଠାରୁ ଅନେକ ଦୂରରେ । ଆମେ ଏ ଯାଏ ଏ ସବୁ ଯୌନ ଉତ୍ତେଜନା ସୃଷ୍ଟିକାରୀ ଚିତ୍ରକୁ ଅଶ୍ଳୀଳ ବୋଲି କହି ଆସିଛୁ ଏବଂ ତାକୁ ସର୍ବସାଧାରଣରେ ପ୍ରଦର୍ଶନକୁ ଘୋର ବିରୋଧ କରି ଆସିଚୁଁ ।

ଏବେ ଆଉ କେତେକ କହିଲେଣି ଯେ ସେ ସବୁକୁ ଆମ ସମାଜ ଗ୍ରହଣ କରୁ କି ନ କରୁ ଆମେ ତାକୁ ଗ୍ରହଣ କରିଛୁଁ । ସେମାନଙ୍କ ମତରେ ପ୍ରିୟଙ୍କା ସେମାନଙ୍କ ସମାଜର ଆଦର୍ଶ । ତାଙ୍କ ପଦାଙ୍କ ଅନୁସରଣ ଏବେ ଅବଶ୍ୟମ୍ଭାବୀ ହୋଇ ପଡ଼ିଲାଣି । ଏଠି ଉପଭୋକ୍ତା ଯୁଗର ଆହ୍ୱାନକୁ ଆମେ ଗ୍ରହଣ କରିବା କି ପାଶ୍ଚାତ୍ୟ ସଭ୍ୟତାର ଅନ୍ଧାନୁକରଣ କରିବା ସେ ସବୁ ବଡ଼ ପ୍ରଶ୍ନ ନୁହେଁ । ପ୍ରଶ୍ନ ହେଉଛି କିଏ କେତେ ସହଜରେ ପ୍ରଚୁର ଅର୍ଥ ଓ ସମ୍ମାନର ଅଧିକାରୀ ହୋଇ ପାରିବ । ଏବେ କେତେକ ତାକୁଇ ସବୁଠାରୁ ବଡ଼ କଥା ବୋଲି କହୁଛନ୍ତି । ପୁଞ୍ଜିବାଦୀ ବ୍ୟବସ୍ଥାରେ ଏହା ହିଁ ପ୍ରଥମେ ସ୍ଥାନ ପାଏ । ଆମେ ତାକୁଇ ଅନୁସରଣ କରି ଚାଲିଛୁଁ । ସେ ଅନୁସରଣ ବେଳେ ନୈତିକତା କହିଲେ ଆଉ ଏକ ଅର୍ଥକୁ ବୁଝାଏ । ତେଣୁ ପ୍ରିୟଙ୍କା ଯେତେବେଳେ ନୈତିକତା ଓ ମୂଲ୍ୟବୋଧ କଥା କହିଲେ ସେତେବେଳେ ତାର ଅର୍ଥ ଆମେ ଆମର ପ୍ରଚଳିତ ଅଭିଧାନରୁ ପାଇ ପାରିବା ନାହିଁ । ସେଥିପାଇଁ ଆମକୁ ଭିନ୍ନ ଶବ୍ଦକୋଷ ଦେଖିବାକୁ ପଡ଼ିବ ।

ଏବେ ଆମ ଦେଶରେ ଏକ ନୂତନ ସାଂସ୍କୃତିକ ଚେତନାର ସୁଅ ବୋହିବାକୁ ଆରମ୍ଭ କରିଛି । ସେ ସୁଅରେ ଆମେ ସମସ୍ତେ ପଡ଼ି ଉବୁଟୁବୁ ହେଉଛୁଁ । କାହାରି ନିସ୍ତାର ନାହିଁ । କଲିକତାରେ ଯେତେବେଳେ ଉଷା ଉତ୍ଥୁପ୍‌ଙ୍କ ସଂଗୀତକୁ ଅପ ସଂସ୍କୃତି କହି ସରକାର ବନ୍ଦ କରିବାକୁ ଆଦେଶ ଦେଲେ ସେତେବେଳେ ତାକୁ କିଛି ଲୋକ ବିରୋଧ କରି ହାଇକୋର୍ଟ ପର୍ଯ୍ୟନ୍ତ ଗଲେ । ସେତେବେଳେ ଯେଉଁମାନେ ତାକୁ ସାଂସ୍କୃତିକ ବୋଲି କହିଲେ କୋର୍ଟରେ ସେଇମାନଙ୍କର ବିଜୟ ହେଲା; କିନ୍ତୁ ଯେତେବେଳେ ଏମ.ଏଫ.ହୁସେନ ଗୋଟିଏ ଛବିର ଆବଶ୍ୟକତା ଅନୁଯାୟୀ ତାକୁ କିଛି ପରିମାଣରେ ନଗ୍ନ କରିଦେଲେ ସେତେବେଳେ ମଧ୍ୟ ଦଳେ ଲୋକ ବିରୋଧ କଲେ ।

ସଂସ୍କୃତି ଓ ଅପସଂସ୍କୃତି ଏବେ ଆମ ଦେଶରେ ନିଜ ନିଜର ପରିଚୟ ପାଇଁ ଅହରହ ସଂଗ୍ରାମ ରତ । ସେମାନେ ନିଜକୁ ନିଜେ ପ୍ରତିଷ୍ଠା କରିବାକୁ ବ୍ୟାକୁଳ ହେଇ ପଡ଼ିଥିବା ବେଳେ ଆମେ ମଧ୍ୟ ସେଥିରେ ଦଳି ପେଶି ହୋଇ ଯାଉଛୁଁ । ଆମ ଭିତରେ ଯେଉଁମାନେ ପୁରାତନ ପନ୍ଥୀ ଅଛନ୍ତି ସେମାନେ ନିଜ ସପକ୍ଷରେ ଯୁକ୍ତି ବାଢୁଥିବା ବେଳେ ଯେଉଁମାନେ ନୂତନ ପୀଢ଼ିର ବାର୍ତ୍ତାବହ ସେମାନେ ତାଙ୍କ ନିଜ ଯୁକ୍ତିରେ ଅଟଳ ।

ସେଇ ଦ୍ୱନ୍ଦର ଆଜି ପୂର୍ଣ୍ଣ ବିକାଶ ଘଟିଛି ପୁରୀ ସରକାରୀ ମହିଳା ମହାବିଦ୍ୟାଳୟରେ । ସେଠି କେତେକ ଛାତ୍ରୀ ଏପରି ପୋଷାକ ପିନ୍ଧି କଲେଜ ଆସିଥିଲେ ଯେ ଯେଉଁଥିରେ ଶାଳୀନତା ରହୁ ନ ଥିଲା ବୋଲି ଅଧ୍ୟକ୍ଷ କହିଲେ । ଏହା ସ୍ୱାଭାବିକ, ଜଣେ କଲେଜ ଅଧ୍ୟକ୍ଷ ନିଶ୍ଚୟ ଦେଖିବେ ଯେ ତାଙ୍କ ଶିକ୍ଷାୟତନ ଶାନ୍ତ, ସୁସ୍ଥ ଓ ସମ୍ଭ୍ରମର ବାତାବରଣ ଭିତରେ ଗଢ଼ିଉଠୁ । ଶିକ୍ଷାୟତନ ଏକ ଫେସନ ସୋ'ର ସ୍ଥାନ ନୁହେଁ । ପରିସର ଭିତରେ ଶୃଙ୍ଖଳା ନ ରହିଲେ, ଚିର ଅବ୍ୟବସ୍ଥିତ ରହିଲେ ଶିକ୍ଷାର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ପଣ୍ଡ ହୁଏ । ତାହା ଆଉ ଶିକ୍ଷାୟତନ ନ ହୋଇ ଅଶିକ୍ଷାୟତନରେ ପରିଣତ ହେଇଯାଏ । କିନ୍ତୁ ଯଦି ତା ନହୁଏ ? ଯେଉଁ ପିଲା ଜନ୍ମରୁ ଶୃଙ୍ଖଳିତ ହେବାକୁ ଶିଖିନାହିଁ କିମ୍ବା ସୌଜନ୍ୟ, ଶିଷ୍ଟାଚାର ଶବ୍ଦ ଶୁଣିନାହିଁ ସେ ଦୋଷ ତାର ନୁହେଁ କି ତାର ବାପା ମାଆର ମଧ୍ୟ ନୁହେଁ । ସେ ଦୋଷ ଆମ ସମୟର, ଆମ ପରିବେଶର । ଆମେ ଯେତେବେଳେ ଚାହୁଁ ଆମେ ଖୁବ୍ ଶୀଘ୍ର ଅତ୍ୟାଧୁନିକ ହୋଇଯିବା ଏବଂ ତାରି ମାଧ୍ୟମରେ ଅନ୍ୟର ଦୃଷ୍ଟି ଆକର୍ଷଣ କରିବା ସେତେବେଳେ ଆମର ବଦଳି ଯାଉଥିବା ସମାଜରେ ସେ ଦୃଷ୍ଟିଭଙ୍ଗୀକୁ ଅତି ଉଦାରତାର ସହିତ ଗ୍ରହଣ କରା ଯାଉଛି । ତାକୁଇ ଏବେ ମାନ୍ୟତା ଦିଆ ଯାଉଛି । ତେଣୁ ପୁରାତନ ପନ୍ଥୀ କଲେଜ ଅଧକ୍ଷ ଯେତେବେଳେ କହିଥିବେ ''ତୁମମାନଙ୍କୁ ଧର୍ମ ସହିବନି'' ସେତେବେଳେ ନୂତନ ସମାଜଟି ହୁଏତ ତାଙ୍କୁ ପଶ୍ନ ପଚାରିଥିବ, ''କେଉଁ ଧର୍ମ କଥା କହୁଛନ୍ତି ଅଧ୍ୟକ୍ଷ ମହୋଦୟ ? ସେ ଧର୍ମ ଆପଣଙ୍କ ପାଖରେ ନାହିଁ, ଆମ ପାଖରେ । ଆପଣ ତାର ନୂତନ ସଂଜ୍ଞା, ନୂତନ ସ୍ୱରୂପ ଦେଖିଛନ୍ତି ?''

ଓଡ଼ିଶାର ସ୍କୁଲ କଲେଜମାନଙ୍କରେ ଏ ପ୍ରକାର ଘଟଣା ଆଉ ନୂଆ ନୁହେଁ । ଏ ଘଟଣା ଏବେ ଖାଲି ଓଡ଼ିଶା ନୁହେଁ ଅନ୍ୟ ସବୁଠି ଘଟୁଛି । 'ପୋଷାକ ନିୟମ'ର ଅନୁପସ୍ଥିତିକୁ ଏଥିପାଇଁ ଦାୟୀ କରା ଯାଇ ପାରିବ ନାହିଁ । ତାର କାରଣ ଦିଲ୍ଲୀରେ ଏଇ କିଛିଦିନ ତଳେ ସ୍କୁଲରେ ମିନି ସ୍କର୍ଟ ବଦଳରେ ସାଲ୍‌ୱାର୍ କମିଜ୍ ପ୍ରଚଳନ ପାଇଁ ଯେଉଁ ନିୟମ ଆରମ୍ଭ ହୋଇଥିଲା ତାକୁ ସେଠାକାର ଅଭିଭାବକମାନେ ଲାଗୁ କରାଇ ଦେଲେ ନାହିଁ ।

ଦିଲ୍ଲୀର ଛାତ୍ର ଛାତ୍ରୀମାନେ ଏସବୁ ଦିଗରେ ଆଗୁଆ । ମାତ୍ର ଦୁଇବର୍ଷ ତଳେ ଦିଲ୍ଲୀ ବିଶ୍ୱବିଦ୍ୟାଳୟର ଛାତ୍ରୀମାନେ କର୍ତ୍ତୃପକ୍ଷଙ୍କଠାରେ ଦାବି କରିଥିଲେ ଯେ ସେମାନଙ୍କୁ ଛାତ୍ରମାନଙ୍କ ହଷ୍ଟେଲରେ ରାତ୍ରିଯାପନ କରିବାରେ କୌଣସି କଟକଣା ନ ରହୁ । ସେଇଟାକୁ ମଧ୍ୟ ସେମାନଙ୍କ ବ୍ୟକ୍ତିଗତ ଅଧିକାର ବୋଲି କହିଥିଲେ । ଯେମିତି ଆମେରିକା ପ୍ରଭୃତି ପାଶ୍ଚାତ୍ୟ ଦେଶରେ ଅଛି, ଝିଅ ୧୮ ବର୍ଷ ହେଲାପରେ ସେ ସଂପୂର୍ଣ୍ଣ ସ୍ୱାଧୀନ । ସେ ଯାହା ଇଚ୍ଛା ତାହା କରିପାରେ । ଆମେରିକାର ସୁଅ ଏବେ ଆମ ଦେଶକୁ ମାଡ଼ି ଆସୁଛି । ତାକୁ ଅଟକେଇବ କିଏ ? ଏବେ କେନ୍ଦ୍ରାପଡ଼ା ଓ ବାଲେଶ୍ୱର ସହରମାନଙ୍କରେ ଯେଉଁ ଦୁଃଖଦ ଘଟଣା ସବୁ ଘଟି ଯାଇଛି ସେ ସବୁକୁ ଦିଲ୍ଲୀର ଘଟଣା ସହିତ ମିଶାଇ ଦେଖି ହେବ ।

ଏସବୁ ସମ୍ପର୍କରେ ଆମ ଭିତରେ ଆଲୋଚନା ହୁଏ, ଏ ଘଟଣା ସବୁକୁ ରୋକି ହେବ କି ? ଆମର ରାଜନୀତିଜ୍ଞ, ସମାଜ ବିଜ୍ଞାନୀମାନେ ବେଳେବେଳେ ଏ କଥା ଚିନ୍ତା କଲା ବେଳକୁ ତାର ଉତ୍ସ କଥାଟା ମଧ୍ୟ ଖୋଜିବାକୁ ପଡ଼େ । ଉତ୍ସ ଖୋଜିବାକୁ ଗଲେ ଆମକୁ ହତାଶ ହେବାକୁ ପଡ଼େ । ସେ ଚେର ପ୍ରଥମେ ଆମ ପାଖରେ ଦେଖା ଦିଏ ।

ଓଡ଼ିଶାର ପୂର୍ବତନ ପୁଲିସ ଡ଼ିଜି ଶ୍ରୀ ଅମୀୟଭୂଷଣ ତ୍ରିପାଠୀ ଅଞ୍ଜନା ମିଶ୍ର କେସ୍‌ରେ ହାଇକୋର୍ଟରେ ଯେଉଁ ସତ୍ୟପାଠ ଦାଖଲ କରିଥିଲେ ସେଥିରେ ଆମ ସମସ୍ତଙ୍କର ମୁଖା ଖୋଲି ଯାଇଛି । ଏଇ 'ଆମ' ଶବ୍ଦ ଭିତରେ ଅଛନ୍ତି ବହୁ ପଦସ୍ଥ ପ୍ରଶାସନିକ ଅଫିସର, ରାଜନେତା, ଗୃହିଣୀ, ଅଧ୍ୟାପକ, ଡାକ୍ତର, ଓକିଲ ଯେଉଁମାନେ ଯୌନକୈନ୍ଦ୍ରିକ ଅନୈତିକ କାର୍ଯ୍ୟକଳାପକୁ ଗୋଟାଏ 'ହବି' ହିସାବରେ ଗ୍ରହଣ କରନ୍ତି । ସାମାଜିକ ଉଚ୍ଛୃଙ୍ଖଳତାରେ ସେମାନଙ୍କ ପଦ ପଦବୀ, ସାମାଜିକ ପ୍ରତିଷ୍ଠା ଓ ଆତ୍ମମର୍ଯ୍ୟାଦା ଏସବୁ କିଛି ପ୍ରତିବନ୍ଧକ ସୃଷ୍ଟି କରେନା । ବରଂ ସାହାଯ୍ୟ କରେ ।

ଏଥିରୁ ଅବଶ୍ୟ କାହାରି ବୁଝିବା ଉଚିତ ନୁହେଁ ଯେ ଏ ବିଶୃଙ୍ଖଳା ସମାଜରେ ଏବେ ଆରମ୍ଭ ହୋଇ ଯାଇଛି । ଯୌନକେନ୍ଦ୍ରିକ ନାରୀ ନିର୍ଯାତନା ଆମ ସମାଜରେ ଆଗରୁ ଥିଲା ଏବଂ ଏବେ ମଧ୍ୟ ଅଛି; କିନ୍ତୁ ଆଗରୁ ଯାହା ଥିଲା ତାହା ଗୋଟାଏ

ସୀମିତ ପରିସର ମଧ୍ୟରେ । ଏବେ ଯେମିତି ଖୋଲାଖୋଲି ହେବାକୁ ଆରମ୍ଭ କରିଚି, ସେମିତି ନଥିଲା ।

ତେବେ ହଠାତ୍ ଏହା କାହିଁକି ବଢ଼ିଗଲା ତାର କାରଣ ମଧ୍ୟ ଅନୁଧ୍ୟାନ କରାଯିବା ଉଚିତ । ଏ ସଂପର୍କରେ ଓଡ଼ିଶା ପୁଲିସ ପକ୍ଷରୁ ଯେଉଁ ଶ୍ୱେତପତ୍ର ପ୍ରସ୍ତୁତ ହୋଇଚି ତାହା ପ୍ରଣିଧାନ ଯୋଗ୍ୟ । ବର୍ଷକ ତଳେ ରାଜ୍ୟ ବିଧାନସଭାରେ ଏହି ଶ୍ୱେତପତ୍ର ଉପସ୍ଥାପିତ ହୋଇଥିଲା । ଏଥିରେ ଉଲ୍ଲେଖ ଅଛି ଯେ ପୁରୁଷ ଓ ନାରୀଙ୍କ ଅବାଧ ମିଳାମିଶା ଏବଂ ଅବାଧ ମଦର ବ୍ୟବହାର ଯୋଗୁଁ ଯୌନ ଅପରାଧ ବଢ଼ିଛି । ଏହା ଅବଶ୍ୟ ସତ୍ୟ । କିନ୍ତୁ ଗଣମାଧ୍ୟମରେ ପ୍ରଚାରିତ ଅପସାଂସ୍କୃତିକ ଚିତ୍ର ଏବଂ ଅଶ୍ଳୀଳ ସାହିତ୍ୟ ମଧ୍ୟ ଆମର ସରଳ ତାରୁଣ୍ୟକୁ ପଥଭ୍ରଷ୍ଟ କରାଇବାରେ କମ୍ ସାହଯ୍ୟ କରୁନାହିଁ । ଆମ ସଂସ୍କୃତିର ବଜାରରେ ଏ ଦୁହେଁ ଏବେ ପ୍ରବଳ ବେଗରେ ପ୍ରତିଯୋଗିତାରେ ଅବତୀର୍ଣ୍ଣ ହୋଇଛନ୍ତି ।

ଆମ ଯୁବମାନସ ଏକ ବାରୁଦର ଗଚ୍ଛାଘର । ସେଥିରେ ସାମାନ୍ୟ ଅଗ୍ନି ସଂଯୋଗ ଏକ ବିରାଟ ବିସ୍ଫୋରଣ ପାଇଁ ଯଥେଷ୍ଟ । ଏ କଥା ଆମେ ବୁଝି ମଧ୍ୟ ବୁଝିବାକୁ ଚାହୁଁନା । ଅମୀୟଙ୍କ ସତ୍ୟପାଠ ସହିତ ପୁଲିସର ଶ୍ୱେତପତ୍ରକୁ ମିଶାଇ ଦେଖିଲେ ଆମ ଛାତ୍ର ସମାଜର ଅଧୋଗତି ପାଇଁ ଦାୟୀ କିଏ ତାହା ବୁଝିବାକୁ ଅସୁବିଧା ହୁଏନା । ପ୍ରବଳ ବେଗରେ ଅନୈତିକତା ଆମ ଆଡକୁ ମାଡ଼ି ଆସୁଥିବା ବେଳେ ଏବଂ ଆମେ ତାକୁ ସ୍ୱାଗତ କରିବାକୁ ଆଗେଇ ଆସୁଥିବା ବେଳେ କେବଳ ଜଣେ ମାତ୍ର ଅସହାୟ କଲେଜ ଅଧ୍ୟକ୍ଷ ତାର ପ୍ରତିରୋଧ କେମିତି କରି ପାରିବେ ? ■

(ସମାଜ : ୧୫.୧୨.୨୦୦୦)

# ଜାତୀୟ ଭାବଧାରା ଓ
# ଭାରତୀୟ ନେତୃମଣ୍ଡଳୀ

ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପେୟୀ ଯେତେବେଳେ ଅଯୋଧ୍ୟାର ରାମ ମନ୍ଦିର ନିର୍ମାଣକୁ ଜାତୀୟ ଭାବଧାରା ବା 'ନେସନାଲ ସେଣ୍ଟିମେଣ୍ଟ' ବୋଲି କହି ଦେଲେ ସେତେବେଳେ ସମଗ୍ର ଦେଶରେ ଗୋଟାଏ ଅସ୍ୱାଭାବିକ ରାଜନୈତିକ ଝଡ଼ ସୃଷ୍ଟି ହୋଇଗଲା । ସମଗ୍ର ଦେଶ କମ୍ପିବାକୁ ଲାଗିଲା । ସବୁଠି ସବୁକଥା ଅଚଳ ହୋଇଗଲ । ପାର୍ଲାମେଣ୍ଟ ଦୀର୍ଘ ସାତ ଦିନ ଯାଏ ଅସମ୍ଭବ ବାକ ବିତଣ୍ଡା, ଯୁକ୍ତତର୍କ ଓ ଭାଷଣର ତୁମ୍ବିତୋଫାନରେ ଖାଲି ଉଠିଲା ପଡ଼ିଲା । ଲୋକସଭାକୁ ସଂପୂର୍ଣ୍ଣ ଅଚଳ କରି ବିରୋଧୀ ଦଳ ସଦସ୍ୟମାନେ ଯୁଦ୍ଧଂ ଦେହି ଡାକରା ଦେଇ ରଣାଙ୍ଗନକୁ ଡେ଼ଇଁ ପଡିଲେ । ଏନ୍.ଡ଼ି.ଏ.ର କେତେକ ପ୍ରମୁଖ ଅଂଶୀଦାର ମଧ୍ୟ ସେମାନଙ୍କ ସହିତ ସ୍ୱର ମିଳାଇ ଚିତ୍କାର କରି କହିବାକୁ ଲାଗିଲେ ଏ ଉକ୍ତି ପ୍ରତ୍ୟାହାର କର । ନଚେତ୍ ଆମେ ସମର୍ଥନ ପ୍ରତ୍ୟାହାର କରିବୁଁ । ନାଟକର ଶେଷ ଅଙ୍କ କଥା ସମସ୍ତଙ୍କୁ ଜଣା ଅଛି । କଥାଟା ଶେଷରେ ଭୋଟ ଆଡ଼କୁ ଗଲା ଏବଂ ସେ ଭୋଟରେ ସରକାର ଲୋକସଭାରେ ଜିତିଲେ ସିନା କିନ୍ତୁ ରାଜ୍ୟସଭାରେ ହାରିଲେ । ରାଜନୀତିରେ ହାରିବା ଯାହା ଜିତିବା ମଧ୍ୟ ସେଇଆ । ତା'ର ସବୁ ମୂଲ୍ୟ ଗଣିତର ଲାଭ କ୍ଷତିର ହିସାବ ପରି ହୁଏ ନାହିଁ । ସେଠି କ୍ଷତିକୁ ଲାଭ ବୋଲି ଧରା ଯାଏ ।

ତେବେ ସେ ଯା ହେଉ, ବାଜପେୟୀଙ୍କ ଉକ୍ତି ସେ ଦିନ ଅସ୍ୱାଭାବିକ ବା ଅପ୍ରତ୍ୟାଶିତ ନ ଥିଲା । ଅତ୍ୟନ୍ତ ସ୍ୱାଭାବିକ କଥା ଟିଏ । ସେଇଟା ଥିଲା ତାଙ୍କ ଦଳର କଥା । ତାଙ୍କ ଦଳ ନୀତିଗତ ଭାବରେ ଅଯୋଧ୍ୟାରେ ମନ୍ଦିର ନିର୍ମାଣକୁ ସ୍ୱୀକୃତି ଦେଇଛି, ମନ୍ଦିର ନିର୍ମାଣ କଥା ତାଙ୍କ ନିର୍ବାଚନୀ ଇସ୍ତାହାରରେ ମଧ୍ୟ ସ୍ଥାନ ପାଇଛି । ସେମାନେ ତା' ଉପରେ ଭୋଟ ଲଢ଼ିଛନ୍ତି । ଏଇ କଥା କହି ଭୋଟ ମାଗିଲାବେଳେ କେତେ ଜାଗାରେ ଜିତିଛନ୍ତି ଏବଂ ଆଉ କେତେ ଜାଗାରେ ହାରିଛନ୍ତି । ତାହା ଏକ ସ୍ୱତନ୍ତ୍ର କଥା । କିନ୍ତୁ ତାଙ୍କ ନୀତି ଓ ଇସ୍ତାହାର କଥା ଲୋକଙ୍କୁ କହିଲା ବେଳେ ସେ ଏ କଥା ନିଶ୍ଚୟ କହିଛନ୍ତି ଯେ ଆମେ ଅଯୋଧ୍ୟାରେ ରାମ ମନ୍ଦିର ନିଶ୍ଚୟ କରିବୁଁ । ମସଜିଦ୍ ଯେତେବେଳେ ଭଙ୍ଗା ସରିଚି ମନ୍ଦିରଟିଏ ତିଆରି କରିବାକୁ କେତେ କାଳ । ଆମେ ତୁମ୍ଭମାନଙ୍କର ସମର୍ଥନ ପାଇଲେ ମନ୍ଦିରଟା ଗୋଟିଏ ରାତିରେ ତିଆରି ହୋଇ ଯିବ ।

ମନ୍ଦିର କଥା ବିଜେପି ଆଜି କହୁନାହିଁ । ଯେଉଁ ଦିନଠୁ ସେମାନେ ଜାଣିଲେଣି ଯେ ଆଜି ଯେଉଁଠି ମସ୍‌ଜିଦ୍ ଅଛି ସେଠି ଆଗରୁ ଗୋଟିଏ ମନ୍ଦିର ଥିଲା, ସେଇ ଦିନଠୁ ସେମାନେ ଏ କଥା କହି ଆସୁଛନ୍ତି । ସେମାନଙ୍କର ଏ ଯୁକ୍ତି ପଛରେ କୌଣସି ଐତିହାସିକ ସତ୍ୟ ଅଛି କି ନା ତାହା ଏକ ଭିନ୍ନ ପ୍ରଶ୍ନ; କିନ୍ତୁ ସେମାନଙ୍କର ଦାବି ବେଶ ପୁରୁଣା ।

ଏ ଦାବି ତାଙ୍କ ଦଳର ଦାବି । ମନ୍ଦିର ନିର୍ମାଣ ତାଙ୍କ ଦଳର ନୀତି । ଦଳର ଗୃହୀତ ନୀତିକୁ କାର୍ଯ୍ୟକାରୀ କରିବା ଯେ କୌଣସି ନିଷ୍ଠାପର କର୍ମୀର ପ୍ରଥମ କର୍ତ୍ତବ୍ୟ । ଗୃହୀତ ନୀତିକି ଆଡ଼େଇ ଜଣେ ସକ୍ରିୟ କର୍ମୀ କେତେ ଦିନ ଅଲଗା ହୋଇ ରହି ପାରିବ ? ଯଦି ରହେ ତେବେ ତାହା ଦଳ ବିରୋଧୀ କାମ ହେବ । ତେଣୁ ବାଜପେୟୀ ଯାହା କହିଲେ ତାକୁ ଅପ୍ରତ୍ୟାଶିତ ବୋଲି କହିହେବ ନାହିଁ । ବରଂ ତାହା ଦିନେ ନା ଦିନେ ହେବ, ଏହା ଜଣାଥିଲା । ନଚେତ୍ ଯେଉଁମାନେ ତାଙ୍କୁ ଭୋଟ ଦେଇ ଥିଲେ ସେମାନେ ଦିନେ ପଚାରି ଥାଆନ୍ତେ, ''କ'ଣ ହେଲା ମନ୍ଦିର କଥା ? ତୁମେ ପରା ଆମକୁ ପ୍ରତିଶ୍ରୁତି ଦେଇଥିଲ ? ତମ ଦେଇ ଆଉ କଅଣ ହେଇ ପାରିବ ?'' ତା ସତ୍ତ୍ୱେ ବାଜପେୟୀଙ୍କ ଦଳ ଭୋଟ ପରେ ସରକାର ଗଢ଼ିବା ପାଇଁ ପୂର୍ଣ୍ଣ ସମର୍ଥନ ପାଇ ପାରି ନ ଥିଲେ । 'ରାମ' ନିଜେ ମଧ୍ୟ ତାଙ୍କୁ ବୋଧେ ମନ୍ଦିର ପାଇଁ ସମର୍ଥନ ଦେବାକୁ ଚାହୁଁ ନାହାନ୍ତି । ତା ନ ହେଲେ ବାଜପେୟୀଙ୍କ ନିଜ ରାଜ୍ୟ ଉତ୍ତର ପ୍ରଦେଶରେ ସେ ଏତେ ହଇରାଣ କାହିଁକି ହୁଅନ୍ତେ ? ସମ୍ପୂର୍ଣ୍ଣ ସମର୍ଥନ ଅଭାବରୁ ବାଜପେୟୀ ପ୍ରଥମେ ସରକାର ଗଢ଼ିବାକୁ ମନ ବଳାଉ ନ ଥିଲେ । ପରେ ଯେତେବେଳେ ଦେଖିଲେ ଅନ୍ୟ କେତୋଟି ଦଳ ତାଙ୍କୁ ସମର୍ଥନ ଦେବାକୁ ଆଗେଇ ଆସୁଛନ୍ତି ସେତେବେଳେ ସେ ଆଉ ନିରବ ହୋଇ ବସି ରହି ପାରିଲେ ନାହିଁ । ଗୋଟାଏ ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ାହେଲା । ଯେତେବେଳେ ମିଳିତ ମନ୍ତ୍ରୀମଣ୍ଡଳ ଗଢ଼ା ଯାଏ ସେତେବେଳେ ସବୁଦଳକୁ କିଛି ନା କିଛି ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଥାଏ । ସେତେବେଳେ ବିଜେପିକୁ ତିନୋଟି କଥାକୁ ଛାଡି ଦେବାକୁ ପଡ଼ିଥିଲା । ତା' ଭିତରୁ ମନ୍ଦିର ପ୍ରଧାନ । ସେତେବେଳେ ବାଜପେୟୀ ପ୍ରତିଶ୍ରୁତି ଦେଇଥିଲେ ଯେ 'କମନ ଏଜେଣ୍ଡାରେ' ମନ୍ଦିର ନର୍ମାଣର ପ୍ରଶ୍ନ ଉଠିବ ନାହିଁ ।

କିନ୍ତୁ ତାର ଅର୍ଥ ନୁହେଁ ଯେ ବାଜପେୟୀ ତାଙ୍କ ଦଳ କଥା ଭୁଲିଯିବେ ? ସେ ତ ପୁଣି ସେଇ ଦଳର ପ୍ରତିନିଧିତ୍ୱ କରୁଛନ୍ତି । ପ୍ରଧାନମନ୍ତ୍ରୀ ହିସାବରେ ଏନ୍.ଡ଼ି.ଏ.ର କାର୍ଯ୍ୟକ୍ରମ ଭିତରେ ସେ ସିନା ମନ୍ଦିର କଥା କହିବେ ନାହିଁ; କିନ୍ତୁ ଦଳର ନେତୃତ୍ୱ ନେଇ ଥିବା ବାଜପେୟୀ ମନ୍ଦିର କଥା ଉଠେଇବାରେ ବାଧା କେଉଁଠି ଅଛି ? ସେଇଟା ତାଙ୍କର ବ୍ୟକ୍ତିଗତ ତଥା ରାଜନୈତିକ ଅଧିକାର । ସେଥିରେ କେହି ହସ୍ତକ୍ଷେପ କରି ପାରିବ ନାହିଁ । ସେଇ ଦୃଷ୍ଟିରୁ ବାଜପେୟୀ ଯେଉଁ ମନ୍ଦିର କଥା ଉଠେଇଲେ ଏବଂ ତାକୁ ଜାତୀୟ ଭାବଧାରା ବୋଲି କହିଲେ ତାକୁ ଅନ୍ୟାୟ ବୋଲି କହିହେବ ନାହିଁ । କାରଣ ଦଳର ନେତୃତ୍ୱ ନେଇଥିବା ବାଜପେୟୀ ମଧ୍ୟ ମିଳିତ ମନ୍ତ୍ରୀମଣ୍ଡଳର ପ୍ରଧାନମନ୍ତ୍ରୀ । ସେଇ

ହିସାବରେ ତାଙ୍କର ଭୂମିକା ଦୁଇଟା । ଗୋଟିଏ ଦଳର ଏବଂ ଆଉ ଗୋଟିଏ ଦଳର ମିଳିତ ଗୋଷ୍ଠୀର ।

ଦୁର୍ଭାଗ୍ୟକୁ ଆମ ଦେଶର ଗଣତନ୍ତ୍ରରେ ମିଳିତ ମନ୍ତ୍ରୀମଣ୍ଡଳର 'ମିଳିତ' ଶବ୍ଦଟି ନଈ ବଢ଼ିରେ ଭାସି ଯାଉଥିବା ଗୋଟିଏ କାଠଗଡପରି । ସେଥିରେ ସାପ ଓ ବେଙ୍ଗ ଉଭୟ ଆଶ୍ରୟ ନେଇ ଥାଆନ୍ତି । ଏମାନେ କେହି ପ୍ରବଳ ସୁଅରେ ପହଁରି ଜୀବନରକ୍ଷା କରିବାର କ୍ଷମତା ହାସଲ କରି ନ ଥାଆନ୍ତି । ତେଣୁ କାଠଗଡ଼ ଉପରେ ପଡ଼ି ରହି ନିଜ ଭାଗ୍ୟ କଥା ଚିନ୍ତା କରୁ ଥାଆନ୍ତି । କାଠଗଡକୁ ନିୟନ୍ତ୍ରଣ କରିବାର କ୍ଷମତା ନ ଥାଏ । ସେଇ ଅବସ୍ଥାରେ ଯଦି ଭୋକ ଜ୍ୱାଳାରେ ଜଣେ ଅନ୍ୟ ଜଣକୁ ଲୋଭିଲା ଆଖିରେ ଅନାଏ ତେବେ ସେ ପ୍ରତିବାଦ କରିବାକୁ ବାଧହୁଏ । କହେ, ଆମେ ଦୁଇ ଅସହାୟ ଯେତେବେଳେ ଗୋଟିଏ ବସ୍ତୁକୁ ଆଶ୍ରା କରି ଆମର ଅନିଶ୍ଚିତ ଭାଗ୍ୟ ଆଡ଼କୁ ଭାସି ଚାଲିଛୁଁ ସେତେବେଳେ ତୁମେ ମୋତେ ଖାଇବାକୁ ଚିନ୍ତାକଲେ ଆମର ଅଘୋଷିତ ଚୁକ୍ତିକୁ ତୁମେ ଭଙ୍ଗ କରୁନ କି ?

ବାଜପେୟୀ ମନ୍ଦିର ନିର୍ମାଣକୁ ''ଜାତୀୟ ଭାବଧାରା'' କହିବା ଦ୍ୱାରା ଏନ.ଡ଼ି.ଏ. ର ଅନ୍ୟ ଭାଗୀଦାରମାନେ ଏମିତି ବୁଝିଥିବେ ଯେ ଏଇ ଅତ୍ୟନ୍ତ ସମ୍ବେଦନଶୀଳ କଥାଟା କହି ବାଜପେୟୀ ସମଗ୍ର ଭୋଟ ବ୍ୟାଙ୍କଟିକୁ ଅକ୍ତିଆର କରି ନେବାକୁ ଚାହୁଁଛନ୍ତି । ଖାଲି ସେତିକି ନୁହେଁ, ସେ ଆମ କାନ୍ଧରେ ବନ୍ଧୁକ ରଖି ଶିକାର କରିବାକୁ ଚାହୁଁଛନ୍ତି । ପ୍ରଧାନମନ୍ତ୍ରୀ ହିସାବରେ ସେ ଯାହା କହିବେ, ସେଥିରେ ଲୋକେ ବୁଝିବେ ସେ କଥାଟାକୁ ଅନ୍ୟ ଅଂଶୀଦାରମାନେ ମଧ୍ୟ ସମର୍ଥନ କରନ୍ତି । ଫଳରେ ପ୍ରଧାନମନ୍ତ୍ରୀ ଅନ୍ୟ ସମସ୍ତଙ୍କ ହୃଦୟକୁ ଜୟ କରି ଯାଇଛନ୍ତି ପରି ହେବ ଏବଂ ତାହାହିଁ ସମଗ୍ର ଏନ.ଡ଼ି.ଏ.ର ମତ ପରି ବୁଝାଯିବ । ଏହା ହିଁ ନଈ ସୁଅରେ କାଠଗଡ଼ ଉପରେ ଭାସି ଯାଉଥିବା ସାପ ବେଙ୍ଗ ପରି ହେବ ।

ଏନ.ଡ଼ି.ଏ.ର ପ୍ରତିବାଦରେ ମଧ୍ୟ କିଛି ଯୁକ୍ତି ଅଛି । ସେମାନଙ୍କର କହିବାର କଥା ତୁମେ ଏନ.ଡ଼ି.ଏ.ର ପ୍ରଧାନମନ୍ତ୍ରୀ । ଏନ.ଡ଼ି.ଏ. ନ ଥିଲେ ତୁମେ ପ୍ରଧାନମନ୍ତ୍ରୀର ସୁନା କଳସ ଠାରୁ ଅନେକ ଦୂରରେ ଥାଆନ୍ତ । ତୁମେ ଆଉ ଯାହା ହେଲେ ମଧ୍ୟ ପ୍ରଧାନମନ୍ତ୍ରୀ ହେବାର ସ୍ୱପ୍ନ ଦେଖି ପାରନ୍ତ ନାହିଁ । ତମେ ଯେତେବେଳେ ଏନ.ଡ଼ି.ଏ.ରେ ଯୋଗ ଦେଲ ସେତେବେଳେ ତୁମକୁ ଆମେ ଆଉ ଗୋଟିଏ 'ଡୁବନ' ଭିତର ଦେଇ ଧୋଇ ସଫା କରି ଆଣିଥିଲୁଁ । ସେତେବେଳେ ତୁମ୍ଭେ ଶପଥ କରି କହିଥିଲ ଯେ ତୁମେ କେବଳ ଆମ ନୀତିକୁ ହିଁ ଅର୍ଥାତ୍ ଆମ କମନ ଏଜେଣ୍ଡାକୁ ହିଁ ହୃଦୟ ଭିତରେ ସ୍ଥାନ ଦେବ । ଅନ୍ୟ କିଛି ନୁହେଁ । ଆଜି ତୁମେ ମନ୍ଦିର କଥା କହିବା ଦ୍ୱାରା ଆମ ପ୍ରତି ତୁମେ ବିଶ୍ୱାସଘାତକତା କରୁନାହଁ କି ?

ଏଇଟା ହେଲା ଏନ.ଡ଼ି.ଏ.ର ଅଂଶୀଦାରମାନଙ୍କ କଥା । କିନ୍ତୁ ବିରୋଧୀ ଦଳମାନେ ଯାହା କହିଲେ ତାହା ମଧ୍ୟ ପ୍ରଣିଧାନର କଥା । ସେମାନେ ଭାବିଲେ ବାଜପେୟୀ ମନ୍ଦିର ତୋଳିବେ କି ମସ୍‌ଜିଦ୍ ତୋଳିବେ ସେଇଟା ଅଲଗା କଥା; କିନ୍ତୁ ସେ 'ଜାତୀୟ ଭାବଧାରା' କଥା କହିବାକୁ କିଏ ? ବାଜପେୟୀଙ୍କ ଦଳ ସମଗ୍ର ଜାତିର ବା ଦେଶର ଗୋଟିଏ ଅତି କ୍ଷୁଦ୍ର ଅଂଶ । ସେ ଅଂଶ ପୁଣି ଧୀରେ ଧୀରେ କମି କମି ଆସୁଛି । ଅନ୍ତତଃ ଭୋଟର ଶତାଂଶ ତ କମୁଚି । ୧୯୯୮ ରେ ସେ ଦଳ ୩୫ ପରସେଣ୍ଟ ଭୋଟ ପାଇଥିବା ବେଳେ ୧୯୯୯ ରେ ମାତ୍ର ୨୩.୬ ପରସେଣ୍ଟ ପାଇଛି । ସେ ଅବସ୍ଥାରେ ସେମାନେ ସମଗ୍ର ଜାତିର ଭାବଧାରାଟିକୁ ଦଖଲ କରି ନେବାକୁ କିଏ ? ତା'ଛଡା ସେମାନେ ଯଦି ସମୁଦାୟ ଭାବଧାରାଟିକୁ ନିଜର କରି ନିଅନ୍ତି ତେବେ ଆମ ଠାରେ ଆଉ ରହିଲା କଅଣ ? ସେମାନେ କ'ଣ ଭାରତୀୟ ଭାବଧାରାର ଏକମାତ୍ର ଅଧିକାରୀ ? ସେ ଅଧିକାର ତାଙ୍କୁ କିଏ ଦେଇଚି ? କଂଗ୍ରେସ ତ ଆଉ ପାଦେ ଆଗେଇ ଯାଇଥିବ । ସେମାନେ ଭାବିଥିବେ ଯେଉଁମାନେ ଦେଶର ବା ଜାତିର ସ୍ୱାଧୀନତା ସଂଗ୍ରାମ ବେଳେ ଲୁଚି ଲୁଚି ବୁଲୁଥିଲେ, ଅର୍ଥାତ୍ ଆମେ ହସି ହସି ଗୁଳି ଆଗରେ ଛାତି ପତେଇ ଦେଇଥିଲା ବେଳେ ଯେଉଁମାନେ ଘରକୋଣରେ ଲୁଚି ବସୁ ଥିଲେ, ସେମାନେ ଆଜି ଜାତିର କଥା କହିବାକୁ କିଏ ? ଆମେ ଦେଶକୁ ସ୍ୱାଧୀନ କରେଇଛୁଁ, ତେଣୁ ସେ କଥା ମାନେ ଜାତୀୟ ଭାବଧାରା କଥାଟା ଆମ ତୁଣ୍ଡରେ ଶୋଭା ପାଆନ୍ତା ।

ତେବେ କଅଣ ଏ 'ଜାତୀୟ ଭାବଧାରା' ? ତାର ଆକାର ପ୍ରକାର, ତାର ରୂପ ଓ ଗନ୍ଧ କିମ୍ବା ତାର ନିର୍ଯାସଟା ଏମିତି କଅଣ ଯେ ଯାହା ପାଇଁ ସମଗ୍ର ଦେଶର ଆଶା ଆକାଂକ୍ଷା, ବର୍ତ୍ତମାନ ଓ ଭବିଷ୍ୟତକୁ ଜଳାଞ୍ଜଳି ଦେଇ ଦେଶର ମହାନ ନେତାମାନେ ଦୀର୍ଘ ସାତ ଦିନ କାଳ ପାର୍ଲାମେଣ୍ଟରେ କେବଳ କଳି କଜିଆରେ ବ୍ୟାପୃତ ରହିଲେ । ସମସ୍ତେ ଚାହିଁଲେ ସେଇ ଦୁର୍ଲ୍ଲଭ ବସ୍ତୁଟିକୁ ଆପଣାର କରି ନେବାକୁ । ପାର୍ଲାମେଣ୍ଟ ଦୀର୍ଘ ସାତ ଦିନ ଅଚଳ ହେବ ଦ୍ୱାରା ଦେଶର ଅଗଣିତ ଦରିଦ୍ର ଜନତାର ଝାଳବୁହା ଧନର ଗୋଟାଏ ବିରାଟ ଅଂଶ ପାଣିରେ ପଡ଼ିଲା । ଅଥଚ ଏଆଡ଼େ କୋଟି କୋଟି ଲୋକ ଦେଶରେ ଅନାହାରରେ, ରୋଗରେ, ଗୁଳିରେ କିମ୍ବା ଦୁର୍ଘଟଣାରେ ମରୁଛନ୍ତି । କୋଟି କୋଟି ଲୋକ ବେକାର ଅଛନ୍ତି । ବିରାଟ ଯୁବଶକ୍ତି ଶିକ୍ଷା ଓ ଚାକିରି ଅଭାବରୁ ଏବେ ରାଜରାସ୍ତାରେ । ବନ୍ୟା, ମରୁଡ଼ି, ବାତ୍ୟା ଏସବୁ ବିଜ୍ଞାନର ସୀମାହୀନ ଜୟଯାତ୍ରା ସତ୍ୱେ ଏବେ ମଧ୍ୟ ଆମକୁ କବଳିତ କରି ରଖିଛି । ସ୍ୱାଧୀନତାର ପଚାଶ ବର୍ଷ ପରେ ମଧ୍ୟ ପୃଥିବୀରେ ଆମ ଦେଶର ଏକମାତ୍ର ପରିଚୟ, ଭାରତ ଗୋଟିଏ ଭିକାରୀର ଦେଶ ।

ଅଥଚ ସେଇ ଦେଶର ମହାନ ନେତାମାନେ 'ଅନ୍ଧଙ୍କ ହାତୀ ଦେଖା' ପରି ମାତ୍ର ଦୁଇଟି ଶବ୍ଦର ଅର୍ଥକୁ ନେଇ ଯେଉଁ ବହୁ ମୂଲ୍ୟବାନ ସମୟତକ ନଷ୍ଟ କଲେ ତାହା ଆମ ଇତିହାସରେ କେଉଁ ମୂଲ୍ୟବାନ ଅଧ୍ୟାୟ ସୃଷ୍ଟି କରିବ ସେ କଥା କେବଳ ସମୟ ହିଁ

କହି ପାରିବ । ସେ ଦିନ ସେମାନଙ୍କ ଏ ବାଲ୍ୟ ଚପଳତା ଇଲେକ୍ଟ୍ରୋନିକ ଗଣମାଧ୍ୟମରେ ପ୍ରସାରିତ ହୋଇଥିଲା । ଆମ ଦେଶ ସେ ଦିଗରେ କାର୍ପଣ୍ୟ କରେ ନାହିଁ । ଏ କ୍ରୀଡାକୁ ସମଗ୍ର ଦେଶ ତ ଦେଖିଥିବ ପୃଥିବୀର ଜନତା ମଧ୍ୟ ବେଶ ଉପଭୋଗ କରିଥିବ । କିନ୍ତୁ ସେମାନେ ନିଶ୍ଚୟ ମନକୁ ପଚାରିଥିବେ ଭାରତର 'ଜାତୀୟ ଭାବଧାରା'ଟା ଏମିତି କଅଣ କି ଯାହା ପାଇଁ ସମଗ୍ର ଦେଶଟା ଗୋଟିଏ ଅଜ୍ଞାତ ଭୂମିକମ୍ପରେ କମ୍ପୁଛି ? କଅଣ ଅଛି ସେଥିରେ ?

ପ୍ରକୃତରେ ଭାରତର ଜାତୀୟ ଭାବଧାରାଟା ସେମିତି କିଛି ନୁହେଁ । ଆମ ଇତିହାସ ବା ଆମ ପୁରାଣମାନେ ସେ କଥା କହନ୍ତି ନାହିଁ । ପୁରାଣ ଯୁଗରୁ ଆମ ଦେଶର ଯେଉଁ ମହାନ ଐତିହ୍ୟ ଅଛି, ଯାହା ଆମର ସାଂସ୍କୃତିକ ପରମ୍ପରାକୁ ପୃଥିବୀର ଇତିହାସରେ ଏକ ମହତ୍ତମ ସ୍ଥାନ ଦେଇଛି ତାକୁ କେହି କେବେ ଠିକାରେ କାହା ହାତରେ ଟେକି ଦେଇ ନାହିଁ ବା ତାକୁ ସେମିତି ଦେଇ ହୁଏ ନାହିଁ । ଭାରତୀୟ ଭାବଧାରା ମନ୍ଦିରରେ ନ ଥାଏ କି ମସ୍‌ଜିଦ୍‌ରେ ନ ଥାଏ । ଯେ କୌଣସି ନିର୍ଦ୍ଦିଷ୍ଟ ଧର୍ମାନୁଷ୍ଠାନର ଚାରିକାନ୍ଥ ଭିତରେ ତାକୁ ଆବଦ୍ଧ କରି ରଖି ହୁଏନା । ତାହା କେବଳ ହିମାଳୟର ଗିରି ଶୃଙ୍ଗରେ ନ ଥାଏ କି ମହାସାଗରର ଉତ୍ତାଳ ତରଙ୍ଗରେ ଭାସୁ ନ ଥାଏ । ତାକୁ ମଧ୍ୟ ପାର୍ଲାମେଣ୍ଟର ଶୀତତାପ ନିୟନ୍ତ୍ରିତ କୋଠରି ଭିତରେ ରଖାଯାଇ ପାରେନା କି ପୁଲିସ ପ୍ରୋଟେକ୍‌ସନ୍ ଭିତରେ କୌଣସି ସରକାରୀ ଫାଇଲ ଭିତରେ ସାଇତା ହୋଇ ନ ଥାଏ ।

ଭାରତୀୟ ଭାବଧାରା ଥାଏ ସମଗ୍ର ଭାରତୀୟଙ୍କ ହୃଦୟ ଭିତରେ । ସେ ହୃଦୟରୁ ସମୁତ୍‌ଥିତ ମନ୍ଥନରୁ ସୃଷ୍ଟି ହୋଇଥିବା ସାହିତ୍ୟର ଅମୃତରୁ । ଯେଉଁ ସାହିତ୍ୟରେ ମଣିଷ ସମାଜର ଯନ୍ତ୍ରଣାର ଶେଷ ପାଇଁ ମନ୍ତ୍ର ରଖି ଦିଆ ଯାଇଛି । ଯେଉଁଥିରେ ମଣିଷ ପାଇଁ ମଣିଷର ନିରବଚ୍ଛିନ୍ନ ପ୍ରେମ ଓ ପ୍ରୀତିର କଥା କୁହା ଯାଇଛି । ସେଥିରେ ଅସହିଷ୍ଣୁତା ନାହିଁ କି ଭେଦଭାବ ମଧ୍ୟ ନାହିଁ । ହିଂସା ନାହିଁ, ଅତ୍ୟାଚାର ନାହିଁ କି ଶୋଷଣ ମଧ୍ୟ ନାହିଁ । ଅଧିକନ୍ତୁ ସେଥିରେ ମନ୍ଦିର ଅଛି, ମସ୍‌ଜିଦ୍ ମଧ୍ୟ ଅଛି । ସେଥିରେ ଗୀତା ଅଛି, କୋରାନ୍ ଅଛି ଓ ବାଇବେଲ ମଧ୍ୟ ଅଛି ।

ସର୍ବୋପରି ସେଠି ସମଗ୍ର ମଣିଷ ସମାଜ ଅଛି । ଭାରତୀୟ ଭାବଧାରା ସେଇ ମହାନ୍ ଭାବଧାରାର ମୂଳପିଣ୍ଡ ଉପରେ ଆଧାରିତ । ସେଥିରୁ ଅଲଗା କରି ତାକୁ ଚିନ୍ତା କରା ଯାଇ ପାରେନା । ତଳକୁ ଏବଂ ଆହୁରି ତଳକୁ ଯାଇ କେବଳ ତାକୁ ଦେଖି ହୁଏ । ତାକୁ ଅନୁଭବ କରି ହୁଏ; କିନ୍ତୁ ତାକୁ ସ୍ପର୍ଶ କରି ହୁଏନା । ସେତେବେଳେ ତାକୁ ପାଇବାକୁ ହେଲେ ହୃଦୟ ଖୋଲି ଦେବାକୁ ହୁଏ । ମଣିଷକୁ ମଣିଷ ବୋଲି କହିବାକୁ ହୁଏ । ତାକୁ ପାଇବାକୁ ହେଲେ ବାହୁ ମେଲି ଆଗେଇ ଯିବାକୁ ପଡ଼େ ଏବଂ ସେଇ ମଣିଷକୁ କୋଳେଇ ନେବାକୁ ହୁଏ

ତେଣୁ ହେ ରାଜନୀତି ! ତୁମେ ତା'ଠୁ ଦୂରେଇ ଯାଅ, ଦୟାକରି ।

(ସମାଜ : ୨୬.୦୧.୨୦୦୧)

# ଆଉ ଏକ କଳଙ୍କିତ ଇତିହାସ

ଘଟଣାଟି ଘଟିଛି ରାଜଧାନୀ ଦିଲ୍ଲୀରେ । ଭାରତର ପ୍ରମୁଖ ସମ୍ବାଦପତ୍ରମାନେ ଏହି ସମ୍ବାଦକୁ ବେଶ ନଜରରେ ପଡୁଥିବା ସ୍ଥାନରେ ପରିବେଷଣ କରିଛନ୍ତି । ଆଉ କେହି କେହି ତାକୁ ଗୋଟିଏ ବକ୍ସ ଭିତରେ ମଧ ଛାପିଛନ୍ତି । ସେମାନଙ୍କର ଗୋଟିଏ ମହତ୍ ଉଦ୍ଦେଶ୍ୟ ଯେ ଏହା ଭିତରେ ଅଛି ତାହା ନିଃସନ୍ଦେହ । ଏ ପ୍ରକାର ସମ୍ବାଦକୁ କେବଳ ପ୍ରଚାର ଉଦ୍ଦେଶ୍ୟରେ ବ୍ୟବହାର କରା ଯାଉଛି ବୋଲି ଭାବିବା ଠିକ୍ ହେବ ନାହିଁ । ଘଟଣା ସପକ୍ଷରେ ବା ବିପକ୍ଷରେ ଜନମତ ସୃଷ୍ଟି ସମ୍ବାଦପତ୍ରର ଏକ ମୁଖ୍ୟ ଉଦ୍ଦେଶ୍ୟ । ତାହାହିଁ ସମ୍ବାଦପତ୍ରର ଧର୍ମ । କାରଣ ତା ଉପରେ ସମାଜର ସ୍ଥିତି ନିର୍ଭର କରେ । ନାଗରିକ ସଚେତନତା ହିଁ ସମାଜର ସ୍ଥିତିକୁ ସୁଦୃଢ଼ କରେ ।

ସମ୍ବାଦର ଶିରୋନାମା ଥିଲା ଏହିପରି -'ହିନ୍ଦୁଧର୍ମର ସୁରକ୍ଷା ପାଇଁ ଦାରା ଫାଶି ପାଇଲେ ଆଉ ଏକ ଦାରା ସୃଷ୍ଟି ହେବ ।' (ସମାଜ: ୩୧.୧.୧୦୦୧)

ଚମତ୍କାର ଶିରୋନାମା । ଆଖି ଆପେ ଆପେ ଟାଣି ହୋଇ ଆସେ । ଖବରଟି ମୋଟା ମୋଟି ଏମିତି ଯେ ଗ୍ରାହାମ ଷ୍ଟେନସ୍ ଓ ତାଙ୍କର ଦୁଇ କୋମଳମତି ଶିଶୁ ପୁତ୍ରଙ୍କୁ ପୋଡି ମାରି ଦେବାର ଅଭିଯୋଗରେ ଦାରାକୁ ଯଦି ବିଚାରରେ ଦୋଷୀ ସାବ୍ୟସ୍ତ କରି ପ୍ରାଣଦଣ୍ଡ ଦିଆଯାଏ ତେବେ ତାର ମାଆ (ଯେକି ଉତ୍ତର ପ୍ରଦେଶରୁ ଦିଲ୍ଲୀ ଯାଇ ଗୋଟିଏ ସମ୍ବର୍ଦ୍ଧନା ସଭାରେ ଘୋଷଣା କରିଛନ୍ତି) ତାଙ୍କର ଦ୍ୱିତୀୟ ପୁତ୍ରକୁ ମଧ ଦ୍ୱିତୀୟ ଦାରା ରୂପେ ତିଆରି କରିବେ ।

ଦାରାର ମାଆକୁ ଦିଲ୍ଲୀର ଗୋଟିଏ 'ମାରୱାଡ଼ି ପରିଷଦ' ତରଫରୁ ଭବ୍ୟ ସମ୍ବର୍ଦ୍ଧନା ଦିଆ ଯାଇଥିଲା । ଏହି ଅନୁଷ୍ଠାନ କୁଆଡ଼େ ଦାରାର ଶୁଭେଚ୍ଛୁମାନଙ୍କର ଅନୁଷ୍ଠାନ ଏବଂ ଏମାନେ ସେଦିନ ଗ୍ରାହମ ଷ୍ଟେନସ୍‌ମାନଙ୍କର ହତ୍ୟାର ଦ୍ୱିତୀୟ ବାର୍ଷିକ ଉତ୍ସବ ପାଳନ କରୁଥିଲେ । ଏହି ଦିବସକୁ ସେମାନେ 'ଆତଙ୍କବାଦୀ ଖ୍ରୀଷ୍ଟିଆନ ପାଦ୍ରୀ ବିତାଡନ ଦିବସ' ହିସାବରେ ମଧ ପାଳନ କଲେ । ଏହି ଉତ୍ସବାନୁଷ୍ଠାନରେ ଦାରାର ମାଆ କୁଆଡ଼େ ଘୋଷଣା କଲେ ଯେ 'ପୁଅର କାମ ପାଇଁ ସେ ନିଜକୁ ଗର୍ବ ଅନୁଭବ କରୁଛନ୍ତି ଏବଂ ଷ୍ଟେନସ୍‌କୁ ହତ୍ୟା କରି ସେ କୌଣସି ପାପ କରିନାହିଁ ।'

ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ ଏହି ସଭାରେ ପୂର୍ବତନ ବିଜେପି ସାଂସଦ ବୈକୁଣ୍ଠଲାଲ ଶର୍ମାଙ୍କ ସମେତ ବିଶ୍ୱହିନ୍ଦୁ ପରିଷଦ ଏବଂ ବଜରଙ୍ଗ ଦଳର ବହୁ ନେତା ଓ କର୍ମୀ ଉପସ୍ଥିତ ଥିଲେ ବୋଲି ମଧ୍ୟ ସମ୍ବାଦରେ କୁହାଯାଇଛି ।

ଷ୍ଟେନସ୍ ହତ୍ୟାକୁ ଏହି ଅନୁଷ୍ଠାନ ଯୁକ୍ତିଯୁକ୍ତ ବୋଲି ଏବେ ସ୍ୱୀକାର କରିଛି । ସେମାନଙ୍କର ମତ ଯେ ଷ୍ଟେନସ୍ ଯେହେତୁ ଧର୍ମାନ୍ତରଣ କରୁଥିଲେ ଏବଂ ଯାହାଦ୍ୱାରା ହିନ୍ଦୁ ଧର୍ମାବଲମ୍ବୀଙ୍କ ସଂଖ୍ୟା ଧୀରେ ଧୀରେ କମି ଆସୁଥିଲା ତେଣୁ ତାଙ୍କ ହତ୍ୟା ଧର୍ମର ସଂରକ୍ଷଣ ପାଇଁ ଆବଶ୍ୟକ ଥିଲା ।

ଷ୍ଟେନସ୍ ନିଜେ ଧର୍ମାନ୍ତରଣ କରାଉଥିଲେ ତାର କୌଣସି ପ୍ରମାଣ ଏଯାଏ କେହି ଦେଇ ନାହାନ୍ତି । କୌଣସି ଗୋଟିଏ ଉଦାହରଣ ମଧ୍ୟ ଦିଆଯାଇ ନାହିଁ । ଷ୍ଟେନସ୍‌ଙ୍କ ସ୍ତ୍ରୀ ମଧ୍ୟ ବହୁବାର କହିଛନ୍ତି ଯେ ଷ୍ଟେନସ୍‌ଙ୍କର ଧର୍ମାନ୍ତରଣ ସହିତ କୌଣସି ସମ୍ପର୍କ ନ ଥିଲା । ତାଙ୍କର ସମ୍ପର୍କ ଥିଲା କେବଳ କୁଷ୍ଠରୋଗୀମାନଙ୍କ ସହିତ । ତେବେ ଏସବୁ କଥା ଠିକ୍ କି ନୁହେଁ ସେ କଥା ଏ ଯାଏ ଜଣା ପଡିନାହିଁ । ଦାରାର ବିଚାର ଅବସରରେ ଏ କଥା ଜଣା ପଡ଼ିବ କି ନା ସେ କଥା ମଧ୍ୟ ଆମକୁ ଜଣା ନାହିଁ । କାରଣ ଦାରା ନିଜେ ଏ ଯାଏ ତାର ବୟାନରେ ଷ୍ଟେନସ୍‌ମାନଙ୍କୁ ହତ୍ୟା କରିଛି ବୋଲି ସ୍ୱୀକାର କରି ନାହିଁ । ତେଣୁ କୋର୍ଟରେ ସେ ବିଚାର କେଉଁ ରୂପ ଗ୍ରହଣ କରିବ ସେ କଥା ଏବେ ଠାରୁ କହିବା ମଧ୍ୟ ସମ୍ଭବ ନୁହେଁ । ତେଣୁ ଆମେ ସେ ଆଡ଼କୁ ଯିବା ନାହିଁ ।

ପ୍ରଶ୍ନ ଉଠୁଛି, ଧରି ନିଆଯାଉ ଷ୍ଟେନସ୍ ଧର୍ମାନ୍ତରଣ କରାଉ ଥିଲେ । ଧର୍ମାନ୍ତରଣ ଅପରାଧ ନୁହେଁ । ଅନ୍ତତଃ ସମ୍ବିଧାନର ୨୫ ଧାରା ଆମ ସମସ୍ତଙ୍କୁ ସେ ଅଧିକାର ଦେଇଛି । ତଥାପି ଆମେ ତା ଭିତରକୁ ପଶିବାକୁ ଚାହୁଁନା । କାରଣ ଆଇନର ତର୍ଜମା ଏକ ଭିନ୍ନ ବ୍ୟାପାର । 'ନଇକେ ବାଙ୍କ, କଥାକେ ଫାଙ୍କ' ପରି ଆମ ଦେଶରେ ଆଇନ ତର୍ଜମାଟା ଅନେକ ସମୟରେ 'ନା' କୁ 'ହଁ' କରିଦିଏ ଏବଂ 'ହଁ' କୁ ବି 'ନା' କରି ଦିଏ ।

ଏସବୁ ସତ୍ତ୍ୱେ ଧରି ନିଆଯାଉ ଷ୍ଟେନସ୍ ଧର୍ମାନ୍ତରଣ କରାଉ ଥିଲେ । ତେଣୁ ତାଙ୍କୁ ଦଣ୍ଡ ଦିଆଗଲା । କିନ୍ତୁ କି ଅପରାଧ କରିଥିଲେ ସେ ଅବୋଧ ଶିଶୁ ଦୁଇଜଣ ? ଶିଶୁମାନେ ଧର୍ମ କହିଲେ କ'ଣ ବୁଝନ୍ତି ? ଧର୍ମ କହିଲେ ସେମାନେ ଈଶ୍ୱରଙ୍କୁ ବୁଝନ୍ତି । ଏବଂ ଆମେ ସମସ୍ତେ ଈଶ୍ୱର କହିଲେ ଶିଶୁକୁ ହିଁ ବୁଝୁଁ । ଶିଶୁ ଦେହରେ ଈଶ୍ୱର ଅଛି ବୋଲି ତାକୁ ସାପ ମଧ୍ୟ ଚୋଟ ମାରେ ନାହିଁ । କିନ୍ତୁ ମଣିଷ ତାକୁ ହତ୍ୟା କରି ପାରିଲା ? ଦୁଇଟି ନିରୀହ ଶିଶୁ, ନିଷ୍ପାପ ଶିଶୁ ନିଆଁରେ କଲବଲ ହୋଇ ପୋଡି ପାଉଁଶ ହୋଇ

ଗଲେ । ଏ କଥା ମଣିଷ ଖାଲି ଦେଖିଲା ନାହିଁ, ସେତେବେଳେ ଡ୍ରମ ଓ ଅନ୍ୟାନ୍ୟ ବାଦ୍ୟଯନ୍ତ୍ର ବଜାଇ ଅଗ୍ନି ଉତ୍ସବ ପାଳନ କରୁଛି ବୋଲି କହି ପାରିଲା ? ଏହା କ'ଣ ମଣିଷର ଧର୍ମ ? ଏହାକୁ ମାନବିକତା ବୋଲି କହିହେବ ? କହିହେବ ଏହା ଏକ ଧାର୍ମିକ ଆଚରଣ ? କେଉଁ ଧର୍ମରେ ଏହା ଅଛି ? ତା ଛଡ଼ା ଷ୍ଟେନସ୍ ଧର୍ମାନ୍ତରଣ କରାଉଥିଲେ ବୋଲି ତାଙ୍କୁ କଅଣ ପୋଡ଼ି ମାରି ଦିଆ ଯିବ ? କୋଉ ଦେଶରେ ଏ ଆଇନ ଅଛି ?

ଷ୍ଟେନସ୍ ପୋଡ଼ିକୁ ସମଗ୍ର ପୃଥିବୀ ନିନ୍ଦା କରି ଆସିଛି । ଅକ୍ଷାଂଶରୁ ଦ୍ରାଘିମା ପର୍ଯ୍ୟନ୍ତ ଏବଂ ମେରୁରୁ ମେରୁ ପର୍ଯ୍ୟନ୍ତ ସମସ୍ତେ ନିର୍ବିବାଦରେ ଏବଂ ଏକ ସ୍ୱରରେ ତାକୁ ଘୃଣା କରିଛନ୍ତି । ସମସ୍ତେ ସେତେବେଳେ ଗୋଟିଏ କଥା କହିଛନ୍ତି- ଏହା 'ମାନବିକତାର ହତ୍ୟା' ।

ଆମ ଦେଶର ରାଷ୍ଟ୍ରପତି ଦୁଃଖରେ ଭାଙ୍ଗି ପଡ଼ିଛନ୍ତି । ସେ ହତ୍ୟାର ନିନ୍ଦା ପାଇଁ ତାଙ୍କ କଣ୍ଠ ଆହୁରି କଠୋର ହୋଇ ଉଠିଥିଲା । ଏବେ ବି ସେ କହୁଛନ୍ତି- ବାରମ୍ବାର କହୁଛନ୍ତି 'ଧର୍ମାଚରଣରେ ଅସହିଷ୍ଣୁତାର ସ୍ଥାନ କାହିଁ ?' ପ୍ରଧାନମନ୍ତ୍ରୀ ବାଜପେୟୀ ଓ ଘରୋଇ ବିଭାଗ ମନ୍ତ୍ରୀ ଆଡ଼ୱାଣୀ ମଧ୍ୟ ସେତେବେଳେ ତାର ନିନ୍ଦା କରିଛନ୍ତି ।

କିନ୍ତୁ ତା ସତ୍ତ୍ୱେ ଆମ ଦେଶରେ ଷ୍ଟେନସ୍‌ମାନଙ୍କର ପୋଡ଼ି ବନ୍ଦ ହୋଇନାହିଁ । ବଢ଼ିଚି ବରଂ କମି ନାହିଁ । ପ୍ରତିଦିନ ପ୍ରତି ରାଜ୍ୟରେ ସେ ଅମାନବିକ ଅତ୍ୟାଚାର ସୀମା ଟପି ଚାଲିଛି । ସୀମା ଟପି ଯାଉଛି ଚର୍ଚ୍ଚ ଓ ମସ୍‌ଜିଦ୍‌ମାନଙ୍କର ଧ୍ୱଂସ ସାଧନ । ଭାଙ୍ଗି ଚୁରମାର କରି ଦିଆ ଯାଉଛି ନଚେତ ଅପବିତ୍ର କରି ଦିଆ ଯାଉଛି । ନାନା ଭାବରେ ମାଲି ମୋକଦ୍ଦମାରେ ସେମାନଙ୍କୁ ଛନ୍ଦି ଦିଆ ଯାଉଛି ଏବଂ ତାପରେ ସେ ଜାଗାକୁ ପ୍ରବେଶ ନିଷେଧ କରି ଅକାମି କରି ଦିଆ ଯାଉଛି । ସେଠି ବଳ ପ୍ରୟୋଗ କରା ଯାଉଛି ଏବଂ ପ୍ରଶାସନକୁ ଚାପ ଦେଇ ଅତ୍ୟାଚାର କରା ଯାଉଛି । ଆଇନ ଓ ପୁଲିସକୁ ହାତ ମୁଠାରେ ରଖି ଏସବୁ କାମକୁ ସହଜ ଓ ସରଳ କରି ଦିଆ ଯାଉଛି । ସଂଖ୍ୟାଲଘୁ ମାନଙ୍କ ଉପରେ ଅତ୍ୟାଚାର ଏବେ ସୀମା ଟପିଲାଣି ।

ଏ ସବୁ କଥା ଆଜି ଆଉ କେବଳ ଭାରତ ଭିତରେ ସୀମାବଦ୍ଧ ହୋଇ ରହି ନାହିଁ । ଭାରତ ଭିତରେ ଯେ କେବଳ ସଚେତନ ନାଗରିକମାନେ ହିଂସା ଓ ଦ୍ୱେଷ ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି ତା ନୁହେଁ, ଗଣମାଧ୍ୟମ ଏ ସବୁର ଘୋର ବିରୋଧ କରିଛି । ଧର୍ମକୁ ନେଇ ମୌଳବାଦୀମାନେ ସମଗ୍ର ପୃଥିବୀରେ ଯେଉଁ ଅଗ୍ନିର ଖେଳ ଖେଳିଛନ୍ତି ତାକୁ ନିନ୍ଦା କରିବାକୁ କେହି କେବେ ପଛେଇ ନାହାନ୍ତି ।

ଗତବର୍ଷ ପ୍ରଧାନମନ୍ତ୍ରୀ ବାଜପେୟୀ ଯେତେବେଳେ ଆମେରିକା ଯାଇଥିଲେ, ସେତେବେଳେ ନିଉୟର୍କ ସହରରେ ପୃଥିବୀର ମହାନ ଧର୍ମଗୁରୁମାନଙ୍କର ବିଶ୍ୱ ଶାନ୍ତି

ସମ୍ମିଳନୀ(World Peace Summit) ଅନୁଷ୍ଠିତ ହେଉଥିଲା । ସେତିକି ବେଳେ ଆମେରିକା ସରକାରଙ୍କ ତରଫରୁ ପୃଥିବୀର ବିଭିନ୍ନ ଦେଶର ଧର୍ମକୁ ନେଇ ଯେଉଁ ସଂଘର୍ଷ ଦେଖା ଦେଇ ଥିଲା ତା' ଉପରେ ଗୋଟିଏ ଶ୍ୱେତପତ୍ର ପ୍ରକାଶ ପାଇଥିଲା । ସେଥିରେ ଭାରତ କଥା ଏବଂ ବିଶେଷ କରି ଓଡ଼ିଶାର ଷ୍ଟେନସ୍ ପୋଡ଼ି ଠାରୁ ଆରମ୍ଭ କରି ୟୁପି ଓ ଗୁଜୁରାଟରେ ହେଉଥିବା ସଂଖ୍ୟାଲଘୁମାନଙ୍କ ଉପରେ ଅତ୍ୟାଚାରର ବିସ୍ତୃତ ବିବରଣୀ ପ୍ରଦାନ କରା ଯାଇଥିଲା । ସେଥିରେ ଏକଥା ମଧ୍ୟ ପ୍ରକାଶ ପାଇଥିଲା ଯେ ଭାରତ ଉପ ମହାଦେଶରେ ଗତ ଦୁଇ ବର୍ଷ ଭିତରେ ସଂଖ୍ୟାଲଘୁମାନଙ୍କ ଉପରେ ହୋଇଥିବା ଅତ୍ୟାଚାରକୁ ସେଠାକାର ସରକାର ପ୍ରତିଶ୍ରୁତି ଦେଇ ମଧ୍ୟ ରୋକି ପାରି ନାହାନ୍ତି ।

ଏବେ ସେଇ ସବୁ ଧାର୍ମିକ ଅସହିଷ୍ଣୁତାକୁ ଅଧିକ ପ୍ରୋତ୍ସାହନ ଦିଆ ଯାଉଛି । ଘୃଣା ଓ ହିଂସାର ପ୍ରଲେପ ପ୍ରତି ମୁହୂର୍ତ୍ତରେ ମଣିଷ ମନରେ ଲେପି ଦିଆ ଯାଉଛି । ଅନ୍ଧ ବିଶ୍ୱାସ ଓ କୁସଂସ୍କାରକୁ ଐଶ୍ୱରିକ ଶକ୍ତି ବୋଲି କୁହା ଯାଇ ମଣିଷ ମନ ଭିତରେ ଧର୍ମର ଅଫିମ ଭର୍ତ୍ତି କରି ଦିଆ ଯାଉଛି । ମଣିଷକୁ ପାଗଳ କରି ଦିଆ ଯାଉଛି । କୁମ୍ଭ ମେଳାରେ କୁହାଗଲା ଯେ ସାଧୁମାନଙ୍କର ଧର୍ମର ଶକ୍ତି ଯୋଗୁଁ ସେଠାରେ ଭୂକମ୍ପ ଆସିବାର ଥିଲେ ମଧ୍ୟ ଆସି ପାରିଲା ନାହିଁ । ତେବେ ଗୁଜରାଟର ସରକାର ସାଧୁ ସନ୍ଥମାନଙ୍କର, ଭକ୍ତଙ୍କର ସରକାର ହୋଇ ମଧ୍ୟ ସେଠି ଭୂକମ୍ପକୁ କାହିଁକି ରୋକାଯାଇ ପାରିଲା ନାହିଁ ।

ଭାରତବର୍ଷ କେବେ ହିଂସା ଓ ଦ୍ୱେଷର ଦେଶ ନ ଥିଲା । ସହନଶୀଳତା ତାର ଏକମାତ୍ର ଧର୍ମ । ଆଜି ଦେଶରେ ଧର୍ମ ନାମରେ ଯେଉଁ ବିଭତ୍ସତା ଚାଲିଚି ତାହା ଆମକୁ ଧ୍ୱଂସ ଆଡ଼କୁ ଟାଣି ନେଉଛି ।



(ସମାଜ : ୧୪.୦୨.୨୦୦୧)

# ଅନ୍ୟ ଏକ ଓଡ଼ିଶାର ଇତିହାସ

ଏବେ ଏବେ ଖବର ପ୍ରକାଶ ପାଇଛି ଯେ ଓଡ଼ିଶା ବିଧାନସଭା ଗୃହରେ ଆଧୁନିକ କହିବା ଓ ଶୁଣିବା ଯନ୍ତ୍ର ପ୍ରଚଳନ କରା ଯାଇଛି । (ସମାଜ : ୩୦,ଜୁଲାଇ) ଏହି ସମ୍ବାଦରେ ଏ କଥା କୁହା ଯାଇଛି ଯେ ବିଧାନସଭାରେ ଏହି ଯନ୍ତ୍ରଗୁଡ଼ିକ ଅନେକ ପୁରୁଣା ହେଇ ଗଲାଣି । ପୁରୁଣା ହେଇ ଯାଇଥିବା କେତେକ ଯନ୍ତ୍ରାଂଶ ଖରାପ ହେଇ ଭାଙ୍ଗି ଗଲାଣି । ତାର ମରାମତି ହୋଇ ପାରୁନାହିଁ । ସେ ଯନ୍ତ୍ରାଂଶ କମ୍ପାନୀ ତିଆରି କରୁନାହିଁ, ତେଣୁ ମିଳୁନାହିଁ । ଫଳରେ ଆଲୋଚନାବେଳେ ମାନ୍ୟବର ସଦସ୍ୟମାନେ ସ୍ପଷ୍ଟ ଭାବେ କହି ପାରୁ ନାହାନ୍ତି କିମ୍ୱା ତାକୁ ଅନ୍ୟମାନେ ଭଲ ଭାବରେ ଶୁଣି ମଧ ପାରୁ ନାହାନ୍ତି ।

ବିଧାନସଭା ହେଉଚି ଗୋଟିଏ ରାଜ୍ୟର ବା ସେ ଜାତିର ଭାଗ୍ୟ ନିୟନ୍ତ୍ରକ । ସେଇଠି ଲୋକ ପ୍ରତିନିଧିମାନେ ବସି ଆଲୋଚନା କରି ରାଜ୍ୟର ବର୍ତ୍ତମାନ ଓ ଭବିଷ୍ୟତ ପାଇଁ ନୀତି ନିର୍ଦ୍ଧାରଣ କରନ୍ତି । ଏହା ହିଁ ସଂସଦୀୟ ଗଣତନ୍ତ୍ରର ନିୟମ । ଏ ପ୍ରକାର ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ଯଦି ଭଲ ଭାବରେ କହି ନ ହୁଏ କି ଶୁଣି ନ ହୁଏ ତେବେ ଆଉ କଅଣ ହେବ ? ତେଣୁ ସେ ସବୁ ଯନ୍ତ୍ରର ଆଧୁନିକୀକରଣ ଯଥାର୍ଥ ଓ ଜରୁରୀ ମଧ । ଏହି ସଂବାଦରେ ଏ କଥା ମଧ କୁହାଯାଇଛି ଯେ ଏ ଅସୁବିଧା ଦୂର କରିବା ପାଇଁ ଏବଂ ଦିଲ୍ଲୀର 'ବିଜ୍ଞାନ ଭବନ' ପରି ସର୍ବାଧୁନିକ ଓ ସୁନ୍ଦର ଯନ୍ତ୍ରପାତି ଖଞ୍ଜିବା ପାଇଁ ଗୋଟିଏ ବିଦେଶୀ କମ୍ପାନୀ 'ଡେନିସ୍ ଇନଫରମେସନ ସିଷ୍ଟମସ୍'ର ସାହାଯ୍ୟ ନିଆ ଯାଇ କାମ କରା ଯାଇଛି । ତା ସହିତ 'ଲେମାର୍କ କମ୍ପାନୀ' ଦ୍ୱାରା ବିଧାନସଭାର ରେକର୍ଡିଂ ସିଷ୍ଟମକୁ ମଧ ପରିବର୍ତ୍ତନ କରା ଯାଇଛି । ଏ ସମସ୍ତ କାମରେ ସରକାର ମୋଟ କେତେ ଖର୍ଚ୍ଚ କଲେ ସେ କଥା ପ୍ରକାଶ ପାଇନାହିଁ । ସରକାର ଯଦି ଗୋଟିଏ ପରସେଣ୍ଟ ଅର୍ଥ କର୍ମଚାରୀଙ୍କୁ ଭତ୍ତା ଦେବାରେ ବଢାନ୍ତି କିମ୍ୱା ଲୋକଙ୍କ ପାଇଁ ଖର୍ଚ୍ଚ କରନ୍ତି ତେବେ ସେଥିରେ ରାଜକୋଷରୁ ମୋଟ କେତେ ଖର୍ଚ୍ଚ ହେଲା ତାକୁ ବାରମ୍ବାର ଘୋଷଣା କରନ୍ତି । ଏ କ୍ଷେତ୍ରରେ କାହିଁକି ସେ କଥା ହେଲା ନାହିଁ ଜଣା ପଡୁନାହିଁ । କିନ୍ତୁ ହେବା ଉଚିତ । ଆମେ ସ୍ୱଚ୍ଛତା ଉପରେ ଜୋର ଦେଉଥିଲା ବେଳେ ଏ ଖର୍ଚ୍ଚଟା ପରଦା ଆଢୁଆଳରେ ରହିଯିବା ଉଚିତ ନୁହେଁ ।

ଏଠି ଆଉ ଗୋଟିଏ ପ୍ରଶ୍ନ ମନକୁ ଆସେ । ଯୋଉ ଅଡ଼ିଓ ସିଷ୍ଟମ ଆମର ଥିଲା ସେ ସିଷ୍ଟମ ଭାରତର ଅନ୍ୟ ସବୁ ବିଧାନସଭାରେ ମଧ ଅଛି ଓ ଥିବ । ଆରମ୍ଭରେ

ସମସ୍ତେ ଗୋଟିଏ ସିଷ୍ଟମ କରିଥିଲେ । ସେ ସିଷ୍ଟମ କେବଳ ଆମର ଖରାପ ହେଲା କି ଅନ୍ୟ ମାନଙ୍କର ହେଉଚି ଆମକୁ ଜଣାନାହିଁ । ସେମାନେ ସମସ୍ତେ ମରାମତି କାମ ଦେଶୀ କମ୍ପାନୀ କି ବିଦେଶୀ କମ୍ପାନୀ ଦ୍ୱାରା କରେଇଛନ୍ତି ସେ କଥା ମଧ ଜଣା ନାହିଁ । କେଉଁମାନେ ପୂରାପୂରି ଆମ ପରି ନୂଆ କାମ ବିଦେଶୀ କମ୍ପାନୀ ଦ୍ୱାରା କରେଇଚନ୍ତି ସେ କଥା ପ୍ରକାଶ ପାଇ ନାହିଁ । ବିଶେଷଜ୍ଞ ଦଳ ଏ ସବୁକୁ ବିଚାରକୁ ନେଇ ଥିବେ ବୋଲି ଆଶା କରାଯାଏ । କହିବାର ଉଦ୍ଦେଶ୍ୟ ହେଉଛି, ଏ ପ୍ରକାର ଅତ୍ୟନ୍ତ ବ୍ୟୟ ବହୁଳ କାମ ହାତକୁ ନେବା, ପୁଣି ରାଜ୍ୟର ଆର୍ଥିକ ସଂକଟ ସମୟରେ ଏକାନ୍ତ ଜରୁରୀ ଥିଲା କି ନା  ସେ କଥା ଲୋକେ ଜାଣିବା ଉଚିତ । ଦ୍ୱିତୀୟ କଥାଟା ହେଲା ଆଜିକାଲି ଯୁଗରେ ଆମ ଦେଶରେ କାରିଗରୀ ଜ୍ଞାନ କୌଶଳ କଅଣ ସତରେ ଅଭାବ ଯେ ମାମୁଲି ଅଡ଼ିଓ ସିଷ୍ଟମ ପାଇଁ ଆମକୁ ଦେଶ ବାହାରକୁ ଯିବା ପଡ଼ିଲା ? ଆମେ ସତରେ କଅଣ ଏତେ ପଛରେ ? ତେବେ ସ୍ୱଦେଶୀ କଥାଟା କଅଣ କେବଳ ନାଁକୁ ମାତ୍ର ? ଆମର ମୁହଁରେ ଗୋଟାଏ କଥା ଓ ପେଟରେ ଗୋଟାଏ କଥା ? ଏଥିରେ ଅନେକ ପ୍ରଶ୍ନ ଅମୀମାଂସିତ ରହି ଯାଉଚି ।

ବିଧାନସଭାରେ କହିବା ଓ ଶୁଣିବା ବ୍ୟକ୍ତି ଉପରେ ନିର୍ଭର କରେ । ସେଠି ଯେମିତି ଭାବରେ ଗର୍ଜନ ତର୍ଜନ ହୁଏ ଏବଂ ଯୁଦ୍ଧଂଦେହୀର ଡାକରା ଦିଆଯାଏ ସେ ସବୁତ ବିନା ଅଡ଼ିଓ ସିଷ୍ଟମରେ ମଧ ଶୁଣି ହୁଏ । ସବୁ ଠାରୁ ଦୂରରେ ଥାଆନ୍ତି ସେଠି ସାମ୍ବାଦିକମାନେ । ସେମାନେ ସବୁ କଥା ଏପରିକି ଖୁସି ଗପ ମଧ ଭଲ ଭାବରେ ଶୁଣି ପାରନ୍ତି ଏବଂ ଠିକ  ଠିକ ରିପୋର୍ଟ ମଧ କରନ୍ତି । ତେବେ ଆଉ ଅସୁବିଧା କାହାର ହେଲା ? ଆଲୋଚନା ବେଳେ ଅଧିକାଂଶ ସଭ୍ୟ ଲବିରେ ଥାଆନ୍ତି କିମ୍ବା ଅନ୍ୟଠି ଥାଆନ୍ତି । ମନ୍ତ୍ରୀମାନେ ସଂଲଗ୍ନ ଅଫିସରେ ଥାଆନ୍ତି । ତାଙ୍କ ସୁବିଧା ପାଇଁ ସବୁଠି ଯନ୍ତ୍ର ଖଞ୍ଜା ଥାଏ । ତେଣୁ ସେଠି ଅସୁବିଧା ଥାଏ ବୋଲି ଅବଶ୍ୟ ଆଜିଯାଏ ସେମିତି କିଛି ଅଭିଯୋଗ ଶୁଣା ଯାଇନାହିଁ । ବିଧାନସଭାରେ କେମିତି ଓ କି ପ୍ରକାର ଆଲୋଚନା ହୁଏ ସେ କଥା ସମସ୍ତେ ଜାଣନ୍ତି । ସବୁଠାରୁ ଜରୁରୀ ଆଲୋଚନା ହୁଏ ବଜେଟ ସମୟରେ । ସେତେବେଳେ କିନ୍ତୁ ବହୁଥର କୋରମ ହୁଏ ନାହିଁ ବୋଲି ପ୍ରକାଶ ପାଇଚି । ଆସେମ୍ବ୍ଲିରେ ବୌଦ୍ଧିକ ଆଲୋଚନା ହୁଏ କି ନା ମୋତେ ଜଣା ନାହିଁ । ତେବେ ବହୁବାର ଜୀବନର ଗତି ପଥ ବଦଳ କରି ଏବେ ବିଜେଡିରେ ଥାଇ ବିଜେପିର ସାଧୁଙ୍କ ବେଶ ପକେଇ ଥିବା କବି ପ୍ରସନ୍ନ ପାଟଶାଣୀ ଯେତେବେଳେ ଆସେମ୍ବ୍ଲିରେ ଥିଲେ ସେତେବେଳେ ସେ କୌଣସି ଆଲୋଚନା ଅପେକ୍ଷା କବିତାଟିଏ ପଢି ନିଜର କର୍ତ୍ତବ୍ୟ ସମ୍ପାଦନ କରିବାକୁ ସୁଖକର ମଣୁ ଥିଲେ । ବିଧାନସଭାରେ ଏହା ହିଁ ଆଜିକାଲି ମୁଖ୍ୟ ବିଷୟ । ତେବେ ନୂଆ ସିଷ୍ଟମର ଆବଶ୍ୟକତା କେତେ ଜରୁରୀ  ତାହା ଜଣା ପଡେ । ଆଉ ଗୋଟିଏ କଥା, ଆଜି କାଲି ଆସେମ୍ବ୍ଲିରେ ଯେମିତି ଖଣ୍ଡଯୁଦ୍ଧ ହେଉଚି ସେଥିରେ

ଏଇ କଥାକୁହା ଯନ୍ତ୍ରଗୁଡ଼ାକ ଯେ ସବୁଠାରୁ ବେଶି କ୍ଷତିଗ୍ରସ୍ତ ହେଉଥିବେ ଏଥିରେ ସନ୍ଦେହ ନାହିଁ । ଖଣ୍ଡଯୁଦ୍ଧ ଓ ବାକ୍‌ଯୁଦ୍ଧ ଏବେ ଆମର ସଂସଦୀୟ ପରମ୍ପରା । ସେ ଅବସ୍ଥାରେ ନୂଆକରି ଲାଗିଥିବା ସୂକ୍ଷ୍ମ ଓ ସୌଖୀନ ଯନ୍ତ୍ରପାତିଗୁଡ଼ାକ କେତେ ଦିନ ଯିବ ? ବିଦେଶୀ କମ୍ପାନୀମାନେ ଭଙ୍ଗା ଫୋପଡାରେ କ୍ଷତି ହେଉଥିବା ଯନ୍ତ୍ରାଂଶ ପାଇଁ କ୍ଷତି ପୂରଣ ଦେଉ ନ ଥିବେ । ତେଣୁ ବାଚସ୍ପତି ମହୋଦୟ ଏଥିପାଇଁ କ୍ଷତିର ଭରଣା ପାଇଁ ସଦସ୍ୟମାନଙ୍କ ଉପରେ 'କର' ବସାଇବା କଥା ଚିନ୍ତା କରନ୍ତୁ । ନଚେତ ଦେଶର ଗରିବ ଲୋକମାନେ କେତେ ଦିନ ଏ କଥା ସହ୍ୟ କରିବେ ?

ଏବେ ବିଜ୍ଞାନ ଭବନ କଥା । ଆମ ଆସେମ୍ଲିକୁ ତା' ସହିତ ତୁଳନା କରା ଯାଇଛି । କିନ୍ତୁ ବିଜ୍ଞାନ ଭବନରେ ଯେଉଁ ଆଲୋଚନା ହୁଏ ସେଥିରେ ଜାତୀୟ ତଥା ଆନ୍ତର୍ଜାତିକ ସ୍ତରର ବିଦ୍ୱାନ, ଜ୍ଞାନୀ, ଗୁଣୀ ଓ ପଣ୍ଡିତମାନେ ଯୋଗ ଦିଅନ୍ତି । ସେଠି ଯାହା ଆଲୋଚନା ହୁଏ ତାକୁ ସ୍ଥାୟୀ ଭାବରେ ରଖା ଯାଏ ଏଇଥିପାଇଁ ଯେ ତାହା ସମଗ୍ର ମଣିଷ ଜାତିର ଭବିଷ୍ୟତ ନିର୍ଦ୍ଧାରଣ କରେ । ସମଗ୍ର ପୃଥିବୀର ମଣିଷମାନେ ସେ ଆଲୋଚନାର ଫଳାଫଳକୁ ଅପେକ୍ଷା କରି ଥାଆନ୍ତି । କିନ୍ତୁ ଆମ ବିଧାନସଭାରେ ଯେଉଁମାନେ ଆଲୋଚନା କରନ୍ତି ସେମାନଙ୍କର ସେ ପ୍ରକାର ଶିକ୍ଷାଗତ କିଛି ଯୋଗ୍ୟତା ଥିବା ଜରୁରୀ ନୁହେଁ । ମୋଟେ କିଛି ଶିକ୍ଷାଗତ ଯୋଗ୍ୟତା ନ ଥିଲେ ମଧ୍ୟ ସେ ସଭ୍ୟ, ମନ୍ତ୍ରୀ ଏପରିକି ମୁଖ୍ୟମନ୍ତ୍ରୀ ମଧ୍ୟ ହେଇ ପାରିବେ । ସେମାନଙ୍କର ଶାରୀରିକ ଅକ୍ଷମତା ଅର୍ଥାତ କାନକୁ ମୋଟେ ଶୁଭୁ ନ ଥିଲେ, ଆଖିକୁ ଦେଖା ଯାଉ ନ ଥିଲେ ଅସୁବିଧା ନାହିଁ । ସେମାନେ, ପରସ୍ପରର ଭାଷା ବୁଝୁ ନ ଥିଲେ କିଛି ଯାଏ ଆସେନା । 'କ'ଅଣ ସେ କହିଲେ' ବୋଲି ପଚାରି ଦେଲେ ଚଳିବ । ତେଣୁ ସେ ଅବସ୍ଥାରେ ହଠାତ୍ ବିଜ୍ଞାନ ଭବନର ସୁଖ ସୁବିଧାକୁ ଆଣି ବିଧାନ ସଭାରେ ଯୋଡ଼ି ଦେବାର କାରଣ ଆମେ ବୁଝି ପାରିଲୁ ନାହିଁ । କହିବାର ଉଦ୍ଦେଶ୍ୟ ହେଲା ଓଡ଼ିଶା ଗୋଟିଏ ଗରିବ ରାଜ୍ୟ । ସବୁଠାରୁ ଗରିବ ୭୦ ଭାଗ ଲୋକ ଦୁଇ ଓଳି ଖାଇବାକୁ ପାଆନ୍ତି ନାହିଁ । ଦାରିଦ୍ର୍ୟ, କ୍ଷୁଧା, ବେକାରୀ, ରୋଗ ଅତି ଉତ୍କଟ ସମସ୍ୟା ସୃଷ୍ଟି କରିଚି । ଶିକ୍ଷିତ ଓ ଉଚ୍ଚ ଶିକ୍ଷିତଙ୍କ ଭିତରେ ବେକାରୀ ବେଶି । କଳ କାରଖାନା ବନ୍ଦ, ଛଟେଇ ଉଗ୍ର ଆକାର ଧାରଣ କଲାଣି । ମହାବାତ୍ୟା ପରେ ମହାବନ୍ୟା ଆମକୁ ତଳି ତଳାନ୍ତ କରୁଥିବା ବେଳେ ଆମ ଲୋକପ୍ରତିନିଧିମାନେ କି ଭୂମିକା ବିଧାନସଭାରେ ଗ୍ରହଣ କରୁଛନ୍ତି ? ସେମାନଙ୍କୁ ମିଳୁଥିବା ୧୫ ଲକ୍ଷ ଏବେ ୨୫ ଲକ୍ଷ ହେଲାଣି । ବାତ୍ୟା ଓ ବନ୍ୟାରେ କିଏ କେତେ ଖର୍ଚ୍ଚ କରିଚି, ସେ କଥା ତ ବିଧାନସଭାରେ ଆଲୋଚନା ହୁଏ ନାହିଁ ।

(ସମାଜ : ୫.୮.୨୦୦୧)

# ରାଜା ଓ ଜମିଦାରଙ୍କ ଦେଶରେ

ଆମର ଏ ଦେଶଟା ରାଜା ଓ ଜମିଦାରଙ୍କ ଦେଶ । ପୁରାଣ ଯୁଗରୁ ଆଜିଯାଏ ଆମ ଦେଶକୁ ସେଇମାନେ ହିଁ ଶାସନ କରି ଆସୁଛନ୍ତି । କିଏ କହୁଛି ଆମ ଦେଶ ମୁନି, ଋଷି ଓ ସାଧୁ ସନ୍ଥଙ୍କ ଦେଶ ? ସେ ସବୁକୁ କେବଳ ଗୋଟାଏ ମିଥ୍ ଆକାରରେ ନିଆ ଯାଇ ପାରେ । ମନକୁ ଭୁଲେଇବା ପାଇଁ ଆମେ ସେମିତିକା କେତୋଟି କଥାର ଅବତାରଣା କରି ପାରୁଁ; କିନ୍ତୁ ସେ ସବୁ ସତ୍ୟଠାରୁ ଅନେକ ଦୂରରେ । ବାସ୍ତବତା ସହିତ ସେ ସବୁର କିଛି ସମ୍ପର୍କ ନ ଥାଏ । ଶହ ଶହ ବର୍ଷ ଧରି ଆମ ଦେଶରେ କେବଳ ଏଇ ରାଜା ମହାରାଜାମାନେ ହିଁ ରାଜତ୍ୱ କରି ଆସୁଛନ୍ତି । ଆଉ ଆମେ ବି ଏଇ ଭାରତୀୟ ସଂସ୍କୃତିରେ ସେଇ ରାଜା ମହାରାଜା ଓ ଜମିଦାରଙ୍କ ସହିତ ଏତେ ଅଭ୍ୟସ୍ତ ହୋଇ ଗଲୁଣି ଯେ ତାକୁ କେବେବି ଛାଡ଼ି ପାରୁନୁଁ । ସେ ମାନସିକତା ଆମର ବଦଳୁ ନାହିଁ ।

ଦେଶ ସ୍ୱାଧୀନ ହେଲା ପରେ ଗୋଟାଏ ବିରାଟ ପରିବର୍ତ୍ତନ ହେଲା । ସେତେବେଳେ ଯେଉଁ ପ୍ରଥମ ଓ ପ୍ରଧାନ କାମଟି ହେଲା ସେଇଟା ହେଲା ରାଜତନ୍ତ୍ର ଓ ଜମିଦାରୀ ପ୍ରଥାର ବିଲୋପ । ସେତେବେଳେ ଏ ଦୁଇଟି ପ୍ରଥାକୁ ମାନବ ସଭ୍ୟତାର କଳଙ୍କ ବୋଲି କୁହା ଯାଉଥିଲା । ଏ ସବୁକୁ ମଣିଷ ସମାଜର ଶତ୍ରୁ ବୋଲି କୁହା ଯାଉଥିଲା । ତେଣୁ ସ୍ୱାଧୀନତା ପରେ ଯେତେବେଳେ ଆମ ଦେଶରୁ ଏ ଦୁଇଟି ପ୍ରଥାକୁ ତଡ଼ିବା ପାଇଁ ସ୍ୱର ଉତ୍ତୋଳନ ହେଲା ସେତେବେଳେ ସମଗ୍ର ଦେଶରେ ଗୋଟାଏ ଅପୂର୍ବ ଆନନ୍ଦର ଲହରୀ ସୃଷ୍ଟି ହେଲା । ଗାଁ ଗଣ୍ଡାର ଲୋକମାନେ ଏଥିରେ ସାମିଲ ହୋଇଗଲେ । ସେମାନେ ସେତେବେଳର ନେତୃତ୍ୱ ଉପରେ ସେମାନଙ୍କ ଅନ୍ତରର ସମସ୍ତ ଆଶୀର୍ବାଦ ଅଜାଡି ପକାଇଲେ । ଗାଁ ଲୋକଟି ଯେତେବେଳେ ଜାଣିଲା ଯେ ରାଜାର ଜୁଲମ୍ ଆଉ ରହିବ ନାହିଁ, ତା' ଉପରେ କର ପାଇଁ ଆଉ ଅତ୍ୟାଚାର ହେବ ନାହିଁ କି ଜମିଦାରର ଗୁଣ୍ଡାମାନେ ଆସି ତା' ଜମିରୁ ଫସଲ ଲୁଟି ନେବେ ନାହିଁ କିମ୍ବା ତା'ର କୁଡ଼ିଆ ଘରକୁ ନିଆଁ ଲଗେଇ ଦେବେ ନାହିଁ ସେତେବେଳେ ସେ ଶାନ୍ତିରେ ନିଃଶ୍ୱାସଟିଏ ମାରିଲା । ଯାହା ସେ କିମ୍ବା ତା'ର ବାପ ଅଜା ସେମାନଙ୍କ ଜୀବନ କାଳରେ କେବେ ବି ଆଶା କରି ପାରି ନ ଥିଲେ । ସେ ତା' ଜୀବନରେ ପ୍ରଥମ କରି ନୂତନ ସ୍ୱାଦଟିଏ ପାଇଲା ।

ସେ ବୁଝିଲା ସ୍ୱାଧୀନତାର ମାନେ କ'ଣ । ସ୍ୱାଧୀନତାର ଅର୍ଥ, ସେ ଏଥର ଶାନ୍ତିରେ ଟିକିଏ ରାତିରେ ଶୋଇ ପାରିବ । ତା' ଜୀବନ ସାର୍ଥକ ହେଲା । ତା'ଠାରୁ ତା

ଜୀବନରେ ଅଧିକ କ'ଣ ସେ ଆଶା କରିଥିଲା ? କିନ୍ତୁ ଆମ ଦେଶର ରାଜନୀତି ସେ କଥା କରିବାକୁ ଦେଲା ନାହିଁ । ଆମ ଦେଶର ରାଜନୀତି ଏକ ଭିନ୍ନ ରାଜନୀତି । ସେଥିରେ 'ନୀତି' ନ ଥାଇ କେବଳ 'ରାଜ୍' ଟି ଥାଏ । ଏବେ 'ରାଜ୍' ଶବ୍ଦରେ କ'ଣ ଥାଏ ସେ କଥା ଆଉ ବୁଝାଇ କହିବା ଦରକାର ନାହିଁ । ସେ ଶବ୍ଦ ସ୍ୱୟଂସମ୍ପୂର୍ଣ୍ଣ । ଛୋଟିଆ ଶବ୍ଦଟିରେ ସମଗ୍ର ବିଶ୍ୱର ଯୁଗ ଯୁଗର ଅତ୍ୟାଚାରର ଇତିହାସ ଭରି ହୋଇ ରହି ଥାଏ । ତାକୁ ସାରି ହୁଏ ନାହିଁ କି ମାରି ହୁଏ ନାହିଁ ।

ସ୍ୱାଧୀନତା ପରେ ଆମ ଦେଶର ନେତୃତ୍ୱର ରକ୍ତ କଣିକାରେ ଲୁଚି ଲୁଚି ସେଇ 'ରାଜ୍'ର ସୂକ୍ଷ୍ମାତିସୂକ୍ଷ୍ମ ସେଲ୍ ଗୁଡ଼ିକ କୋଉଠି କେମିତି ରହିଥିଲା କି କ'ଣ, ସେମାନେ ପୁଣି ଥରେ ଆଶ୍ଚର୍ଯ୍ୟଜନକ ଭାବେ ଏବଂ ଅକସ୍ମାତ ସଜୀବ ହୋଇ ଉଠିଲେ ଏବଂ ସମଗ୍ର ଶରୀରକୁ କବଳିତ କରି ପକାଇଲେ । ସେମାନେ ଘୋଷଣା କରି ଦେଲେ ଯେ ଆମେ ମରି ନାହୁଁ । ଆମେ ମରିବୁ ନାହିଁ । ଆମକୁ କିଏ ମାରି ପାରିବ ? ଆମେ ଅମର-ଯୁଗେ ଯୁଗେ । ଆମେ ଇତିହାସ ଲେଖିଛୁଁ ଏବଂ ଯୁଗେ ଯୁଗେ ଇତିହାସ ତିଆରି କରିବୁଁ ମଧ୍ୟ । ଆମକୁ ଏଥିରୁ କେହି ନିବୃତ୍ତ କରାଇ ପାରିବେ ନାହିଁ । ଆମର ଗତି ଯୁଗେ ଯୁଗେ ଯେମିତି ଥିଲା ସେମିତି ରହିବ । ତାକୁ କେହି ବଦଳେଇ ପାରିବେ ନାହିଁ ।

ସେମାନେ ଆସି ଆମ ଆଗରେ ଠିଆ ହେଲେ । ଖାଲି ନାଁଟା ବଦଳି ଯାଇଚି । 'ଲୋକ ପ୍ରତିନିଧି' ହେଇ ଯାଇଛି । ବାକି ସବୁ ଠିକ୍ ଅଛି । ପୂରାପୂରି ମିଶି ଯାଉଚି ସେମାନଙ୍କ ପୂର୍ବ ଚେହେରା ସହିତ, ମିଶି ବି ଯାଉଚି ସେମାନଙ୍କ ଚିତ୍ର ଓ ଚରିତ୍ର । ଯେଉଁମାନେ ସ୍ୱାଧୀନତା ପୂର୍ବ ଓ ପରର ଭାରତ ବର୍ଷକୁ ଦେଖିଛନ୍ତି ସେମାନେ ଏ ଦୁଇଟି ମଣିଷକୁ ଦେଖିଥିବେ । ଦେଖିଥିବେ ମଧ୍ୟ ସେମାନଙ୍କ ସ୍ୱଭାବ ଚରିତ୍ରକୁ । ଦୁଇଟାକୁ ତଉଲୁ ଥିବେ । କି ପାର୍ଥକ୍ୟ ଅଛି ?

ଏବେ ଆଉ ଟିକିଏ ଫିଟେଇ କହିବା । ଭାରତରେ ଏଇ ସୃଷ୍ଟି ହେଇଥିବା ଲୋକପ୍ରତିନିଧି ବେଶର ନୂଆ ରାଜା ଓ ଜମିଦାରମାନଙ୍କ ଦରମା ଓ ଭତ୍ତାକୁ ଏବେ ତିନିଗୁଣ ବଢେଇ ଦିଆ ଯାଇଚି । ଯେଉଁ ମୂଳ ଦରମା ଚାରି ହଜାର ଥିଲା ତାକୁ ୧୨ ହଜାର କରି ଦିଆ ଯାଇଚି । ସେଇ ଅନୁସାରେ ଭତ୍ତା ମଧ୍ୟ ବଢ଼ିଚି । ସେମାନଙ୍କର ସବୁ ଭତ୍ତା ଆୟକର ରହିତ । ସେମାନେ ଯେତେସବୁ ଭତ୍ତା ଓ ଆନୁଷଙ୍ଗିକ ସୁଖ ସୁବିଧା ପାଉଚନ୍ତି ତାହା ଇଂରେଜ ଅମଳରେ ରାଜାମାନେ ମଧ୍ୟ ଉପଭୋଗ କରୁ ନ ଥିଲେ । ସେମାନଙ୍କ ଜଳ ଓ ବିଜୁଳି ଖର୍ଚ୍ଚ ମଧ୍ୟ ବଢ଼ିଚି । ଦୁଇ ଗୁଣ ହେଇଗଲା । ଅବଶ୍ୟ ଏ ସବୁ ମାଗଣା । ସେମାନଙ୍କୁ ଅନେକ ଜିନିଷ ମାଗଣାରେ ମିଳେ । ତିନିଟା ଟେଲିଫୋନ, କେତେକ କ୍ଷେତ୍ରରେ ଚାରିଟା ଏବଂ ଗୋଟାଏ ମୋବାଇଲ ଫୋନ ମାଗଣା । ପ୍ରତ୍ୟେକ ଫୋନରେ ଏକ ଲକ୍ଷ ଫ୍ରି କଲ । ପ୍ରତ୍ୟେକଙ୍କୁ ମାଗଣାରେ ପିସି, ଇଣ୍ଟରନେଟ୍,

ଇ-ମେଲ,ଫାକ୍ସ । କାର୍ଯ୍ୟକାଳ ପୂରିଲେ ସେମାନେ ଯେ ସେ ସବୁ ଫେରେଇବେ ତାର କିଛି ମାନେ ନାହିଁ । 'ହଜିଚି' କହିଲେ ଯଥେଷ୍ଟ । ଏକ ଲକ୍ଷ ଟଙ୍କାର (ଏବେ ପାଞ୍ଚଲକ୍ଷ ପାଇଁ ଦାବି ହେଉଚି) କାର ଲୋନ । ଅବଶ୍ୟ ସେ ଟଙ୍କା ମଧ୍ୟ ଅଧିକାଂଶ ସମୟରେ ଫେରସ୍ତ ମିଳେନା । ଏବେ ସେମାନେ ଶୀତତାପ ନିୟନ୍ତ୍ରିତ ଟାଟା ସୁମୋ ମାଗିଚନ୍ତି । ଗରମରେ ନିର୍ବାଚନ ମଣ୍ଡଳୀର ଗସ୍ତ ପାଇଁ । ବର୍ଷକୁ ୩୨ ଥର ଭାରତର ଯେ କୌଣସି ସ୍ଥାନକୁ ମାଗଣାରେ ବିମାନ ଯାତ୍ରା । ସାଥିରେ ସ୍ତ୍ରୀ କିମ୍ବା ତାଙ୍କ ବଦଳରେ ଯେ କେହି ଯାଇ ପାରିବେ(ଟ୍ରେନରେ) । ସ୍ତ୍ରୀ ସ୍ୱତନ୍ତ୍ର ଭାବରେ ଗଲେ ତା'ର ଅଲଗା ବ୍ୟବସ୍ଥା ଅଛି । ଗ୍ୟାସ୍ ଓ ଟେଲିଫୋନ୍ ସଂଯୋଗ ପାଇଁ ସ୍ୱତନ୍ତ୍ର କ୍ଷମତା । ଏଥିପାଇଁ ବହୁ ସାଂସଦ କୁଆଡ଼େ ସଂଯୋଗ ବିକ୍ରୀ କରିଥିଲେ ବୋଲି ସି.ବି.ଆଇ. କେସ କରିଚି । ସେଥିରେ ଓଡ଼ିଶାର ମଧ୍ୟ କିଛି ଅଛନ୍ତି । ଗୁଜରାଲଙ୍କ ସମୟରେ ଏହି ସ୍ୱତନ୍ତ୍ର କ୍ଷମତା ପ୍ରତ୍ୟାହାର କରା ଯାଇଥିଲା; କିନ୍ତୁ ବାଜପେୟୀ ସେ କ୍ଷମତା ପୁଣି ତାଙ୍କୁ ଫେରେଇ ଦେଲେ । ସାଂସଦମାନଙ୍କର ଗସ୍ତ ଖର୍ଚ୍ଚରେ ସୀମା ନ ଥାଏ କି ମେଡ଼ିକାଲ ଖର୍ଚ୍ଚରେ ସୀମା ନ ଥାଏ । ସେମାନେ ଚାହିଁରେ ବିଦେଶକୁ ମଧ୍ୟ ଯାଇ ପାରିବେ । ଦେଶ ଭିତରେ ଯେ କୌଣସି ସାଧାରଣ ରୋଗ ପାଇଁ ଏବଂ ସେ ଚିକିତ୍ସାର ସୁଯୋଗ ସରକାରୀ ହସପିଟାଲରେ ଥିଲେ ମଧ୍ୟ ସେମାନେ ଚାହିଁଲେ ଯେ କୌଣସି ପ୍ରାଇଭେଟ ହସପିଟାଲକୁ ଯାଇ ପାରିବେ । ସେମାନଙ୍କ ପେନସନ ସୁବିଧା ମଧ୍ୟ ବେଶ ଆକର୍ଷଣୀୟ । ଏବେ ଦାବି ହେଉଛି ମାତ୍ର ଗୋଟିଏ ଦିନ ସଂସଦରେ ସଭ୍ୟ ଥିଲେ ମଧ୍ୟ ଯଦି ପାର୍ଲାମେଣ୍ଟ ଭାଙ୍ଗିଯାଏ ତେବେ ତାଙ୍କୁ ପୂରା ପେନସନ ମିଳୁ । ହୁଏତ ତା ମଧ୍ୟ ହୋଇଯିବ । ସାଂସଦମାନଙ୍କୁ ଭାରତର ଯେକୌଣସି ସ୍ଥାନରେ ହାଉସିଂ ବୋର୍ଡର ଘର ମିଳି ପାରିବ । ପ୍ଲଟ ମଧ୍ୟ ମିଳିବ । ସ୍ୱାମୀ ସ୍ତ୍ରୀ ଓ ବାପ ପୁଅ ପରିବାରର ସମସ୍ତେ ଯଦି ସାଂସଦ ଥାଆନ୍ତି ତେବେ କ'ଣ ହୋଇଥିବ କେଜାଣି । ସୁବିଧା ସୁଯୋଗ ଅନେକ ଅଛି । ଯାହା ଆଇନରେ ଅଛି ସେ ସବୁତ ମିଳୁଛି । ଯାହା ଆଇନରେ ନାହିଁ ସେ ସବୁ ମଧ୍ୟ ମିଳୁଛି । ସମଗ୍ର ଦେଶ ତାଙ୍କର, ଖଜଣାଖାନା ମଧ୍ୟ ତାଙ୍କର । ତାଙ୍କୁ କିଏ ମନା କରିବ ? ଦୁଇ କୋଟି ଏରିଆ ଡେଭଲପ ଫଣ୍ଡ । ଏହାର ସଂଜ୍ଞା ଓ ଖର୍ଚ୍ଚର ନିୟମ ସ୍ଥିରୀକୃତ ହୋଇନାହିଁ ବୋଲି ସିଏଜି ରିପୋର୍ଟରେ ଉଲ୍ଲେଖ ଅଛି ।

କିଏ ପଚାରୁଚି ଆଇନକୁ ? ଆଇନ ଗୋଟିଏ ପଟେ ଓ ପ୍ରତିନିଧିମାନେ ଗୋଟିଏ ପଟେ । ଖର୍ଚ୍ଚର ନିୟମ ଯଦି ବନ୍ଧା ହେଇ ଯାଏ ତେବେ ସେ ଟଙ୍କା ସରକାର ଖର୍ଚ୍ଚ କରନ୍ତୁ । ଏବେ ତ କୁହା ଯାଇଚି ସାଂସଦମାନେ ଚାହିଁଲେ ପାଣ୍ଠିର ଦଶ ପରସେଣ୍ଟ ନିଜ ରାଜ୍ୟ ବାହାରେ ମଧ୍ୟ ଖର୍ଚ୍ଚ କରି ପାରିବେ । ଗୁଜୁରାଟ ଭୂମିକମ୍ପ ବେଳେ ଏ ନିୟମ ହେଲା । ଏବେ ଓଡ଼ିଶାର ବିଧାୟକମାନଙ୍କର ପାଣ୍ଠି ମଧ୍ୟ ମାତ୍ର ଦେଢ଼ ବର୍ଷ ଭିତରେ ୨୫ ରୁ ୪୦ ଲକ୍ଷକୁ ବଢ଼ିଗଲା । ତେବେ ସେ ସାଂସଦ ହୁଅନ୍ତୁ କି ବିଧାୟକ ହୁଅନ୍ତୁ

ମହାବାତ୍ୟା, ମରୁଡ଼ି ଓ ମହାବନ୍ୟା ବେଳେ ସେମାନେ ଆରତଙ୍କ ମୁହଁକୁ ଅନାନ୍ତି ନାହିଁ । କିଏ କେତେ ଦେଇଚନ୍ତି ସେ କଥା କିଏ ନ ଜାଣେ ? ତେବେ ସେ ଫଣ୍ଡ କାହାର ଡେଭଲପମେଣ୍ଟ ପାଇଁ ?

ମାତ୍ର ଦୁଇବର୍ଷ ତଳେ ସାଂସଦମାନଙ୍କର ଦରମା ବଢ଼ିଥିଲା । ପୃଥବୀର କୋଉ ଦେଶରେ ଲୋକ ପ୍ରତିନିଧିମାନଙ୍କର ଦରମା ଦୁଇ ବର୍ଷର ଥରେ ବଢ଼େ ? ରାଜତନ୍ତ୍ରରେ ମଧ୍ୟ ଏପରି ହୁଏ ନାହିଁ । ଏ ବଢ଼ିବା ପଛରେ କି ଯୁକ୍ତି ଅଛି ? ଦରମା ବୃଦ୍ଧି ବିଷୟରେ ସଂସଦରେ ଆଲୋଚନା ବେଳେ ବାମପନ୍ଥୀ ସଦସ୍ୟମାନେ କହିଥିଲେ ଯେ ସାଂସଦମାନେ ସେମାନଙ୍କ ନିଜ ଦରମା ସ୍ଥିର କରୁ ଥିବାରୁ ଜନସାଧାରଣ ତାଙ୍କୁ ସମାଲୋଚନା କରୁଛନ୍ତି । ସେତେବେଳେ ସରକାରଙ୍କ ତରଫରୁ କୁହାଗଲା ଯେ ''ତାହା ହିଁ ସାମ୍ବିଧାନିକ ବିଧି'' । ଏ ଉତ୍ତରରେ ସଦସ୍ୟମାନେ ହୁଏତ ସନ୍ତୁଷ୍ଟ ହୋଇ ଯାଇ ପାରନ୍ତି; କିନ୍ତୁ ଜନ ସାଧାରଣ ସନ୍ତୁଷ୍ଟ ହେବାର କାରଣ ନାହିଁ । ସମ୍ବିଧାନ ଏ କଥାତ କହିନାହିଁ, ସାଂସଦଙ୍କ ଦରମା ଦୁଇ ବର୍ଷରେ ଥରେ ବଢ଼ିବ । ହଜାର ହଜାର ଟଙ୍କାର କର ରହିତ ଭତ୍ତା ଦିଆଯିବ, ଯାହା ଅନ୍ୟ ଅର୍ଥରେ ଆଇନକୁ ଠକିବ ।

ସମ୍ବିଧାନ ଏ କଥା ମଧ୍ୟ କହିନାହିଁ ଯେ ଦେଶର କୋଟି କୋଟି ଲୋକ ଭୋକ ଉପାସରେ ପଡୁଥିବା ବେଳେ ଏବଂ ବିଶେଷ କରି ଦେଶର ଆର୍ଥିକ ଅବସ୍ଥା ରସାତଳକୁ ଯାଉଥିଲା ବେଳେ ସାଂସଦମାନେ ଲକ୍ଷ ଲକ୍ଷ ଟଙ୍କା ଗରିବଙ୍କ ଖଜଣା ଖାନାରୁ ବୋହି ନେଇ ଯିବେ । ଦେଶର ନବେ ଭାଗ ଲୋକ ଦୁଃଖରେ କଲାଟିପାତ କରୁଥିଲା ବେଳେ ସାଂସଦମାନେ ଘିଅ ମହୁରେ ଭାସୁ ଥିବେ । କୋଉ ଦେଶରେ ଅଛି ସର୍ବନିମ୍ନ ମଜୁରି ଓ ସର୍ବୋଚ୍ଚ ମଜୁରି ଭିତରେ ଆକାଶ ପାତାଳ ଫରକ ରହିବ ? ଏହା କ'ଣ ଗଣତନ୍ତ୍ରର ନିୟମ ? ଅଛି ଏ କଥା ଆମ ସମ୍ବିଧାନରେ ?

ଆମର ଲୋକପ୍ରତିନିଧିମାନେ ଏ କଥାଟା ଉପରେ ଜାଣିଶୁଣି ନଜର ଦେଇ ନାହାନ୍ତି । ସବୁବେଳେ ଆଇନକୁ/ସମ୍ବିଧାନକୁ ସେମାନେ ନିଜ ସୁବିଧା ପାଇଁ ବ୍ୟବହାର କରନ୍ତି । ଏହା ହିଁ ଏକମାତ୍ର କାରଣ ଯୋଉଥି ପାଇଁ ଆଜି ଦେଶରେ ଧନୀ ଅଧିକ ଧନୀ ହୋଇଛି ଏବଂ ଗରିବ ଅଧିକ ଗରିବ ହୋଇଛି । ସେମାନଙ୍କ ଭିତରେ ପାର୍ଥକ୍ୟର ହିମାଳୟଟିଏ ଛିଡ଼ା ହେଇ ପାରିଛି; କିନ୍ତୁ କେତେଦିନ ଏହାକୁ ସହ୍ୟ କରି ହେବ ? ସୀମା ଟପିଲେ ?

ବେଳ ଆସିଲାଣି । ଆସ୍ତେ ଆସ୍ତେ ସମ୍ବିଧାନ ଉପରୁ ଲୋକଙ୍କର ଆସ୍ଥା କମି ଆସିଲାଣି । ସେମାନଙ୍କ ଧୈର୍ଯ୍ୟ ତୁଟିଲାଣି ।

(ସମାଜ : ୫.୯.୨୦୦୧)

# ଦୁର୍ନୀତି ବିରୋଧରେ ଅଭିଯାନ ଏକ ପ୍ରହସନ

ଏବେ ଏବେ ସମଗ୍ର ଦେଶରେ 'ଦୁର୍ନୀତି ନିବାରଣ ସପ୍ତାହ' ପାଳିତ ହୋଇ ଗଲା । ସରକାରଙ୍କ ବିଭିନ୍ନ ଅଫିସରେ ବିଶେଷ କରି ପବ୍ଲିକ ସେକ୍ଟରମାନଙ୍କରେ ଏ ସପ୍ତାହ ଏକ ପର୍ବ ରୂପେ ବଡ଼ ଧୂମ ଧାମରେ ପାଳିତ ହୋଇ ଗଲା । ଏଇ ମାତ୍ର ଗତବର୍ଷ ଠାରୁ ସର୍ଦ୍ଦାର ପଟେଲଙ୍କ ଜନ୍ମ ଦିବସକୁ(ନଭେମ୍ବର ୩୧) ଦୁର୍ନୀତି ନିବାରଣ ସପ୍ତାହ ରୂପେ ପାଳନ କରା ଯାଉଛି । ଏହି ସପ୍ତାହ ପାଳନର ଉଦ୍ଦେଶ୍ୟ ହେଲା ଲୋକଙ୍କ ଭିତରେ ଦୁର୍ନୀତି ବିରୋଧରେ ସଚେତନତା ସୃଷ୍ଟି କରିବା । ହୁଏତ ସରକାର ଭାବୁଥିବେ ଯେ ଦୁର୍ନୀତିଟା କଅଣ ସେ କଥା ଲୋକେ ଜାଣି ନାହାନ୍ତି ଏବଂ କଅଣ କଲେ ଲୋକେ ଦୁର୍ନୀତି ଠାରୁ ଦୂରରେ ରହିବେ । ସଭା ସମିତି କରି, ସ୍ଲୋଗାନ ଦେଇ ଲୋକଙ୍କୁ ବୁଝେଇବା ଏ ସପ୍ତାହ ପାଳନର ଉଦ୍ଦେଶ୍ୟ । କେତେକ ଜାଗାରେ ଯୁବକ ଓ କର୍ମଚାରୀମାନଙ୍କୁ ଦୁର୍ନୀତି ବିରୋଧରେ ଶପଥ ପାଠ ମଧ୍ୟ କରା ଯାଇଛି ।

ଏହି ପ୍ରସଙ୍ଗରେ ଆମର ୧୯୭୫ର ଜରୁରୀକାଳୀନ ପରିସ୍ଥିତି କଥା ମନେ ପଡୁଛି । ସେତେବେଳେ ପ୍ରଧାନ ଦୁଇଟି ବିଷୟକୁ ଉତ୍କଟ ସାମାଜିକ ବ୍ୟାଧି ବୋଲି କହି ତା ବିରୋଧରେ ଯୁଦ୍ଧ ଘୋଷଣା କରା ଯାଇ ଥିଲା । ସେ ଦୁଇଟି ହେଲା ଦୁର୍ନୀତି ଓ ଯୌତୁକ । ସରକାରଙ୍କ ନିର୍ଦ୍ଦେଶ କ୍ରମେ ପ୍ରତିଦିନ ସଭା ସମିତିମାନ କରି ଏ ଦୁଇଟି ବ୍ୟାଧି ବିରୋଧରେ ସଚେତନତା ସୃଷ୍ଟି କରା ଯାଉଥିଲା । ସେତେବେଳେ ଏଥିରେ ବେଶି ଭାଗରେ ଯୁବକ ଓ ଯୁବତୀମାନଙ୍କୁ ସାମିଲ କରା ଯାଉ ଥିଲା । ନେତା ଓ ଅଫିସରମାନେ ତା'ର ନେତୃତ୍ୱ ନେଉ ଥିଲେ । ବହୁ ସଂଖ୍ୟାରେ ସଭାରେ ଶପଥ ପାଠ ହେଉ ଥିଲା ଏବଂ ସଭାର ବିଶଦ ବିବରଣୀ ସମ୍ବାଦପତ୍ରରେ ପ୍ରକାଶ କରା ଯାଉ ଥିଲା । ଏଥିପାଇଁ ବେଳେବେଳେ ନେତା ଓ ଅଫିସରମାନେ ପ୍ରତିଯୋଗିତା ମଧ୍ୟ କରୁ ଥିଲେ । ସଭା ସମିତିମାନଙ୍କରେ ଏସବୁ ଗଠନମୂଳକ କାମ 'ପ୍ରଧାନମନ୍ତ୍ରୀ ଇନ୍ଦିରାଙ୍କ ନେତୃତ୍ୱରେ ହେଉଛି' ବୋଲି କହିବା ଏକ ପ୍ରକାର ବାଧ୍ୟତାମୂଳକ ଥିଲା । ସମସ୍ତଙ୍କର ସ୍ମରଣ ଥିବ ଯେ, ଏ ସବୁ କାମ ସେତେବେଳେ ସରକାରଙ୍କ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅନୁସାରେ ହେଉ ଥିଲା ଏବଂ ଏ ସମ୍ପର୍କରେ ମାସିକ ରିପୋର୍ଟ ସରକାରକୁ ଦିଆ ଯାଉ ଥିଲା ।

ସେତେବେଳେ ଯେଉଁମାନେ ବିରୋଧୀଦଳରେ ଥିଲେ ସେମାନେ ଏ କଥାକୁ ନିଛକ 'ବ୍ୟକ୍ତି ପୂଜା ଓ ତୋଷାମଦ' ବୋଲି କହୁ ଥିଲେ ମଧ୍ୟ ଖୋଲାଖୋଲି ଭାବରେ ସରକାରଙ୍କୁ ସମାଲୋଚନା କରିପାରୁ ନ ଥିଲେ । ଅବଶ୍ୟ ସେତେବେଳେ ଦେଶର ଅଧିକାଂଶ ନେତାଙ୍କୁ ଜେଲରେ ରଖା ସରି ଥିଲା ।

ଏବେ ସୌଭାଗ୍ୟ କ୍ରମେ ସେଇ ନେତାମାନେ ଶାସନରେ ଅଛନ୍ତି । ଯେଉଁମାନେ ଶାସନରେ ଥାଆନ୍ତି ସେମାନଙ୍କର ବଞ୍ଚିବାର ମୋହ ଅତି ପ୍ରବଳ । କାରଣ ଆମ ଗଣତନ୍ତ୍ରରେ ଶାସନରେ ଖାଲି ନୁହେଁ, ଶାସନର ଛାୟାରେ ବଢୁଥିବା ଲୋକଙ୍କୁ ଯେତେ ସୁଖ ସୁବିଧା ମିଳେ ତାହା ଆଉ କାହାକୁ ମିଳେ ନାହିଁ । ତେଣୁ ତାକୁ ଛାଡିବାକୁ କିଏ ଚାହିଁବ ? ଏହା ହିଁ ଗୋଟାଏ କାରଣ ଯାହା ପାଇଁ ଦୁର୍ନୀତି ନିବାରଣର ମୁଖାଟିକୁ ସବୁବେଳେ ଶାସକଗୋଷ୍ଠୀ ପାଖରେ ରଖି ଥାଆନ୍ତି । ଶାସନ କରିବାକୁ ହେଲେ ସେଇଟା ଯେ ନିହାତି ଆବଶ୍ୟକ ଏ କଥା ସେମାନେ ବେଶ ବୁଝନ୍ତି । ପ୍ରକୃତ ଅବସ୍ଥା ଆଡ଼କୁ ସେମାନେ ମୋଟେ ଧ୍ୟାନ ଦେଇ ନାହାନ୍ତି । କାରଣ ସେମାନେ ଜାଣନ୍ତି ସେ ଆଡ଼କୁ ନଜର ଦେଲେ ଆସନ ଟଳମଳ ହୋଇଯିବ । ଶାସନ ଅପେକ୍ଷା ଦୁର୍ନୀତିର କ୍ଷମତା କେତେ ସେ କଥା ସେମାନେ ଭଲ ଭାବରେ ବୁଝନ୍ତି । ଲୋକେ ମଧ୍ୟ ଏ କଥା ବୁଝିଲେଣି ଯେ ସରକାରରେ ଯେଉଁମାନେ ଥାଆନ୍ତି ସେମାନେ ଏମିତି କହନ୍ତି । ଏଥିରେ କିଛି ନୂଆ କଥା ନାହିଁ ।

କିନ୍ତୁ ଏଥର ନୂଆ କଥାଟିଏ ହେଲା । ଯେତେବେଳେ ସାରା ଦେଶରେ ଦୁର୍ନୀତି ନିବାରଣ ସପ୍ତାହ ପାଳିତ ହେଉଛି, ଗଣମାଧ୍ୟମରେ ନେତାମାନଙ୍କର ଦୁର୍ନୀତି ବିରୋଧୀ ଭାଷଣ ଲଗାତାର ଚାଲିଚି ଠିକ୍ ସେତିକିବେଳେ ଅନ୍ୟ ଦିଗରେ ପ୍ରଧାନମନ୍ତ୍ରୀ ଅତି ଜଘନ୍ୟ ଦୁର୍ନୀତିର ଅଭିଯୋଗରେ ବିତାଡ଼ିତ ହୋଇଥିବା ଦେଶରକ୍ଷା ମନ୍ତ୍ରୀ ଜର୍ଜ ଫର୍ଣ୍ଣାଡିସ୍‌ଙ୍କୁ ପୁଣି ଥରେ ଫୁଲ ମାଳ ପକେଇ ନିମନ୍ତ୍ରଣ କରି ଆଣିଲେ ଏବଂ ସେ ଅଭିଯୋଗରୁ ମୁକ୍ତ ହେବା ପୂର୍ବରୁ ପୁଣି ଥରେ ତାଙ୍କୁ ପୂର୍ବସ୍ଥାନରେ ଅଭିଷିକ୍ତ କରି ପକାଇଲେ । ସମଗ୍ର ଦେଶରେ ଏଥିପାଇଁ ଚହଳ ସୃଷ୍ଟି ହେଲା । ସମସ୍ତଙ୍କର ଗୋଟିଏ ପ୍ରଶ୍ନ, ତେହେଲ୍‌କା ପରି ଦୁର୍ନୀତିର ଏକ କଳଙ୍କମୟ ଅଧ୍ୟାୟ ସୃଷ୍ଟି କରିଥିବା ଅଭିଯୋଗରେ ଯଦି ଜର୍ଜଙ୍କୁ ବାହାର କରି ଦିଆ ଯାଇ ଥିଲା ତେବେ ତଦନ୍ତ କମିଶନ ତା'ର ରିପୋର୍ଟ ଦେବା ପୂର୍ବରୁ ତାଙ୍କୁ ପୁଣି ଥରେ କେମିତି ଫେରାଇ ଅଣାଗଲା ? ଜର୍ଜ ନ ହେଲେ କଅଣ ମନ୍ତ୍ରୀମଣ୍ଡଳ ଓଲଟି ପଡ଼ିବ ନା ଜର୍ଜଙ୍କ ଦଳରେ ଆଉ କେହି ମନ୍ତ୍ରୀ ହେବାକୁ ଯୋଗ୍ୟ ବ୍ୟକ୍ତି ନାହାନ୍ତି ? ଲୋକେ ଏ କଥା ମଧ୍ୟ କହୁଚନ୍ତି, ଯଦି ସେଇ ଅଭିଯୋଗରେ ଭାଜାପାର ସଭାପତି ଓ ଜୟା ଜେଟଲୀଙ୍କ ଠାରୁ ଆରମ୍ଭ କରି ଦେଶରକ୍ଷା ବିଭାଗର ବହୁ ତୁଙ୍ଗ ଅଫିସରଯାଏ ସମସ୍ତେ ଟଳି ପଡ଼ିଲେ ଏବଂ ସେମାନଙ୍କୁ ନିଜ ନିଜ ଜାଗାକୁ ଏଯାଏ ଫେରେଇ ଅଣା ଯାଇ ନାହିଁ ସେତେବେଳେ କେଉଁ ନୀତି ଦୃଷ୍ଟିରୁ ଜର୍ଜଙ୍କୁ ସେଇ ଜାଗାକୁ ଅଣା ଗଲା ? ସେ ଦୁର୍ନୀତି ମୁକ୍ତ କି ?

ଏ କଥା ସମସ୍ତେ ଜାଣନ୍ତି ତେହେଲ୍‌କାର ଉନ୍ମୋଚିତ ଦୁର୍ନୀତି ଭାରତର ଅନ୍ୟାନ୍ୟ ସବୁ ସରକାରୀ କଳର ଦୁର୍ନୀତିକୁ ଟପି ଯାଇଛି । କେହି କେହି କହୁଛନ୍ତି ଯଦି ସଠିକ ଭାବରେ ତଦନ୍ତ ହୁଏ ତେବେ ତାହା ଜୟଲଳିତା ଓ ଲାଲୁ ଯାଦବଙ୍କ ଦୁର୍ନୀତିକୁ ମଧ୍ୟ ବଳି

ପଡ଼ିବ । ତେବେ ଏ କଥା କେତେଦୂର ସତ୍ୟ ତାହା ତଦନ୍ତ ସରିବା ପୂର୍ବରୁ କହିବା ସମ୍ଭବ ନୁହେଁ । ଆମର ଦୁର୍ଭାଗ୍ୟକୁ ରାଜନେତାମାନଙ୍କର ଦୁର୍ନୀତିର ତଦନ୍ତ କେବେ ବି ସରେ ନାହିଁ ।

ତେହେଲ୍କା ଘଟଣାରେ ପ୍ରଧାନମନ୍ତ୍ରୀ ବିବ୍ରତ ହୋଇ ଜର୍ଜ ଓ ବଙ୍ଗାରୁ ଲକ୍ଷ୍ମଣଙ୍କୁ ସିନା ବିଦାୟ କରି ଦେଲେ କିନ୍ତୁ ତା'ପରେ ଦେଖିଲେ ଯେ ସେ ଦୁଇ ଜଣଙ୍କୁ ସନ୍ତୁଷ୍ଟ ନ ରଖିଲେ ଏବଂ ଭିନ୍ନ ଅର୍ଥରେ ସେମାନଙ୍କ ଦୁର୍ନୀତିକୁ ସୁରକ୍ଷା ନ ଦେଲେ ତାଙ୍କ ନିଜ ଭାବମୂର୍ତ୍ତିରେ ଆଞ୍ଚ ଆସିବା ସହିତ ତାଙ୍କ ଆସନ ମଧ ଟଳମଳ ହେବ । ମଇଳାକୁ ଦେଖିବା ମାତ୍ରେ ଲୁଚେଇ ପକେଇବା ଉଚିତ । ତା'ଛଡ଼ା ସେ ତ ନିଜେ ଇଚ୍ଛା କରି ପ୍ରଧାନମନ୍ତ୍ରୀ ହେଇ ନାହାନ୍ତି । ଦଳ ତାଙ୍କୁ ନିର୍ବାଚିତ କରିଛି । ଗୋଟିଏ ଦଳର ନେତା ଯାହା, ଅନେକଗୁଡ଼ିଏ ଦଳର ନେତା ଠିକ୍ ସେଇ କଥା ନୁହେଁ । ଗୋଟିଏ ଦଳର ନେତା ହିସାବରେ ତାଙ୍କୁ ତ୍ୟାଗ ସ୍ୱୀକାର କରିବାକୁ ପଡୁ ଥିବା ବେଳେ ଅନେକ ଦଳର ନେତା ହିସାବରେ ତାଙ୍କୁ ସମସ୍ତଙ୍କୁ ସନ୍ତୁଷ୍ଟ କରିବା ପାଇଁ ଅନେକ ନୀତି ସହିତ ସାଲିସ କରିବାକୁ ପଡ଼ିବ । ଭାରତୀୟ ଗଣତନ୍ତ୍ରର ତାହା ହିଁ ନୀତି । ନୀତି ଓ ଦୁର୍ନୀତି ଭିତରେ ଥିବା ସୀମାରେଖାକୁ ସ୍ଥଳ ବିଶେଷରେ ଏପାଖ ସେପାଖ କରି ପାରିବାର କ୍ଷମତା ଥିବା ଦରକାର ।

ଜର୍ଜ ଓ ବଙ୍ଗାରୁଙ୍କ ପାଇଁ ଯୋଉ ନୀତି, ଜୟଲଳିତା ଏବଂ ଲାଲୁ ଯାଦବଙ୍କ ପାଇଁ ସେଇ ନୀତି ହେବା ସମ୍ଭବ ନୁହେଁ । ସେ ନୀତିର ସଙ୍କୋଚନ ଓ ପ୍ରସାରଣ କ୍ଷମତା ଏକ ସ୍ୱତନ୍ତ୍ର କଳା । ଏଇ ଦୃଷ୍ଟିରୁ ଯୋଉ ପ୍ରଧାନମନ୍ତ୍ରୀ ଗୁରୁତର ଦୁର୍ନୀତି ଅଭିଯୋଗରେ ଜର୍ଜଙ୍କୁ ବାହାର କରି ଦେଇ ଥିଲେ ସେ ପୁଣି ତାଙ୍କୁ ସସମ୍ମାନେ ଭିତରକୁ ଆଣିବାକୁ ବାଧ ହେଲେ ଏବଂ ଯେଉଁ ବଙ୍ଗାରୁ ଲକ୍ଷ୍ମଣଙ୍କୁ ବାହାରି ଯିବାକୁ କହିଥିଲେ ତାଙ୍କୁ ପୁଣି ବୁଲାଣି ବାଟରେ ଆହୁରି ଉଚ୍ଚ ପଦ ଦେଇ ଦେଲେ । ପାଠକମାନଙ୍କର ମନେଥିବ ଏମିତି ନରସିଂହ ରାଓଙ୍କ ସମୟରେ ମଧ ହେଇଥିଲା । ଶୀଲା କାଉଲଙ୍କ ବିରୋଧରେ ସିବିଆଇ ଯେତେବେଳେ ବହୁ ଦୁର୍ନୀତିର ଅଭିଯୋଗ ଆଣିଲେ ସେତେବେଳେ ରାଓ ତାଙ୍କୁ ନ୍ୟାୟାଳୟର ଉର୍ଦ୍ଧ୍ୱରେ ରଖିବା ପାଇଁ ରାଜ୍ୟପାଳ କରି ଦେଇ ଥିଲେ । ଆମ ରାଜନୀତିରେ ଏ ସବୁ ଅତି ସାଧାରଣ କଥା । ଯେତେବେଳେ ଏବର ଚିଫ ଭିଜିଲାନ୍ସ କମିଶନର ବିଟ୍ଟଲ ସାହେବ କ୍ଷମତାକୁ ଆସୁ ଆସୁ କହିଲେ ଯେ ହାୱାଲା କେସ୍‌ଗୁଡ଼ିକ ପୁଣି ଥରେ ଖୋଲାଯିବ, ସେତେବେଳେ ଭାଜପାର ନେତାମାନେ ଖଡ଼୍ଗ ଧରି ଠିଆ ହୋଇଗଲେ । ସେମାନେ ଅତି ସ୍ପଷ୍ଟ ଭାବରେ କହିଲେ ଯେ ଆବଶ୍ୟକ ହେଲେ ଦେଶରେ ନୂଆ ଦୁର୍ନୀତି ନିବାରଣ କମିଶନ ଗଢ଼ାଯିବ । ତା'ର କାରଣ ଥିଲା ଭାଜପାର ତୁଙ୍ଗ ନେତାମାନେ ମଧ ହାୱାଲା ମାମଲାରେ ଜଡ଼ିତ ଥିଲେ । ଏମାନେ ମଧ ହାୱାଲାରୁ ପ୍ରଚୁର ଅର୍ଥ ସଂଗ୍ରହ କରିଥିଲେ । ତା' ଭିତରୁ ଘରୋଇ ବିଭାଗ ମନ୍ତ୍ରୀ ଏଲ୍.କେ.ଆଡ଼ୱାଣୀ ୬୦ ଲକ୍ଷ ଟଙ୍କା,

ମଦନଲାଲ ଖୁରାନା ୩ ଲକ୍ଷ ଟଙ୍କା ଏବଂ ଯଶୋବନ୍ତ ସିହ୍ନା ୨୧.୧ ଲକ୍ଷ ଟଙ୍କା । ବିଟ୍ଟଲ ସାହେବ ଯଦି ପୁଣି ଥରେ ହାୱାଲା କେସ ସବୁକୁ ଖୋଲନ୍ତି ତେବେ ସରକାରୀ ଦଳ ସବୁଠାରୁ ବେଶି କ୍ଷତିଗ୍ରସ୍ତ ହେବେ ।

ତେବେ ସେ ଯାହା ହେଉ ଜର୍ଜଙ୍କୁ ପୁଣି ଥରେ ମନ୍ତ୍ରୀମଣ୍ଡଳରେ ନିଆଯିବା ପରେ ସଦସ୍ୟମାନେ ଅଭିଯୋଗ କରୁଚନ୍ତି ଯେ ସେ ଅନୈତିକ ଉପାୟରେ ମନ୍ତ୍ରୀ ହୋଇଛନ୍ତି । ସେମାନେ ଏ କଥା ମଧ କହୁଛନ୍ତି ଯେ ତଦନ୍ତ କମିଶନ ତାଙ୍କୁ ଦୋଷମୁକ୍ତ କରି ନ ଥିଲାବେଳେ ସେ ଯଦି ସେଇ ବିଭାଗକୁ ଫେରି ଆସନ୍ତି ତେବେ ଏକରେ, କମିଶନର ଆଉ କୌଣସି ମୂଲ୍ୟ ରହିଲା ନାହିଁ ଏବଂ ଦ୍ୱିତୀୟରେ କମିଶନ ପାଇଁ ଜର୍ଜ କିଛି ଅଦୃଶ୍ୟ ବାଧା ସୃଷ୍ଟି କରି ପାରନ୍ତି । ଯଦି ସେ ସେତକ ନ କରନ୍ତି ତେବେ ତାଙ୍କ ପ୍ରିୟ ବାନ୍ଧବୀ ଜୟା ଜେଟଲି ଏବଂ ପ୍ରଧାନମନ୍ତ୍ରୀଙ୍କ ପ୍ରିୟ ବନ୍ଧୁ ବଙ୍ଗାରୁ ଲକ୍ଷ୍ମଣ ସେଥିରୁ ମୁକ୍ତି ପାଇବେ କିପରି ? ଏବେ ଭାଜପାର କିଛି ନେତା ତେହେଲ୍‌କା ଉପରେ ହେଉଥିବା ତଦନ୍ତ କମିଶନ ବିରୋଧରେ ମଧ ସ୍ୱର ଉତ୍ତୋଳନ କଲେଣି । ସେମାନେ ନୂଆ କମିଶନ ପ୍ରତିଷ୍ଠା କଥା କହିଲେଣି । ତା'ର କାରଣ ମଧ ଅସ୍ପଷ୍ଟ ନୁହେଁ ।

ଜର୍ଜଙ୍କୁ ପୁଣି ଥରେ ମନ୍ତ୍ରୀମଣ୍ଡଳରେ ନେବା ସପକ୍ଷରେ ଗୋଟିଏ ମାତ୍ର ଯୁକ୍ତି କରା ଯାଉଛି ଯେ ତାହା ପ୍ରଧାନମନ୍ତ୍ରୀଙ୍କର 'ପ୍ରିରୋଗେଟିଭ' । କିନ୍ତୁ ଏଇଟା ଜଣାଶୁଣା କଥା- ସଂସଦୀୟ ଗଣତନ୍ତ୍ରରେ 'ପ୍ରରୋଗେଟିଭ' ଶବ୍ଦଟାକୁ ଲୋକଙ୍କୁ ଭୁଲେଇବା ପାଇଁ ରଖା ଯାଇଛି । କାରଣ 'ପ୍ରିରୋଗେଟିଭ' ଶବ୍ଦଟା ରାଜତାନ୍ତ୍ରିକ । 'ମୋର ଯାହା ଇଚ୍ଛା କରିବି' ଏ କଥା କେବଳ ରାଜାମାନେ ହିଁ କହି ପାରନ୍ତି । ରାଜ୍ୟ ତାଙ୍କର ଓ ଶାସନ ମଧ ତାଙ୍କର । ତେଣୁ ସେ ଯାହା କରିବେ । ଗଣତନ୍ତ୍ରରେ ସେ ପ୍ରଶ୍ନ ଉଠେନା । ସେ ଶାସନ ଲୋକମାନଙ୍କର । ଏହା ଏକ ମିଳିତ ଦାୟିତ୍ୱ । ମିଳିତ ଦାୟିତ୍ୱରେ ଲୋକଙ୍କ ଆଶା ଆକାଂକ୍ଷାକୁ ପ୍ରଥମେ ସମ୍ମାନ ଦେବାକୁ ପଡ଼ିବ । ସେଠି ବ୍ୟକ୍ତିର ପ୍ରଶ୍ନ ଉଠେ ନାହିଁ ।

ରାମାୟଣର ରାମଚନ୍ଦ୍ର ଯଦିଓ ରାଜତନ୍ତ୍ରର ମୁଖ୍ୟ ତଥାପି ସେ ସମାଜର ନିମ୍ନ ସ୍ତରରେ ଥିବା ଲୋକଟିର କଥାକୁ ସମ୍ମାନ ଦେଇ ତାଙ୍କ ବ୍ୟକ୍ତିଗତ ଜୀବନର ଦୋଷତ୍ରୁଟିକୁ ମଧ ସୁଧାରି ନେଇ ଥିଲେ । ଶାସନକୁ ସେ ପରିବାରର ଊର୍ଦ୍ଧ୍ୱରେ ରଖିଥିଲେ । ଆମେ ଆଜି ଯେତେବେଳେ ସେଇ ରାମଚନ୍ଦ୍ରଙ୍କୁ ସର୍ବୋଚ୍ଚ ଓ ସର୍ବୋତ୍ତମ ବୋଲି ମାନି ନେଉଛୁଁ ସେତେବେଳେ ତାଙ୍କ ଶାସନର ନୀତି ନିୟମ ଓ ଆଦର୍ଶକୁ ପଛକୁ ଠେଲି ଦେଉଛୁଁ । ଗୋଟିଏ ଦିଗରେ ବର୍ଷଯାକ ପୂଜା ପାର୍ବଣ କରି ରାମନାମ ଜପ ହେଉଥିବ ଏବଂ ଅନ୍ୟ ଦିଗରେ ଦୁର୍ନୀତି କରି ପରସ୍ୱାପହରଣ ମଧ ହେଉଥିବ । ଏହା କେଉଁ ନୀତି ?

ଅନେକ ଭିତରୁ, ବାଜପେୟୀଙ୍କ ଦୁର୍ନୀତି ନିବାରଣ ନୀତି ଏବେ ଆଉ ଏକ ନୂତନ ପ୍ରଶ୍ନ ଉତ୍‌ଥାପନ କରିଚି । 'ପୋଟୋ' ଘଟଣାରେ ଏବେ ଜୟଲଳିତା ଦଳ

ବାଜପେୟୀଙ୍କୁ ପାର୍ଲାମେଣ୍ଟରେ ସମର୍ଥନ ଦେବ କହିଛି । 'ପୋଟୋ' ଘଟଣା ଏବେ ଏପରି ଅବସ୍ଥାକୁ ଆସିଚି ଯେ ତାହା ଉଭୟଙ୍କ ପକ୍ଷେ ଏକ ସମ୍ମାନର ପ୍ରଶ୍ନ । ପ୍ରତ୍ୟେକେ ଏବେ ନିଜ ନିଜ ସପକ୍ଷରେ ଭୋଟ ସଂଗ୍ରହ କରୁଛନ୍ତି । ସରକାର ଯେ କୌଣସି ପ୍ରକାରେ ପୋଟୋକୁ ପାଶ୍ କରାଇ ନେବାକୁ ଚାହାନ୍ତି । ସେଇ ଅବସ୍ଥାରେ ଜୟାଙ୍କ ସମର୍ଥନ ତାଙ୍କୁ ଅନେକ ସାହାଯ୍ୟ କରିବ; କିନ୍ତୁ ପାଞ୍ଚଟି ଭୋଟର ଅଧିକାର ହାସଲ କରିଥିବା ଜୟ ଯେ ପ୍ରଧାନମନ୍ତ୍ରୀଙ୍କ ଠାରୁ ନିର୍ଭର ପ୍ରତିଶ୍ରୁତି ବିନା ସମର୍ଥନ ଯୋଗାଇ ଦେବେ ଏପରି ଆଶା କରା ଯାଇ ନ ପାରେ । ଏହି ସୁଯୋଗରେ ଜୟା ପୁଣି ଥରେ କ୍ଷମତାକୁ ଫେରିବାର ସ୍ୱପ୍ନ ଦେଖୁଥିବେ । ଏଥିପାଇଁ ମଧ୍ୟ ସରକାରଙ୍କୁ ଆଉ ଥରେ ସଫେଇ ଦେବାକୁ ପଡ଼ିବ ନାହିଁ । କାରଣ ଜୟା ଆଗରୁ ବାଜପେୟୀଙ୍କ ସହିତ ଥିଲେ । ଏବଂ ଏଥର ମଧ୍ୟ ରହିବେ । ଚିନ୍ତାହୀନ ଭାବରେ ଛାଡ଼ିବାର ଫଳ ସେ ପାଇଲେଣି । ଏବେ ପଶା କାଠି ଜୟାଙ୍କ ହାତରେ । ସମାଧାନର ରାସ୍ତା ଜଳ ଜଳ ଦେଖା ଯାଉଛି ।

ଏଇ ରାସ୍ତାଟାକୁ ଲାଲୁ ଏ ଯାଏଁ ଦେଖି ପାରି ନାହାନ୍ତି । ଯେଉଁଦିନ ଦେଖିବେ ସେଦିନ ସେ ମଧ୍ୟ ଶୁଦ୍ଧ ପବିତ୍ର ହେଇ ବାହାରି ଆସିବେ । ସେ ଦିନ ସେ ମଧ୍ୟ ହୁଙ୍କାର ଦେଇ କହିବେ ରାଜନୀତି କେବେ ବି ଦୁର୍ନୀତିକୁ ସ୍ପର୍ଶ କରେ ନାହିଁ । ତା'ଠାରୁ ଅନେକ ଦୂରରେ ।

ସଭାସମିତି, ଶୋଭାଯାତ୍ରା, ଶପଥ ପାଠ, ଗଣଦୌଡ କିମ୍ବା ଦେଶ ବ୍ୟାପି ଭାଷଣବାଜିରେ ଦୁର୍ନୀତି ବିରୋଧରେ ଯୁଦ୍ଧ ଘୋଷଣା କରି ହୁଏନା । ଗଣମାଧ୍ୟମକୁ ବ୍ୟବହାର କରି ଯେତେ ପ୍ରଚାର କଲେ ମଧ୍ୟ ଦୁର୍ନୀତି ହଟି ଯାଏନା । ଦୁର୍ନୀତିର ନିରାକରଣ ପାଇଁ ଏକ ସଂଗ୍ରାମୀ ଇଚ୍ଛାଶକ୍ତିର ଆବଶ୍ୟକତା ରହିଚି । ଏକ ନୀତିନିଷ୍ଠ ଚରିତ୍ରର ଆବଶ୍ୟକତା ରହିଚି । ସେ ସବୁ ପଛରେ ଥାଏ ଏକ ଶକ୍ତିଶାଳୀ ତଥା ଦୃଢ଼ ଶାସନ ଓ ସଙ୍ଗଠନ ମଧ୍ୟ । ହାଟ ବଜାରରୁ କିଣାକିଣି କରି କୌଣସି ପ୍ରକାରେ ମୁଣ୍ଡ ଗଣତିର ଅଙ୍କ କଷୁଥିବା ଗୋଟାଏ 'ନାମକା ୱାସ୍ତେ ସରକାର' ଏ କଥା କେବେ ବି କରି ପାରେନା । ବରଂ ଦୁର୍ନୀତି ବଢ଼ାଏ ।

ଏ କଥା ଯେ ଲୋକେ ବୁଝି ନାହାନ୍ତି ସେ କଥା ନୁହେଁ । ସେମାନେ ବୁଝିଛନ୍ତି ବୋଲି ଆଜିଯାଏ ଭାଜପାର ଭୋଟର ପାରଦ ଆଉ ଉପରକୁ ଉଠୁନାହିଁ । ବରଂ ବେଳେ ବେଳେ ନିମ୍ନମୁଖୀ ହେଉଛି । ସେଥିପାଇଁ 'ପୋଟୋ' ପାଇଁ ଏତେ ଚେଷ୍ଟା । ଏବେ କୁହାଯାଉଛି ଯିଏ 'ପୋଟୋ'କୁ ବିରୋଧ କରିବ ସେ ଦେଶଦ୍ରୋହୀ । ଯିଏ 'ରାମ' ବିରୋଧରେ କହିବ ସେ ହିନ୍ଦୁ ତଥା ହିନ୍ଦୁରାଷ୍ଟ୍ରର ବିରୋଧୀ । 'ପୋଟୋ'ରେ ଏଇ ଦେଶଦ୍ରୋହୀମାନଙ୍କର ଯତ୍ନ ନେବାର ବ୍ୟବସ୍ଥା ଅଛି । ହେଇପାରେ, ସବୁ 'ଦ୍ରୋହୀ' ଭିତରକୁ ଚାଲିଗଲେ ପ୍ରଧାନମନ୍ତ୍ରୀଙ୍କ ହାତମୁଠା ବେଶି ଟାଣ ହେବ । ଦେଶରୁ ଦୁର୍ନୀତି ବି ଲୋପ ପାଇବ ।

(ସମାଜ : ୪.୧୨.୨୦୦୧, ୫.୧୨.୨୦୦୧)

# ଗଣତନ୍ତ୍ର ନେତାଙ୍କର, ନେତାଙ୍କ ପାଇଁ ଓ...

ତେହେଲକା ଟେପ ପ୍ରକାଶ ପାଇଲା ପରେ ଆମ ଭିତରେ ବର୍ତ୍ତମାନ ଏଇ ଧାରଣା ଦୃଢ଼ୀଭୂତ ହୋଇଛି ଯେ ଗଣତନ୍ତ୍ରକୁ ଏବେ କେବଳ ରାଜନେତାମାନେ ସେମାନଙ୍କର ବ୍ୟକ୍ତିଗତ ସମ୍ପତ୍ତି କରି ସାରିଲେଣି । ଖାଲି ବିଧିବଦ୍ଧ ଆଇନଟିଏ ଏଥିପାଇଁ ହେବାକୁ ବାକି ଅଛି । ସେଇଟା କରିଦେବାକୁ ଆଉ କେତେକାଳ ? ସମସ୍ତେ ଯେତେବେଳେ ସ୍ୱଚ୍ଛନ୍ଦରେ ଦୁର୍ନୀତି କରି ପାରୁଛନ୍ତି ଓ କରିଛି ବୋଲି କହି ପାରୁଛନ୍ତି ଏବଂ ଏଥିପାଇଁ ସାମାନ୍ୟ ମାତ୍ର ଦୁଃଖ ମଧ ନାହିଁ, ବରଂ ଗର୍ବ ଅନୁଭବ କରୁଛନ୍ତି ସେତେବେଳେ 'ଦୁର୍ନୀତିର ଜାତୀୟ କରଣ' ପାଇଁ ସ୍ୱତନ୍ତ୍ର ଆଇନଟିଏ କରି ଦେବାକୁ ମୋଟେ ସମୟ ଲାଗିବ ନାହିଁ । ରାଜନେତାମାନେ ଦୁର୍ନୀତି କଲେ ଆଇନ ସେଠି ହାର ମାନି ଯାଏ ।

ରାଜନେତାମାନଙ୍କୁ ଆଇନ ଅନୁସରଣ କରେ । ସେମାନେ ଆଇନକୁ ଅନୁସରଣ କରନ୍ତି ନାହିଁ । ତେଣୁ ଦୁର୍ନୀତି ଏବେ ରାଜନେତାମାନଙ୍କର ଜନ୍ମଗତ ଅଧିକାର । ଗଣତନ୍ତ୍ର ସେମାନଙ୍କ ହାତର ଖେଳଣା । ଆମ ସମ୍ବିଧାନରେ ବର୍ତ୍ତମାନ ଏଇ କଥା ପଦକ ସ୍ଥାନ ପାଇ ଗଲେ ଆଉ କିଛି ବାକି ରହିବ ନାହିଁ । ଆମେ ଜାଣୁଁନା ଏବେ ଗଠିତ ହୋଇଥିବା ସମ୍ବିଧାନ ସଂଶୋଧନ କମିଟି ଏ ପ୍ରକାର ଏକ ପ୍ରସ୍ତାବ ଦେବେ କି ନା ।

ତେହେଲକା ଟେପ୍‌କୁ କଂଗ୍ରେସ ନେତା ଜୟପାଇ ରେଡ୍ଡି 'ପୋଖରାନ-୩' ବୋଲି କହିଛନ୍ତି । ତାଙ୍କର ଏ ନୂତନ ଶବ୍ଦର ଆବିଷ୍କାରଟା ନିଶ୍ଚୟ ସମସ୍ତଙ୍କୁ ଆମୋଦିତ କରିଥିବ । କଂଗ୍ରେସ ନେତାମାନେ ମଧ ଏଥିରେ ବେଶି ଆମୋଦିତ ହୋଇଥିବେ । ଏ ପ୍ରକାର ମୁଖ ରୋଚକ ଶବ୍ଦର ପ୍ରୟୋଗ ପାଇଁ ସମସ୍ତେ ନିଶ୍ଚୟ ରେଡ୍ଡିଙ୍କୁ ପ୍ରଂଶସା କରିଥିବେ । ସେତେବେଳେ ହୁଏତ କେହି ଭାବି ନ ଥିବେ ଯେ 'ପୋଖରାନ-୩'ଟା ସିନା ବାଜପେୟୀଙ୍କର, କିନ୍ତୁ 'ପୋଖରାନ-୧'ଟା ତ ଇନ୍ଦିରାଙ୍କର ବା କଂଗ୍ରେସର । 'ପୋଖରାନ-୧କୁ ଯଦି ବୋଫର୍ସ ଦୁର୍ନୀତି ବୋଲି ଧରା ଯାଏ ତେବେ କଥାଟା ଆଉ ବୁଝିବାକୁ ଅସୁବିଧା ହେବ ନାହିଁ । ଏମାନଙ୍କ ଭିତରେ କେବଳ ଫରକ ଏତିକି ଯେ କଂଗ୍ରେସ ତାର ଦୀର୍ଘ ୪୫ ବର୍ଷର ରାଜତ୍ୱ ପରେ ଗୋଟିଏ ବିସ୍ଫୋରଣ ଘଟାଇ ଥିଲା ବେଳେ ବାଜପେୟୀଙ୍କ ଏନ୍.ଡି.ଏ. ମାତ୍ର ଦୁଇବର୍ଷରୁ ମଧ କମ୍ ସମୟ ଭିତରେ ତା'ଠୁ ଯଥେଷ୍ଟ ବଡ଼ ଏବଂ ଖୁବ ଶକ୍ତିଶାଳୀ ବିସ୍ଫୋରଣଟିଏ ଘଟାଇ ପାରିଛନ୍ତି । ଏତେ ଶକ୍ତିଶାଳୀ ଯେ

ସମଗ୍ର ବିଶ୍ୱ ଏଥିରେ ଚମକି ପଡ଼ିଚି । ବିଶ୍ୱର ଦୁର୍ନୀତିର ଇତିହାସରେ ଏତେ ବଡ଼ ଘଟଣା, ଯେଉଁଥିରେ ଏକ ସଙ୍ଗେ ଏତେ ନେତା, ଏତେ ଅଫିସର ଏବଂ ଏତେ ସରକାରୀ କର୍ମଚାରୀ ଭିଡ଼ିଓ ଟେପ୍‌ରେ ଧରା ପଡ଼ିଯିବା ଘଟଣା ପ୍ରଥମ ବୋଲି କୁହା ଯାଉଛି । ଲାଞ୍ଚ ଗ୍ରହଣ କରୁଥିବା ବେଳର ଦୃଶ୍ୟ ସହିତ କଥୋପକଥନ ମଧ୍ୟ ରେକର୍ଡ ହେବା ଏକ ନୂଆ କଥା । ଆର୍ମିର ଅଫିସରମାନଙ୍କର ସେମାନଙ୍କର ମନ୍ତ୍ରୀଙ୍କ ପ୍ରତି ମନ୍ତବ୍ୟ ଏବଂ ଲାଞ୍ଚ ଗ୍ରହଣ କରୁଥିବା ନେତାମାନଙ୍କର ଅର୍ଥ ପ୍ରତି କି ଅଦମ୍ୟ ଲାଳସା ଏ ସମସ୍ତ ଯୁଗ ଯୁଗକୁ ଦୁର୍ନୀତିର ଇତିହାସରେ ଅଲିଭା ସ୍ୱାକ୍ଷର ହୋଇ ରହିଯିବ । ଆଇନ ତାକୁ କୋଉ ଆଖିରେ ଦେଖିବ ଏବଂ 'ଇଣ୍ଡିଆନ ଏଭିଡେନ୍ସ ଆକ୍ଟ' ତାକୁ ଗ୍ରହଣ କରିବ କି ନା ସେ କଥା ଅବଶ୍ୟ ଆମେ ଜାଣୁଁନା । କିନ୍ତୁ ଆମ ଦେଶରେ ହୋଇଥିବା ତଦନ୍ତ କମିଶନର ଫଳାଫଳ କିମ୍ବା ତାର ଉଦ୍ଦେଶ୍ୟରୁ କଥାଟା ବୁଝିବାକୁ ଅସୁବିଧା ହୁଏ ନାହିଁ । ସବୁ କମିଶନର ଫଳ ଯାହା ହେଇଚି ଏଇଟା ମଧ୍ୟ ସେଇଆ ହେବ ।

ଗୋଟିଏ ପରିବର୍ତ୍ତନ ଅବଶ୍ୟ ଆମ ନେତାମାନଙ୍କ ଭିତରେ ଏବେ ପରିଲକ୍ଷିତ ହେଉଛି । ହାଓ୍ୱାଲା ହେଉ ବା ବୋଫର୍ସ ହେଉ ବା ଅନ୍ୟ ଯେ କୌଣସି ଦୁର୍ନୀତି ଅଭିଯୋଗରେ ଅଭିଯୁକ୍ତମାନେ କେବେବି ଲାଞ୍ଚନେବା କଥାଟାକୁ ସ୍ୱୀକାର କରନ୍ତି ନାହିଁ । ଏଇଟା ଥିଲା ଭାରତୀୟ ରାଜନେତାଙ୍କର ବିଶେଷ ଚରିତ୍ର । କିନ୍ତୁ ଏବେ ତେହେଲକା କେସ୍‌ରେ ଦେଖାଗଲା ସମସ୍ତେ ଅପରାଧଟାକୁ ସ୍ୱୀକାର କରି ଗଲେ । ଅବଶ୍ୟ ସ୍ୱୀକାର କରିବା ଛଡ଼ା ସେମାନଙ୍କ ପକ୍ଷେ ଅନ୍ୟ ଉପାୟ ନଥିଲା । କିନ୍ତୁ ସେମାନଙ୍କ ସ୍ୱୀକାରୋକ୍ତିର ଶବ୍ଦ କଅଣ ତାହା ଦେଖିବାର କଥା । ସେମାନେ କହିଲେ 'ହଁ ଲାଞ୍ଚ ନେଇଚୁଁ' । ସେଥିରେ କଅଣ ଅଛି ? ଲାଞ୍ଚ ନେବାଟା କଅଣ ଅପରାଧ କି ? ଦଳପାଇଁ, ରାଜନୀତିକୁ ଜୀବନ୍ତ କରି ରଖିବା ପାଇଁ ଏବଂ ଭିନ୍ନ ଭାଷାରେ, ଦେଶର 'ସେବା'କୁ ତ୍ୱରାନ୍ୱିତ କରିବାକୁ ହେଲେ ଲାଞ୍ଚ ଗ୍ରହଣ ଅବୈଧ ନୁହେଁ ।''

କଥାଟା ଷୋଳ ଅଣା ସତ । ତାକୁ ଆପଣ ଲାଞ୍ଚ କହିବେ କି ଆଉ କଅଣ କହିବେ ସେଇଟା ଅଲଗା କଥା । ଭାରତୀୟ ରାଜନୀତିରେ ତାକୁ ଲାଞ୍ଚ କହି ହେବ ନାହିଁ । ତାର ନାମ ଚାନ୍ଦା । ଦଳୀୟ ରାଜନୀତି ପାଇଁ ଚାନ୍ଦା ଏକ ଅନିବାର୍ଯ୍ୟ ଶବ୍ଦ । ଆଇନର ନିଆଁରେ ତାକୁ ପୋଡ଼ି ହେବ ନାହିଁ କି ସାମାଜିକତାର ବିଚାରରେ ତାକୁ ତଉଲି ହେବ ନାହିଁ । ଏହା ସମ୍ପୂର୍ଣ୍ଣ ଏକ ସ୍ୱତନ୍ତ୍ର କଥା ।

ରାଜନୀତିର ଅଭିଧାନରେ ତାର ପବିତ୍ରତାର ପଟାନ୍ତର ନାହିଁ । ବୋଧେ ଏଇଥିପାଇଁ ୫୩ ଜଣ ହାଓ୍ୱାଲା ଅପରାଧିଙ୍କ ଭିତରୁ କେବଳ ଜଣେ ମାତ୍ର ଅଭିଯୁକ୍ତ ଶରଦ ଯାଦବ ଯେ କି ସ୍ୱୀକାର କରିଥିଲେ ଯେ ସେ ହାଓ୍ୱାଲା ଅର୍ଥ ଗ୍ରହଣ କରିଛନ୍ତି । ତାଙ୍କୁ ଯେମିତି ବାଜପେୟୀ ନିଜ ମନ୍ତ୍ରୀମଣ୍ଡଳରେ ସ୍ଥାନ ଦେଇଥିଲେ, ଅନ୍ୟ ଯେଉଁମାନେ

ସ୍ୱୀକାର କରି ନ ଥିଲେ ସେମାନଙ୍କୁ ମଧ ଗ୍ରହଣ କରିଥିଲେ । ଯେଉଁ ସୁଖରାମଙ୍କ ମୁଣ୍ଡ ତଳୁ ତିନି କୋଟି ଟଙ୍କା ସିବିଆଇ ଜବତ୍ କରିଥିଲା ତାଙ୍କୁ ମଧ ବାଜପେୟୀ ନିଜ ଗୋଷ୍ଠୀରେ ଗ୍ରହଣ କରିଥିଲେ । ତେଣୁ ଏ କଥା ସ୍ପଷ୍ଟ ଜଣାଥିଲା ଯେ ବାଜପେୟୀ ତାଙ୍କର ପ୍ରଧାନମନ୍ତ୍ରୀ ପଦରେ ଅଭିଷିକ୍ତ ହେବା ଦିନ ଦୁର୍ନୀତି ବିରୋଧରେ ଯୁଦ୍ଧ ଘୋଷଣା କରିଥିଲେ ମଧ ଦଳପାଇଁ ଚାନ୍ଦା ନେବାକୁ ସେ କାହାକୁ ମନା କରି ନ ଥିଲେ । ଏ କ୍ଷେତ୍ରରେ ସେ ତାଙ୍କ ପୂର୍ବସୂରୀମାନଙ୍କ ପଥ ହିଁ ଅନୁସରଣ କରି ଆସୁଛନ୍ତି ।

ତେହେଲକା ଟେପ୍ ଏବେ ଦୁଇଟି କଥାକୁ ସ୍ପଷ୍ଟ କରି ଦେଇଛି । ତେହେଲକା ଟେପ୍ କହିଲା ଯେ ଯେଉଁ ଅର୍ଥ ଗ୍ରହଣ କଲେ ଆର୍ମିର ଅଫିସରମାନେ ଅପରାଧି ହୋଇ ଯାଆନ୍ତି ସେଇ ଅର୍ଥକୁ ଗ୍ରହଣ କଲେ ରାଜନେତାମାନେ କିନ୍ତୁ ଅପରାଧି ହୁଅନ୍ତି ନାହିଁ । ପୁଣି ଅନ୍ୟଦିଗରୁ ଦେଖିବାକୁ ଗଲେ ଯେଉଁ ଅର୍ଥ ଗ୍ରହଣ କରି ଆର୍ମିର ଅଫିସରମାନେ 'କୋର୍ଟ ମାର୍ସାଲ' ଭୋଗୁଛନ୍ତି ସେଇ ଅର୍ଥ ଗ୍ରହଣ କରି ବଙ୍ଗାରୁ ଲକ୍ଷ୍ମଣ ସାମୟିକ ଭାବେ ତାଙ୍କ ପଦରୁ ଅବସର ନେଇଛନ୍ତି ବୋଲି କୁହାଯାଉଛି, ଯଦିଓ ଏ ଦୁହେଁ ଅର୍ଥଟାକୁ ନିଜ ପାଇଁ ଗ୍ରହଣ କରିଛନ୍ତି । ବଙ୍ଗାରୁ ସେ ଅର୍ଥକୁ ପାର୍ଟିକୁ ଦେଇ ନାହାନ୍ତି । ଜୟା କିନ୍ତୁ ସେ ଅର୍ଥ ପାର୍ଟି ଫଣ୍ଡରେ ଜମା ଦେଇଛନ୍ତି କି ନା ତାହା ନିର୍ଦ୍ଦିଷ୍ଟ ଭାବେ ଜଣା ପଡ଼ିନାହିଁ । ଏ ସବୁ କଥାରୁ ଆଉ ଗୋଟିଏ କଥା ମଧ ସ୍ପଷ୍ଟ ହେଉଛି ଯେ ଜୟା ହୁଅନ୍ତୁ ବା ବଙ୍ଗାରୁ ହୁଅନ୍ତୁ ସେମାନେ କିଣାବିକା କାରବାରରେ ଦେଶରକ୍ଷା ମନ୍ତ୍ରୀଙ୍କୁ ପ୍ରଭାବିତ କରି ପାରନ୍ତି । ଯାହାର ଅର୍ଥ 'ଡିଫେନ୍ସ ଡିଲ'ରେ ଗୋପନୀୟତା ଏବେ ବାଟଘାଟରେ ପଡ଼ିଛି ।

ଏହା ହିଁ ଥିଲା ମୂଳ ଅଭିଯୋଗ ବୋଫର୍ସ ମାମଲାରେ । ଆଜିକୁ ୧୪ ବର୍ଷ ହେଲା ସେ ମାମଲା ଦେଶର ରାଜନୈତିକ ବାତାବରଣକୁ ଗରମ କରି ରଖିଛି । ଗତ ସାଧାରଣ ନିର୍ବାଚନ ବେଳେ ବିଜେପି ଓ ତା'ର କେତେକ ଅଂଶୀଦାର ଯାକୁଇ ସବୁଠାରୁ ବଡ଼ ଇସୁ କରିଥିଲେ । ଏପରିକି ରାଜୀବ ଗାନ୍ଧୀଙ୍କ ମୃତ୍ୟୁ ହୋଇଥିଲେ ମଧ ତାଙ୍କ ନାଁ ଅଭିଯୁକ୍ତ ତାଲିକାରେ ରଖିବାକୁ ଜିଦ୍‌ଧରି ଥିଲେ ଏବଂ ଏଥିପାଇଁ ଦୁଇ ଦିନ କାଳ ପାର୍ଲାମେଣ୍ଟରେ ପ୍ରଚଣ୍ଡ ଝଡ଼ ପ୍ରବାହିତ ହୋଇ ଯାଇଥିଲା । ସେତେବେଳେ ଏନ୍.ଡ଼ି.ଏ. ଏହାକୁ ଭାରତୀୟ ରାଜନୀତିରେ ଗୋଟାଏ କଳଙ୍କ ଏବଂ ଏଥିରେ ଦେଶର ସୁରକ୍ଷାକୁ ବଳି ଦିଆଯାଇଛି ବୋଲି କହିଥିଲେ । ଭାରତୀୟ ରାଜନୀତିରେ ସବୁବେଳେ ସତଟା ସତ ନୁହେଁ କି ମିଛଟା ମଧ ମିଛ ନୁହେଁ । ଯେ କୌଣସି ସତ୍ୟକୁ ଅସତ୍ୟରେ ଏବଂ ଅସତ୍ୟକୁ ସତ୍ୟରେ ପରିଣତ କରି ଦିଆଯାଇ ପାରେ । କ୍ଷମତାର ଅଳିନ୍ଦରେ ରାଜନୀତି ଆଜି ସର୍ବଶକ୍ତିମାନ ଓ ସର୍ବେସର୍ବା । ସେ ସମସ୍ତଙ୍କର ଉର୍ଦ୍ଧ୍ୱରେ ।

ତେହେଲକା ଟେପ ଏବେ ଭାରତର ସମଗ୍ର ପୁଲିସ ବ୍ୟବସ୍ଥା ଏବଂ ସିଭିଲଠାରୁ ଆର୍ମିର ସବୁ ପ୍ରକାର 'ଇଣ୍ଟେଲିଜେନ୍ସ' ବ୍ୟବସ୍ଥା ପର୍ଯ୍ୟନ୍ତ ସମସ୍ତଙ୍କୁ ଅପାରଗ ଓ

ଅନାବଶ୍ୟକ ବୋଲି ପ୍ରମାଣିତ କରି ଦେଇଛି । ତେହେଲକାର ମାତ୍ର ଚାରି ପାଞ୍ଚଜଣ ଲୋକଙ୍କ ତୁଳନାରେ ଆମ ଦେଶର ସମଗ୍ର ଅପରାଧ ନିୟନ୍ତ୍ରଣ ଯନ୍ତ୍ର ଯେ କିଛି ନୁହେଁ ତାହା ପ୍ରମାଣିତ ହୋଇ ଯାଇଛି । ସେଇ ଦୃଷ୍ଟିରୁ ଆମ ସରକାର ନିଜର 'ଇଣ୍ଟେଲିଜେନ୍ସ' ବ୍ୟବସ୍ଥାରେ ପରିବର୍ତ୍ତନ ଆଣିବାକୁ ଚିନ୍ତା କରୁଛନ୍ତି କି ନା ଆମେ ଅବଶ୍ୟ ଜାଣୁନା । ତେହେଲକା ବିରୋଧରେ କିଏ କଅଣ କହିଛନ୍ତି ସେଥିରେ ଆମର କିଛି ଯାଏ ଆସେନା । ଡେରିରେ ହେଲେ ମଧ୍ୟ ପ୍ରଧାନମନ୍ତ୍ରୀ ଏବେ ସ୍ୱୀକାର କଲେଣି ଯେ ''ଗଣମାଧ୍ୟମ ତା'ର କାମ କରିଛି'' । ଏହା ହିଁ ବାସ୍ତବତା ଏବଂ ପରିସ୍ଥିତିର ଆବଶ୍ୟକତା । ଯଦି ତାକୁ ଅସ୍ୱୀକାର କରାଯାଏ ତେବେ ଏବେ ହେବାକୁ ଥିବା ପାଞ୍ଚଟି ରାଜ୍ୟର ନିର୍ବାଚନରେ ତାର ପ୍ରତିକୂଳ ପ୍ରଭାବ ପଡ଼ିପାରେ ।

ଏବେ ଲାଲକୃଷ୍ଣ ଆଡ଼ୱାଣୀ ମଧ୍ୟ କହିଲେଣି ଯେ ତେହେଲକା ଆମ 'ସିଷ୍ଟମ୍‌ର ତ୍ରୁଟି' ଦେଖେଇ ଦେଇଛି । ଏହା ଗୃହମନ୍ତ୍ରୀଙ୍କର ସରଳ ଅଭିବ୍ୟକ୍ତି ନୁହେଁ । ଏହା ସୁଚତୁର ତଥା ରାଜନୈତିକ ବିଚକ୍ଷଣତା । ଏଇ କଥା ପଦକରୁ ତେହେଲକା ଲୋକ ଲୋଚନକୁ ଆଣିଥିବା ଦୁର୍ନୀତିର ବିପୁଳ ଗନ୍ତାଘରର ଭବିଷ୍ୟତ କଅଣ ହେବ ତାହା ବୁଝିବାକୁ ଆଉ ଅସୁବିଧା ହୁଏନା । ଶିଷ୍ୟମାନେ ଗୁରୁଙ୍କ ପଥକୁ ହିଁ ଅନୁସରଣ କରୁଛନ୍ତି । ହର୍ଷଦ ମେହେଟ୍ଟା ମାମଲାରେ ଯେଉଁଠି ୧୬ ହଜାର କୋଟି ଟଙ୍କାର କାରବାର ହୋଇଥିଲା ବୋଲି କୁହା ଯାଉଛି ସେଠି ଜେ.ପି.ସି. 'ଖୋଳ ପର୍ବତ ମାର ମୂଷା' ନ୍ୟାୟରେ ଏହା ଏକ 'ସିଷ୍ଟମ ଫେଲୁଅର' କହିଲେ ଏବଂ ପରେ ତାକୁ 'ଆକ୍ସନ ଟେକେନ୍' କହି ଗୋଟିଏ କଲମ ଗାରରେ ଉଡ଼େଇ ଦେଇଥିଲେ । ବିଶିଷ୍ଟ ଅର୍ଥନୀତିଜ୍ଞ ତଥା ଅର୍ଥମନ୍ତ୍ରୀ ମନମୋହନ ସିଂହଙ୍କୁ ସେତେବେଳେ କଂଗ୍ରେସ କମ ବଧାଇ ଦେଇ ନ ଥିଲା ।

ଏବେ ଗୃହମନ୍ତ୍ରୀ ଆଡ଼ୱାଣୀଙ୍କ 'ସିଷ୍ଟମର ତ୍ରୁଟି' ଠିକ୍ ଏକା ପରି ଶୁଭୁଚି ଏବଂ ଆମକୁ ହର୍ଷଦ ମେହେଟ୍ଟାଙ୍କ ମାମଲା କଥା ମନେ ପକେଇ ଦେଉଛି । ଏହା ହିଁ ଯେ ହେବ ଏ କଥା ଜଣାଅଛି । ତା'ର କାରଣ ଗଣତନ୍ତ୍ର ଆଜି ମୁଷ୍ଟିମେୟ କେତେଜଣ ସ୍ୱାର୍ଥପର ତଥା ସୁବିଧାବାଦୀ ରାଜନେତାଙ୍କ ହାତ ମୁଠାରେ ଆବଦ୍ଧ ହୋଇ ରହିଯାଇଛି । ସେଥିରୁ ମୁକ୍ତିର କଥା ଚିନ୍ତା ନ କରିବା ଯାଏ ସାଧାରଣ ଜନତାର ଉନ୍ନତି ସମ୍ଭବ ନୁହେଁ ।

(ସମାଜ : ୧୦.୦୪.୨୦୦୧)

# ଗଣତନ୍ତ୍ରର ହତ୍ୟା

ନାଇଜେରିଆର ଜାତୀୟବାଦୀ ନେତା ମାସୁଦ ଆବିଓଲାଙ୍କର ସେଠାକାର ଜେଲ୍‌ରେ ଆକସ୍ମିକ ମୃତ୍ୟୁ ପରେ ସାରା ପୃଥିବୀରେ ଗଣତନ୍ତ୍ରରେ ବିଶ୍ୱାସ କରୁଥିବା ଦେଶମାନଙ୍କ ଭିତରେ ଚହଳ ସୃଷ୍ଟି ହେଇଛି । ସେମାନେ ହୁଏତ ଭାବୁଛନ୍ତି ପୃଥିବୀରେ ଗଣତନ୍ତ୍ର ତିଷ୍ଠିବ ତ ? ଯେଉଁପରି ଭାବରେ ଆଫ୍ରିକା ମହାଦେଶର ଦାରିଦ୍ର୍ୟ, କ୍ଷୁଧା ଓ ଅନଟନ ଜର୍ଜରିତ ଦେଶମାନଙ୍କରେ ଧୀରେ ଧୀରେ ଗଣତାନ୍ତ୍ରିକ ବିଚାରଧାରାକୁ ବାହୁ ବଳରେ ଚାପି ଦେଇ ଆର୍ମିର ସ୍ୱେଚ୍ଛାଚାରୀ ଶାସନ ମୁଣ୍ଡ ଟେକି ଉଠୁଚି ସେଥିରେ ଏ ପ୍ରଶ୍ନ ସମସ୍ତ ସଚେତନ ତଥା ମୁକ୍ତିକାମୀ ମଣିଷଙ୍କ ମନରେ ଉଠିବା ସ୍ୱାଭାବିକ ।

ମାସୁଦ ଆବିଓଲା ଦୀର୍ଘଦିନ ହେଲା ଜେଲ୍‌ରେ ଥିଲେ ଏବଂ ଜାତିସଂଘର ବାରମ୍ବାର ଚାପ ଫଳରେ ତାଙ୍କୁ ନିକଟରେ ଜେଲରୁ ମୁକ୍ତି ଦେବାକୁ ସେଠାକାର ମିଲିଟାରୀ ସରକାର ରାଜି ହେଇ ଥିଲେ । କିନ୍ତୁ ଜେଲ୍‌ରେ ତାଙ୍କର ମୃତ୍ୟୁକୁ ବହୁ ଦେଶ, ଅନୁଷ୍ଠାନ ଓ ବ୍ୟକ୍ତି  ବିଶେଷ ସନ୍ଦେହ କରିଛନ୍ତି । ନାଇଜେରିଆରେ ଏଥିପାଇଁ ଦେଶବ୍ୟାପି ଆନ୍ଦୋଳନ ଆରମ୍ଭ ହେଇଛି । ଲୋକଙ୍କର ଏ ଆନ୍ଦୋଳନକୁ ଦମନ କରିବାକୁ ଯାଇ ପୁଲିସକୁ ଗୁଳି ଚାଳନା କରିବାକୁ ପଡିଛି ଏବଂ ଏଥିରେ ବହୁ ଲୋକ ପ୍ରାଣ ହରାଇଛନ୍ତି ବୋଲି ଖବର ପ୍ରକାଶ ପାଇଛି ।

୧୯୯୫ ନଭେମ୍ବର ମାସରେ ନାଇଜେରିଆର ବିଖ୍ୟାତ ଲେଖକ ନାଟ୍ୟକାର ତଥା ପରିବେଶବିଦ୍ କେନ୍ ସାରୋୱିବା କୁ ତାଙ୍କର ଅନ୍ୟ ଆଠ ଜଣ ସହକର୍ମୀଙ୍କ ସହିତ ଜେଲ୍ ଭିତରେ ଫାଶୀ ଦିଆ ଯାଇଥିଲା । କେନ୍ ସାରାୱିବା ମଧ ମାସୁଦ ଆବିଲାଓଙ୍କ ପରି ଦେଶରେ ମିଲିଟାରୀ ଶାସନ ବିରୋଧରେ ଆନ୍ଦୋଳନ କରୁଥିଲେ । ବିନା ବିଚାରରେ ସେମାନଙ୍କୁ ଫାଶୀ ଦିଆ ଯିବା ପରେ ଜାତିସଂଘ ସମେତ ପୃଥିବୀର ବହୁ ରାଷ୍ଟ୍ର ନାଇଜେରିଆର ଏକଛତ୍ର ଶାସନ ବିରୋଧରେ ପ୍ରତିବାଦ କରିଥିଲେ । କିନ୍ତୁ ଶୁଣୁଚି କିଏ ? ଫାଶୀବାଦୀ ମଣିଷ କେବେ ଜନମତକୁ ଖାତିର କରେନା ।

ନାଇଜେରିଆ ଆଫ୍ରିକାର ଗୋଟିଏ କ୍ଷୁଦ୍ର ଦେଶ । ତା'ର ଲୋକସଂଖ୍ୟା ମାତ୍ର ୧୧୮.୪ ମିଲିୟନ । କିନ୍ତୁ ସାକ୍ଷରତା ୫୨ ପରସେଣ୍ଟ, ଯାହା ଭାରତ ସହିତ ସମାନ । ୧୯୭୦ ମସିହା ପର୍ଯ୍ୟନ୍ତ ଏହି ଦେଶ ମୁଖ୍ୟତଃ କୃଷି, ଜଙ୍ଗଲଜାତ ଦ୍ରବ୍ୟ ଓ ସାମାନ୍ୟ କିଛି ଖଣିଜ ଦ୍ରବ୍ୟ ଉପରେ ନିର୍ଭର କରୁଥିଲା ବେଳେ ୧୯୭୦ ପରେ ତୈଳ ରପ୍ତାନି

କରି ଦେଶ ପ୍ରଚୁର ବୈଦେଶିକ ମୁଦ୍ରା ଅର୍ଜନ କଲା । ଫଳରେ ଦେଶର ଅର୍ଥନୀତିରେ ଗୋଟାଏ ବୈପ୍ଲବାତ୍ମକ ପରିବର୍ତ୍ତନ ଆରମ୍ଭ ହେଲା ।

କିନ୍ତୁ ସେଥିରେ ବିଶେଷ କିଛି ଲାଭ ହେଲା ନାହିଁ । ୧୯୬୦ ମସିହାରେ ସ୍ୱାଧୀନତା ହାସଲ କରି ଏବଂ ୧୯୬୩ ରେ ମିଳିତ ରାଜ୍ୟ ଗୋଷ୍ଠୀରେ ଯୋଗ ଦେଇଥିଲେ ମଧ୍ୟ ଦେଶରେ ଗତ ୩୬ ବର୍ଷ ଭିତରେ ଅନ୍ତତଃ ସାତଥର କୁପ୍(Coup) ମାଧ୍ୟମରେ ମିଲିଟାରୀ ଶାସନ ହୋଇ ସାରିଲାଣି । ୧୯୯୩ରେ ଅନୁଷ୍ଠିତ ହୋଇଥିବା ଦେଶରେ ପ୍ରଥମ ସାଧାରଣ ନିର୍ବାଚନରେ ଆବିଓଲା ୫୮ ପ୍ରତିଶତ ଭୋଟ ପାଇ ରାଷ୍ଟ୍ରପତି ନିର୍ବାଚିତ ହୋଇଥିଲେ ମଧ୍ୟ ମିଲିଟାରୀ ସରକାର ତାଙ୍କୁ ଶାସନ ହସ୍ତାନ୍ତର କରି ନ ଥିଲେ । ଅଧିକନ୍ତୁ ତାଙ୍କ ସମେତ ଆହୁରି ୨୫୦ ରାଜନୈତିକ ନେତାଙ୍କୁ ବନ୍ଦୀ କରିଥିଲେ ଏବଂ ସାଧାରଣ ନିର୍ବାଚନର ଫଳାଫଳକୁ ବାତିଲ କରି ଦେଇ ଥିଲେ । ଫଳରେ ଦେଶ ଭିତରେ ଅଶାନ୍ତି ଲୁହୁଲୁ ଥିଲା । ମାତ୍ର ଅଳ୍ପଦିନ ତଳେ ଜାତିସଂଘର ସେକ୍ରେଟେରୀ ଜେନେରାଲ କୋଫି ଆନ୍ନନ୍ ନାଇଜେରିଆ ଯାଇ ଆବିଓଲାଙ୍କ ସହିତ ଆଲୋଚନା କରିଥିଲେ । ସେତେବେଳେ ସେ କୁଆଡେ ଆବିଓଲାଙ୍କୁ ତାଙ୍କ ଆନ୍ଦୋଳନରୁ ନିବୃତ୍ତ ରହିବାକୁ ପ୍ରବର୍ତ୍ତାଇ ଥିଲେ । ଫଳରେ ସରକାର ତାଙ୍କୁ ମୁକ୍ତି ଦେବାକୁ ରାଜି ହୋଇ ଥିଲେ ।

ଏପରି ଜଣେ ମହାନ ବିପ୍ଳବୀଙ୍କର ଆକସ୍ମିକ ମୃତ୍ୟୁକୁ ଅନେକେ ସନ୍ଦେହ ଚକ୍ଷୁରେ ଦେଖୁଛନ୍ତି । ତାଙ୍କ ପରିବାରବର୍ଗ ତାଙ୍କ ମୃତ୍ୟୁକୁ ଏକ ସୁପରିକଳ୍ପିତ ଷଡଯନ୍ତ୍ର ବୋଲି କହୁଥିଲା ବେଳେ ତାଙ୍କୁ ଚିକିତ୍ସା କରୁଥିବା ଆମେରିକୀୟ ଡାକ୍ତର, 'ସରକାର ଉପଯୁକ୍ତ ଚିକିତ୍ସା ବ୍ୟବସ୍ଥା ନ କରିବାରୁ ତାଙ୍କର ମୃତ୍ୟୁ ହେଲା' ବୋଲି କହିଛନ୍ତି । ସେ ସିଧାସଳଖ ସରକାରଙ୍କୁ ଦାୟୀ କରି କହିଛନ୍ତି ଯେ, ଆବିଲାଓଙ୍କ ସ୍ୱାସ୍ଥ୍ୟ ଅତ୍ୟନ୍ତ ଉଦ୍‌ବେଗଜନକ ଅବସ୍ଥାରେ ଥିଲା ବୋଲି ସେ ସରକାରଙ୍କୁ ଆଗରୁ ଜଣାଇ ଦେଇ ଥିଲେ । କିନ୍ତୁ ନାଇଜେରିଆର ଜନ ସାଧାରଣ ଏସବୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି । ସେମାନଙ୍କର ଧାରଣା ଯେ, ମିଲିଟାରୀ ଶାସନ ବିରୋଧରେ ତାଙ୍କର ଦୀର୍ଘ ଦିନର ସଂଗ୍ରାମରୁ ବିରତ ରହିବାକୁ ତାଙ୍କ ଉପରେ ହେଉଥିବା ମାନସିକ ଚାପକୁ ସେ ବୋଧେ ସମ୍ଭାଳି ପାରିଲେ ନାହିଁ । ଯାହା ଫଳରେ ତାଙ୍କ ହୃତ୍‌କ୍ରିୟା ବନ୍ଦ ହୋଇ ଯାଇଥିଲା । ଯଦି ତାହା ହିଁ ସତ୍ୟ ହୋଇ ଥାଏ ତେବେ ଏ କ୍ଷେତ୍ରରେ କୋଫି ଆନ୍ନନ୍‌ଙ୍କ ଭୂମିକାକୁ ମଧ୍ୟ ସନ୍ଦେହ କରିବାର କାରଣ ଅଛି । କେଉଁ କାରଣରୁ ଜାତିସଂଘ ପରି ଗୋଟିଏ ସର୍ବୋଚ୍ଚ ତଥା ସ୍ୱାଧୀନ ଅନୁଷ୍ଠାନର ମୁଖ୍ୟ କର୍ମକର୍ତ୍ତା ଆବିଲାଓଙ୍କୁ ଗୋଟାଏ ଲୋକତନ୍ତ୍ର ବିରୋଧୀ ସରକାର ବିରୋଧରେ ସଂଗ୍ରାମରୁ ନିବୃତ୍ତ ରହିବାକୁ ଅନୁରୋଧ କଲେ ତାହା ଆମେ ବୁଝିବାକୁ ଅକ୍ଷମ । ତେବେ କ'ଣ ଜାତିସଂଘର କର୍ମକର୍ତ୍ତାମାନେ ନାଇଜେରିଆର ମିଲିଟାରୀ ଶାସନକୁ ସାହାଯ୍ୟ କରିବାକୁ ସେଠାକୁ ଯାଇଥିଲେ ?

ନାଇଜେରିଆର ଘନ ଘନ ଶାସନ ବଦଳିବାର ପ୍ରଧାନ କାରଣ ହେଉଛି ନାଇଜେରିଆ ପୃଥିବୀର ଦୁର୍ନୀତିଗ୍ରସ୍ତ ଦେଶମାନଙ୍କ ତାଲିକାରେ ପ୍ରଥମରେ ଅଛି । ବର୍ଲିନରେ ଥିବା 'ଟ୍ରାନ୍ସ ପେରେନ୍ସି ଇଣ୍ଟରନ୍ୟାସନାଲ' ନାମକ ସଂସ୍ଥା ଦ୍ୱାରା ହୋଇଥିବା ଏକ ସମୀକ୍ଷାରୁ ଜଣାଯାଏ ପୃଥିବୀର ପ୍ରଥମ ଦଶଟି ଦୁର୍ନୀତିଗ୍ରସ୍ତ ଦେଶ ଭିତରୁ ନାଇଜେରିଆ ପ୍ରଥମ, ପାକିସ୍ଥାନ ପଞ୍ଚମ ଏବଂ ଭାରତ ଅଷ୍ଟମରେ ଅଛି । ଯେଉଁଠି ଦୁର୍ନୀତି 'ପ୍ରଥମ କାର୍ଯ୍ୟକ୍ରମ' ସେ ଦେଶରେ କୌଣସି ଆଇନ, ନୀତି ନିୟମ କାମ କରେନା । କୌଣସି ଜ୍ଞାନ, ବିବେକ ଓ ମାନବିକତା ମଧ୍ୟ କାମ କରେନା । ସ୍ୱାର୍ଥବାଦୀ ମଣିଷ ସମଗ୍ର ପୃଥିବୀକୁ ଦୁଇ ଭାଗରେ ବିଭକ୍ତ କରିଥାଏ । ଗୋଟିଏ ପାଖରେ ସେ ନିଜେ ଓ ଅନ୍ୟ ପାଖରେ ଆଉ ସବୁ । ନିଜକୁ ରକ୍ଷା କରିବାକୁ ସେ ସମଗ୍ର ପୃଥିବୀକୁ ଦଳି ମକଚି ଧୂଳିସାତ୍ କରି ଦିଏ । ଏହା ହିଁ ଏକମାତ୍ର କାରଣ, ଯେଉଁଥି ପାଇଁ ସେଠି ହଜାର ହଜାର କୋଟି ଡଲାର ତୈଳ ରପ୍ତାନିରୁ ରୋଜଗାର ହେଉ ଥିଲେ ମଧ୍ୟ ପ୍ରାୟ ଅଧାରୁ ବେଶି ଭାଗ ଲୋକ କ୍ଷୁଧା ଓ ଦାରିଦ୍ର୍ୟରେ ଜର୍ଜରିତ ହେଉଛନ୍ତି । ଏଇଥିପାଇଁ ସେଠାରେ କବି, ଲେଖକ, ବୁଦ୍ଧିଜୀବୀ ଏବଂ ସାମ୍ବାଦିକମାନେ ମଧ୍ୟ ଦୀର୍ଘଦିନ ଧରି ଜେଲ୍ ଭୋଗୁଛନ୍ତି । କୁହାଯାଉଛି ତୈଳ ରପ୍ତାନିର ଗୋଟାଏ ମୋଟା ଅଂଶ ସରକାରରେ ଥିବା ଆର୍ମି ଅଫିସରମାନେ ବିନା ବିଚାରରେ ନିଜ ପକେଟକୁ ନେଇ ଯାଉଛନ୍ତି ।

ଆଫ୍ରିକା, ଲାଟିନ ଆମେରିକା, ଦକ୍ଷିଣ, ପୂର୍ବ ଓ ପଶ୍ଚିମ ଏସିଆର ଅନେକ ଦେଶରେ ଏବେ ମିଲିଟାରୀ ଶାସନ ଚାଲୁ ରହିଛି । ଅନେକ ଦେଶରେ ଗଣତନ୍ତ୍ର ନାଁରେ ବି ମିଲିଟାରୀ ଶାସନ ଚାଲିଛି । ସେ ସବୁ ଦେଶରେ ବର୍ଷ ବର୍ଷ ଧରି ନିର୍ବାଚନ ହୁଏ ନାହିଁ କିମ୍ବା ହେଲେ ମଧ୍ୟ ତାହା କାର୍ଯ୍ୟକାରୀ ହୁଏ ନାହିଁ । କାରଣ ଯଦି ତା' ହୁଏ, ତେବେ ବ୍ୟକ୍ତି ସ୍ୱାର୍ଥ ବାଧାପ୍ରାପ୍ତ ହେବ । ଦୁର୍ନୀତି ସବୁବେଳେ ଚାହେଁ କ୍ଷମତା ତା' ହାତ ମୁଠାରେ ଥାଉ ।

ଆଜି ଏହିସବୁ ଦେଶର ମିଲିଟାରୀ ଶାସନ କବଳରୁ ମୁକ୍ତି ପାଇଁ କେବଳ ମିଳିତ ଜାତିସଂଘ ହିଁ କିଛି କରି ପାରିବ । ତେଣୁ ଆଗାମୀ ଶତାବ୍ଦୀ ବେଳକୁ ସେ ଗୁରୁଦାୟିତ୍ୱ ବହନ କରିବାକୁ ଜାତିସଂଘର ପ୍ରମୁଖ ଅଂଶୀଦାରମାନେ ଏବେଠୁ ପ୍ରସ୍ତୁତ ହେବା ଦରକାର । 

(ପ୍ରଗତିବାଦୀ-୧୭.୭.୯୮)

# କାଠଗଡ଼ାରେ ନ୍ୟାୟପାଳିକା-
# ଶେଷର ଆରମ୍ଭ

ସେପ୍ଟେମ୍ବର ୨୭, ୧୯୯୧ । ଖାଲି ଭିଲାଇ ନୁହେଁ ସମଗ୍ର ମଧ୍ୟପ୍ରଦେଶର ବିଶିଷ୍ଟ ଶ୍ରମିକ ନେତା ଶଙ୍କର ଗୁହ ନିୟୋଗୀଙ୍କୁ ତାଙ୍କ ବାସ ଭବନରେ କେତେଜଣ ଆତତାୟୀ ଗୁଳିକରି ହତ୍ୟା କଲାପରେ ସେତେବେଳେ ସମଗ୍ର ଭାରତର ଶ୍ରମିକଶ୍ରେଣୀ ସ୍ତମ୍ଭୀଭୂତ ହୋଇ ଯାଇଥିଲା । ଭିଲାଇ ଅଞ୍ଚଳର ହଜାର ହଜାର ଶ୍ରମିକ ତାର ପ୍ରତିବାଦରେ ଧର୍ମଘଟ କଲେ ଏବଂ ହତ୍ୟାକାରୀକୁ କଠୋର ଦଣ୍ଡ ଦିଆଯାଉ ବୋଲି ଦାବି କଲେ । ସେ ଶ୍ରମିକ ଅସନ୍ତୋଷର ପ୍ରଭାବ ମଧ୍ୟପ୍ରଦେଶର ସବୁ ଶିଳ୍ପକ୍ଷେତ୍ରକୁ ପ୍ରସାରିତ ହେଲା । ଶିଳ୍ପାନୁଷ୍ଠାନ ଗୁଡ଼ିକ ଅଚଳାବସ୍ଥାକୁ ଆସିଗଲା । ଯେଉଁ ଖଣି ଗୁଡ଼ିକରେ ଗୁହ ନିୟୋଗୀଙ୍କ ନେତୃତ୍ୱ ବର୍ଷ ବର୍ଷ ଧରି ତାର ପ୍ରଭୁତ୍ୱ ଜାରି କରି ଆସୁଥିଲା ସେ ସବୁ ସଂପୂର୍ଣ୍ଣ ଅଚଳ ହୋଇଗଲା । ଅଭିଯୋଗ ହେଲା ନିୟୋଗୀଙ୍କ ହତ୍ୟା ପଛରେ ମଧ୍ୟପ୍ରଦେଶର କେତେକ ବିଶିଷ୍ଟ ଶିଳ୍ପପତି, ସରକାର ଏବଂ ଅନ୍ୟ କେତେକ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ଚକ୍ରାନ୍ତ ରହିଛି । ଗୁହ ନିୟୋଗୀ ସେଇ ଚକ୍ରାନ୍ତର ଶିକାର ହେଇଛନ୍ତି ।

ଆନ୍ଦୋଳନ ତେଜିବାର ଦେଖି ସରକାର ହତ୍ୟାକାରୀକୁ ଉଚିତ ଦଣ୍ଡ ଦେବେ ବୋଲି ପ୍ରତିଶ୍ରୁତି ଦେଲେ ମଧ୍ୟ କାର୍ଯ୍ୟରେ କିଛି କଲେ ନାହିଁ । ଲୁଚକାଳି ଖେଳିଲେ । ସାଧାରଣ ଭାବେ ପ୍ରଶାସନ ଯାହା କରେ ତାହା ହିଁ ହେଲା । ଫଳରେ ସଂଗ୍ରାମୀ ଶ୍ରମିକମାନଙ୍କ ଆନ୍ଦୋଳନ ଚାଲୁ ରହିଲା । ସେମାନେ ସିବିଆଇ ଦ୍ୱାରା ତଦନ୍ତ ହେଉ ବୋଲି ଦାବି କଲେ । ଶେଷରେ ସରକାର ହାର ମାନିଲେ । ସିବିଆଇ ତଦନ୍ତ କରି ହତ୍ୟାକାରୀ ଓ ତାଙ୍କର ଷଡ଼ଯନ୍ତ୍ରକାରୀମାନଙ୍କୁ ଆରେଷ୍ଟ କଲେ ଏବଂ ହତ୍ୟା ପଛରେ ଥିବା ସମସ୍ତ ତଥ୍ୟ ବାହାର କଲେ । ଭିଲାଇ ଅଞ୍ଚଳର ଦୁଇଜଣ ବିଶିଷ୍ଟ ଶିଳ୍ପପତି ଚନ୍ଦ୍ରକାନ୍ତ ସାହା ଏବଂ ମୂଳଚାନ୍ଦ ସାହା ଚକ୍ରାନ୍ତ କରି ଦିଲ୍ଲୀରୁ ଚାରି ଜଣ କୁଖ୍ୟାତ ନରହତ୍ୟାକାରୀଙ୍କୁ ଭଡ଼ାରେ ଆଣି ନିୟୋଗୀଙ୍କୁ ହତ୍ୟା କରିଥିଲେ । ହତ୍ୟାକାରୀମାନେ ଏ ସମସ୍ତ କଥା ସିବିଆଇ ଠାରେ ସ୍ୱୀକାର କରି ଥିଲେ । ହତ୍ୟାର କାରଣ ଥିଲା ଅନେକ । ଭିଲାଇ ଇସ୍ପାତ କାରଖାନାକୁ କେନ୍ଦ୍ରକରି ସେ ଅଞ୍ଚଳରେ ଅନେକଗୁଡ଼ିଏ ସରକାରୀ ଓ ବେସରକାରୀ କାରଖାନା ଗଢି ଉଠିଛି । ଅନେକ ଗୁଡ଼ିଏ ଖଣି ମଧ୍ୟ ଅଛି, ଏ ସବୁଥିରେ ଲକ୍ଷ ଲକ୍ଷ ଶ୍ରମିକ/ଠିକା ଶ୍ରମିକ ଭାବରେ କାମ କରନ୍ତି । ଏହି ଶ୍ରମିକମାନଙ୍କର 'ଚଳନ୍ତି ଠାକୁର' ଥିଲେ ଗୁହ ନିୟୋଗୀ । ଶିଳ୍ପପତିମାନଙ୍କର ମନମୁଖି ଶାସନ, ମେରୀ ରାୟ ନୀତି ଏବଂ ସେମାନଙ୍କର ଆଖିବୁଜା ଶୋଷଣ ନିୟୋଗୀଙ୍କ ଲାଗି ବାଧା ପାଇଲା ।

ସେମାନେ ଅତିଷ୍ଠ ହୋଇ ଉଠିଲେ । ତେଣୁ ନିୟୋଗୀଙ୍କୁ ହଟେଇ ଦେବା ହିଁ ଥିଲା ଏହି ମାଲିକମାନଙ୍କର ପ୍ରଥମ ଉଦ୍ଦେଶ୍ୟ । ସେମାନେ ଯୋଜନା ଆରମ୍ଭ କଲେ । ଏହି ଯୋଜନାରେ ସରକାରରେ ଥିବା କିଛି ନେତୃ ସ୍ଥାନୀୟ ବ୍ୟକ୍ତିଙ୍କର ହାତ ଥିଲା ବୋଲି ମଧ୍ୟ ଅଭିଯୋଗ ହୋଇଥିଲା । ତେଣୁ ଶିଳ୍ପପତିମାନେ ନିୟୋଗୀଙ୍କୁ ଶେଷ କରିବା ପାଇଁ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରିଥିଲେ ବୋଲି ସିବିଆଇ ଅନୁସନ୍ଧାନରୁ ଜଣା ପଡ଼ିଲା ।

ପ୍ରଥମେ ସେସନ୍‌ସ କୋର୍ଟ ଏ ମାମଲାର ବିଚାର କରି ଦୁଇଜଣ ଶିଳ୍ପପତିଙ୍କୁ ଜେଲ୍‌ଦଣ୍ଡ ଏବଂ ଗୁଳି କରିଥିବା ଭଡ଼ାଟିଆ ଆତତାୟୀ ମାନଙ୍କୁ ମୃତ୍ୟୁ ଦଣ୍ଡର ଆଦେଶ ଦେଇଥିଲେ ।

କିନ୍ତୁ ଚକ୍ରାନ୍ତକାରୀ ଗୋଷ୍ଠୀ ଏତେ ଦୁର୍ବଳ ନ ଥିଲେ । ସେମାନେ ନ୍ୟାୟ କିପରି କିଣା ଯାଇପାରେ ଏ କଥା ଜାଣନ୍ତି । ନ୍ୟାୟକୁ କିପରି ହାତର କଣ୍ଢେଇ କରି ନଚେଇ ହୁଏ ଏ କଥା ମଧ୍ୟ ସେମାନେ ଜାଣନ୍ତି । ତେଣୁ ସେମାନେ ହାଇକୋର୍ଟରେ ଅପିଲ କଲେ । ହାଇକୋର୍ଟରେ ଏକ ଦୁଇ ଜଣିଆ ବେଞ୍ଚ ମାମଲାର ବିଚାର କରି ସେ ସମସ୍ତ ଅପରାଧୀଙ୍କୁ ନିର୍ଦ୍ଦୋଷରେ ଖଲାସ କରି ଦେଲେ ।

ଗତ ଜୁନ୍ ୨୬ରେ ହାଇକୋର୍ଟର ରାୟ ପ୍ରକାଶ ପାଇବା ମାତ୍ରେ ସେ ଅଞ୍ଚଳରେ ପୁଣି ପ୍ରତିବାଦର ନିଆଁ ଜଳି ଉଠିଲା । ହଜାର ହଜାର ଶ୍ରମିକ ପୁଣିଥରେ ଧର୍ମଘଟରେ ଯୋଗ ଦେଲେ । ସେମାନେ ଚକ୍ରାନ୍ତକାରୀ ଗୋଷ୍ଠୀଙ୍କ ସହିତ ନ୍ୟାୟାଧୀଶମାନେ ହାତ ମିଳାଇ ପକ୍ଷପାତ ନୀତି ଅବଲମ୍ବନ କରିଛନ୍ତି ବୋଲି ଖୋଲାଖୋଲି ଭାବରେ ଅଭିଯୋଗ କଲେ । ସେତିକିରେ ସେମାନେ ସନ୍ତୁଷ୍ଟ ହେଲେ ନାହିଁ । ମାନ୍ୟବର ବିଚାରପତିମାନଙ୍କ କୁଶପୁତ୍ତଳିକା ସର୍ବ ସାଧାରଣରେ ଦାହ କରି ସେମାନେ ସେମାନଙ୍କର ପୁଞ୍ଜିଭୂତ ଅସନ୍ତୋଷ ପ୍ରକାଶ କଲେ । ପ୍ରକାଶିତ ରିପୋର୍ଟ ଅନୁସାରେ ଅସନ୍ତୋଷର ନିଆଁ ଏବେ ମଧ୍ୟ ଭିଲାଇର ଆକାଶକୁ ଆଚ୍ଛନ୍ନ କରି ରଖିଛି ।

ଆମ ସ୍ୱାଧୀନତାର ପଚାଶ ବର୍ଷ ଭିତରେ ଏ ପ୍ରକାର ଘଟଣା କେବେ ଘଟି ନ ଥିଲା । ପଚାଶ ବର୍ଷ ପୂର୍ବରୁ ଆମେ ଯେତେବେଳେ ପରାଧୀନତାର ଶୃଙ୍ଖଳ ଭିତରେ ଆବଦ୍ଧ ଥିଲୁଁ, ସେତେବେଳେ ମଧ୍ୟ ମହାମାନ୍ୟ ବିଚାରପତିମାନଙ୍କ ପ୍ରତି ଏ ପ୍ରକାର ଅଶୃଙ୍ଖଳିତ କ୍ରୋଧ କେବେ ପ୍ରକାଶ କରି ନ ଥିଲୁଁ । ଭାରତ ବାହାରେ ବା ପୃଥିବୀର ଅନ୍ୟତ୍ର କେଉଁଠି କେବେ ନ୍ୟାୟପାଳିକା ବିରୁଦ୍ଧରେ ଏପରି ଅସୌଜନ୍ୟ ବିଷୋଦ୍‌ଗାର ହୋଇ ଥିବାର କିଛି ନଜିର ମଧ୍ୟ ଆମ ପାଖରେ ନାହିଁ । ତାର କାରଣ ପୃଥିବୀର ସର୍ବତ୍ର ସବୁ ସମୟରେ ଏବଂ ପ୍ରତ୍ୟେକ ଶାସନରେ ନ୍ୟାୟ ପାଳିକାର ଏକ ସମ୍ମାନ ଜନକ ସ୍ଥାନ ରହି ଆସିଛି । ତେଣୁ ତା' ବିରୋଧରେ ଅସନ୍ତୋଷ ପ୍ରକାଶ କରିବା ଆମର ଚିରାଚରିତ ସଂସ୍କୃତିର ବାହାରେ ।

ଖୁବ୍ ବେଶିରେ ଆମେ ସଭା ସମିତି ବା ଗଣ ମାଧ୍ୟମରେ କେବେ କେବେ ଅସନ୍ତୋଷ ପ୍ରକାଶ କରି ଥାଉଁ । ଆଲୋଚନା ଓ ସମାଲୋଚନା ଦ୍ୱାରା ନ୍ୟାୟପାଳିକାର ଭୂମିକାକୁ ଏକ ଗଠନମୂଳକ ଭଙ୍ଗୀରେ ସତର୍କ କରେଇ ଦେଇଥାଉଁ । ଏ ସବୁ ଅବଶ୍ୟ ଆମର ସାମ୍ବିଧାନିକ ଅଧିକାର । କହିବାର ବା ମତ ପ୍ରକାଶ କରିବାର ଅଧିକାର ସବୁ ଗଣତନ୍ତ୍ରରେ ସ୍ୱୀକୃତ । ତେଣୁ ତାର ଉପଯୋଗ କଲାବେଳେ ନ୍ୟାୟପାଳିକାର ଅସମ୍ମାନ ଆମର ଚିନ୍ତାର ବାହାରେ ।

ତେବେ ଏପରି ହେଲା କାହିଁକି ? ଏପରି କେଉଁ କାରଣ ଥିଲା ଯାହା ଜନ ସାଧାରଣଙ୍କର ଧୈର୍ଯ୍ୟର ବନ୍ଧ ଭାଙ୍ଗି ଦେଲା ? ଏପରି କେଉଁ ଲୁକ୍କାୟିତ କାରଣ ଥିଲା ଯାହା ପାଇଁ ସେମାନଙ୍କ ଅସନ୍ତୋଷର ଉଦ୍‌ଗୀରଣ ହେଲା ଏବଂ ଏପରି ଏକ ଅବସ୍ଥାକୁ ଆସିଲା ଯାହା ସେମାନଙ୍କର ସମସ୍ତ ଔପଚାରିକତାକୁ ଅନେକ ପଛକୁ ଫିଙ୍ଗି ଦେଲା ?

ଶଙ୍କର ଗୁହ ନିୟୋଗୀଙ୍କ ହତ୍ୟା ଘଟଣାରେ ଉଚ୍ଚ ନ୍ୟାୟାଳୟ କୋଉ ତଥ୍ୟ ଉପରେ ଭିତ୍ତି କରି ତାଙ୍କ ରାୟ ଦେଲେ କିମ୍ବା ସେ ସବୁ କେତେଦୂର ଯୁକ୍ତିଯୁକ୍ତ କି ନା କିମ୍ବା ତାଙ୍କ ଆଇନର ତର୍ଜମାରେ କେତେ ପରିମାଣରେ ‘Bias’ ରହିଛି କିନା ସେ ସବୁ ପ୍ରସଙ୍ଗକୁ ମୁଁ ଏଠାକୁ ଆଣିବାକୁ ଚାହୁଁନି । ଏବେ ତ ଆଇନ ଗୋଟାଏ କଥା ଓ ତାର ତର୍ଜମା ଆଉ ଗୋଟାଏ କଥା । ତେଣୁ ସେ ସବୁ ଅଛିଣ୍ଡା ପ୍ରଶ୍ନ ଭିତରକୁ ମୁଁ ନ ଯାଇ କେବଳ କୋଉ କାରଣରୁ ଲୋକେ ଧୀରେ ଧୀରେ ନ୍ୟାୟପାଳିକା ଠାରୁ ବିଶ୍ୱାସ ହରେଇ ବସୁଛନ୍ତି ତାରି ବିଷୟରେ ସାମାନ୍ୟ କିଛି ଉଲ୍ଲେଖ କରିବି ଏବଂ କିପରି ଭାବରେ ନ୍ୟାୟ ପାଳିକାରେ ଥିବା କିଛି ଲୋକ ଏପରି କେତେକ କାମ କରୁଛନ୍ତି ଯୋଉଥି ପାଇଁ ସେମାନେ ବେଳେବେଳେ ଲୋକଙ୍କ ଠାରେ ସମାଲୋଚନାର ପାତ୍ର ହେଉଛନ୍ତି ସେ କଥାରୁ ସାମାନ୍ୟ କିଛି ଏଠାରେ ଆଲୋଚନା କରିବି ।

ତେବେ ଗୋଟିଏ କଥା ସ୍ପଷ୍ଟ ହେଇ ଯାଇଚି ଯେ, ହାଇକୋର୍ଟଙ୍କ ରାୟ କେବଳ ଶ୍ରମିକ ଶ୍ରେଣୀକୁ ନୁହେଁ ବହୁ ଲୋକଙ୍କୁ ଅସୁଖୀ କରିଛି । ସିବିଆଇ ନିଜେ ଏଥିରେ ଅସନ୍ତୋଷ ପ୍ରକାଶ କରି ସୁପ୍ରିମକୋର୍ଟରେ ଅପିଲ କରିବ ବୋଲି କହିଥିବା ବେଳେ ମଧ୍ୟ ପ୍ରଦେଶର ଅନେକଗୁଡ଼ିଏ ଅନୁଷ୍ଠାନ ଏଥିରେ କ୍ଷୋଭ ପ୍ରକାଶ କରି ଜନ ଆନ୍ଦୋଳନକୁ ସମର୍ଥନ ଜଣାଇଛନ୍ତି ।

ଏବେ କଥା ଉପରକୁ ଆସୁଛି । ଭାରତର ସମ୍ବିଧାନରେ ଆମର ଯେଉଁ ତିନୋଟି ସ୍ତମ୍ଭ କଥା କୁହାଯାଇଛି ତା’ଭିତରୁ ନ୍ୟାୟ ପାଳିକା ଗୋଟିଏ । ଅନ୍ୟ ଦୁଇଟି ସ୍ତମ୍ଭ ଗତ ପଚାଶ ବର୍ଷ ଭିତରେ ଏପରି ଭାବରେ ବାରମ୍ବାର ଆଘାତ ପାଇଛି ଯେ ସେଥିରେ ସେ ଦୁଇଟି ଯାକ ସ୍ତମ୍ଭ ଭାଙ୍ଗି ଚୁରମାର୍ ହୋଇ ଯାଇଛି । ବସ୍ତୁତଃ ଆମର ସମ୍ବିଧାନର ସ୍ଥିତି ଏ ଯାଏ କେବଳ ଗୋଟିଏ ସ୍ତମ୍ଭ ଉପରେ ନିର୍ଭର କରୁଥିଲା । ଆମ ଦେଶର ଗୋଟିଏ

ବୈଚିତ୍ର୍ୟ ହେଲା ଆମ ନେତାମାନେ ଯେଉଁଦିନ ସମ୍ବିଧାନ ତିଆରି କଲେ ସେଇଦିନୁ ତାକୁ ଭାଙ୍ଗି ଖଣ୍ଡ ଖଣ୍ଡ କରିବାର ଉପାୟ ମଧ୍ୟ ଚିନ୍ତା କରିବାକୁ ଲାଗିଲେ । ଆଇନଟିଏ ତିଆରି ହେଇ ସାରିଲା ବେଳକୁ ତାକୁ ଭାଙ୍ଗିବାକୁ ଯୋଜନା ମଧ୍ୟ ତିଆରି ସରିଥାଏ । ତେଣୁ ଅତି ସାଧାରଣ ଭାବେ ଏବେ କୁହା ଗଲାଣି ଯେ, ଭାରତରେ ଆଇନ ତିଆରି ହୁଏ କେବଳ ଭାଙ୍ଗିବାକୁ । ତେବେ ସେ ଯା ହେଉ ସମ୍ବିଧାନର ଦୁଇଟି ସ୍ତମ୍ଭ ଭାଙ୍ଗିଗଲା ପରେ ତୃତୀୟ ସ୍ତମ୍ଭଟି ଉପରେ ମଧ୍ୟ ଘନ ଘନ ଆକ୍ରମଣ ଆରମ୍ଭ ହେଲା । ସେ ଆକ୍ରମଣ ଆହୁରି ଜୋରଦାର୍ ହେଲା ଇନ୍ଦିରା ଗାନ୍ଧୀଙ୍କ ଏମାର୍‌ଜେନ୍‌ସି ସମୟରେ ।

ଇନ୍ଦିରାଗାନ୍ଧୀ ଖୋଲାଖୋଲି ଭାବରେ ନ୍ୟାୟପାଳିକା ଉପରେ ଆକ୍ରମଣ କରି ତାର ମେରୁଦଣ୍ଡକୁ ଭାଙ୍ଗି ଖଣ୍ଡ ଖଣ୍ଡ କରି ଦେବାକୁ ଚେଷ୍ଟା କଲେ । ସେ ପ୍ରକ୍ରିୟାକୁ ଅଧିକ ପ୍ରଭାବଶାଳୀ କରିବା ପାଇଁ ସେ ହାଇକୋର୍ଟ ଓ ସୁପ୍ରିମକୋର୍ଟର ବିଚାରପତିମାନଙ୍କୁ ମନଇଚ୍ଛା ବଦଳି କରି ଓ ପ୍ରମୋଶନ ଦେଇ ନିଜକୁ ସୁବିଧାଜନକ ସ୍ଥାନରେ ରଖିଲେ । କେତେକ କ୍ଷେତ୍ରରେ ସାଧୁତା, ନିଷ୍ପାପରତା ଓ ନିରପେକ୍ଷତା ପ୍ରଭୃତି ନିଯୁକ୍ତିରେ ଥିବା ମାନଦଣ୍ଡଗୁଡ଼ିକୁ ଦୂରକୁ ଫିଙ୍ଗି ଦେଇ ସଂପୂର୍ଣ୍ଣ ସ୍ୱାର୍ଥବାଦୀ ଓ ଅସାଧୁ ଲୋକମାନଙ୍କୁ ନ୍ୟାୟପାଳିକା ଭିତରକୁ ନେଇ ଆସିଲେ । ସେମାନଙ୍କୁ ରାଜନୀତି ଓ ରାଜନୀତି ସହିତ ଓତଃପ୍ରୋତ ଭାବରେ ଜଡ଼ିତ ଥିବା ଦୁର୍ନୀତି ସହିତ ସାମିଲ ହେବାକୁ ଚାପ ପ୍ରୟୋଗ କଲେ । ସେମାନଙ୍କୁ ଲିଖିତ ଆଇନକୁ ଏକ ଦିବାସ୍ୱପ୍ନ ବୋଲି ମନେକରି ଅଲିଖିତ ବା କଥିତ ଆଦେଶକୁ ଆଇନ ବୋଲି ଭାବି କାମ କରିବାକୁ ନିର୍ଦ୍ଦେଶ ଦେଲେ । ଅନ୍ୟଥା ଫଳ ଭୋଗିବାକୁ ପଡ଼ିବ ବୋଲି ମଧ୍ୟ କହିଲେ ।

ସେଇ ଦିନଠୁ ନ୍ୟାୟପାଳିକାର ସ୍ୱାଧୀନତା ଅପହୃତ ହେଲା । କିନ୍ତୁ ରାଜନେତାମାନେ ସେତିକି ଯଥେଷ୍ଟ ନୁହେଁ ବୋଲି ମନେ କଲେ । ସେମାନେ ନ୍ୟାୟପାଳିକାକୁ ସେମାନଙ୍କର ଏକାନ୍ତ ବଶମ୍ବଦ କରିବା ପାଇଁ ପ୍ରବଳ ଚାପ ସୃଷ୍ଟି କଲେ । ଏପରିକି ହାୱାଲା ଏବଂ ଅନ୍ୟାନ୍ୟ କେତେକ ଲାଞ୍ଚ କାରବାରରେ ଜଡ଼ିତ ହେଇଥିବା ରାଜନେତାମାନେ ଯେତେବେଳେ ଅତି ଶୋଚନୀୟ ଭାବେ ଧରା ପଡ଼ିଗଲେ ଏବଂ ଆଇନ ଜାଲରେ ଛନ୍ଦି ହୋଇ ଛଟପଟ ହେବାକୁ ଲାଗିଲେ ସେତେବେଳେ ଚନ୍ଦ୍ରଶେଖର ସମେତ ବହୁ ନେତା ଅତି ଖୋଲାଖୋଲି ଭାବେ ନ୍ୟାୟପାଳିକାକୁ ଆକ୍ରମଣ କଲେ । ଏହି ସମୟରେ ଚନ୍ଦ୍ରଶେଖରଙ୍କ ଲଜ୍ଜାହୀନତା ଏତେ ତଳକୁ ଖସିଗଲା ଯେ, ସେ ଅସଂଖ୍ୟ ହୀନ ଅପରାଧରେ ଜଡିତ ଚନ୍ଦ୍ରସ୍ୱାମୀକୁ ସମର୍ଥନ କରି ବିବୃତି ଦେଲେ । ଆଗରୁ କହିଛି, ରାଜନେତାମାନେ ନୀତିହୀନ ହେଇ ପଡ଼ିବାରୁ ସେମାନେ ନୀତିହୀନମାନଙ୍କୁ ଆଣି ନ୍ୟାୟପାଳିକା ଭିତରେ ରଖିବାକୁ ଚାହିଁଲେ । ଏବେ ଆମେ ଭି. ରାମସ୍ୱାମୀଙ୍କ କଥା ବିଚାରକୁ ନେବା । ଭାରତରେ ନ୍ୟାୟ ପାଳିକାର ଇତିହାସରେ ସେ ଏକ ନୂତନ ଅଧ୍ୟାୟ

ସୃଷ୍ଟି କରିଛନ୍ତି । ନିଜର ବ୍ୟକ୍ତିଗତ ସ୍ୱାର୍ଥର ସୁରକ୍ଷା ପାଇଁ ସରକାରୀ ତହବିଲରୁ ସେ ବହୁ ଅର୍ଥ ବେଆଇନ ଭାବେ ଖର୍ଚ୍ଚ କରିବାର ଅଭିଯୋଗ ହେଲା ପରେ ମଧ୍ୟ ତାଙ୍କୁ ପଂଜାବ ଓ ହରିଆନା ହାଇକୋର୍ଟର ମୁଖ୍ୟ ବିଚାରପତି ପଦରୁ ସୁପ୍ରିମକୋର୍ଟକୁ ବଦଳି କରାଗଲା । ତାଙ୍କ ବିରୋଧରେ ଯେତେବେଳେ ଜନମତ ପ୍ରବଳ ହେଲା ସେତେବେଳେ ଜଷ୍ଟିସ୍ ପି.ବି.ସାୱନ୍ତଙ୍କ ନେତୃତ୍ୱରେ ଗଠିତ ବିଚାରକ ମଣ୍ଡଳୀ ଅଭିଯୋଗ ଗୁଡ଼ିକର ତଦନ୍ତ କଲେ ଏବଂ ରାମସ୍ୱାମୀଙ୍କୁ ଦୋଷୀ ସାବ୍ୟସ୍ତ କଲେ । କଥା ଶେଷରେ ପାର୍ଲାମେଣ୍ଟକୁ ଗଲା । କିନ୍ତୁ ସେତେବେଳକୁ ରାଜନୀତିରେ ଅନୀତିଟା ଏତେ ଶକ୍ତିଶାଳୀ ହୋଇ ସାରିଥିଲା ଯେ ପାର୍ଲାମେଣ୍ଟ ତାଙ୍କୁ ଦୋଷୀ ବୋଲି କହି ପାରିଲେ ନାହିଁ । ଅଧିକନ୍ତୁ ସେ ଜଣେ ଅତ୍ୟନ୍ତ ସାଧୁ, ସଚ୍ଚୋଟ ତଥା ନିଷ୍ଠାପର କର୍ମୀ ଭାବରେ ନ୍ୟାୟପାଳିକାରୁ ଅବସର ନେଲେ । ଅବସର ନେଲା ପରେ ତାଙ୍କ ଅପରାଧପ୍ରବଣ ମନ ଅଧିକ ସ୍ୱାଧୀନ ହୋଇଗଲା ଏବଂ ତାର ସଦୁପଯୋଗ କରିବାକୁ ତାମିଲନାଡୁର ନେତୃତ୍ୱ ଉତ୍ତୀର୍ଣ୍ଣ ହୋଇ ଉଠିଲେ । ତତ୍କାଳୀନ ମୁଖ୍ୟମନ୍ତ୍ରୀ ଜୟଲଳିତା ରାମସ୍ୱାମୀଙ୍କୁ ସଙ୍ଗେ ସଙ୍ଗେ ତାମିଲନାଡୁ ଆଇନ କମିଶନର ଚେଆର୍‌ମେନ୍ କରି ଦେଲେ । ଫଳରେ ରାମସ୍ୱାମୀଙ୍କ ବିଶାଳକାୟ ଫଟୋସବୁ ମାଡ୍ରାସ ହାଇକୋର୍ଟର କାନ୍ଥ ମାନଙ୍କରେ ଶୋଭା ପାଇବାକୁ ଲାଗିଲା ।

ରାମସ୍ୱାମୀଙ୍କ 'ରାମ ରାଜ୍ୟ'ର ସୀମା ଆହୁରି ଅନେକ ଦୂରକୁ ଲମ୍ବିଗଲା । ସହରର କେନ୍ଦ୍ର ସ୍ଥଳରେ ତାଙ୍କର ଗୋଟାଏ ବିରାଟ କୋଠା ଥିଲା । ସେ କୋଠାଟି ଭଡାରେ ଲାଗିଥିଲା । କିନ୍ତୁ ଭଡ଼ାବାଲା ଘରଟି ନ ଛାଡ଼ିବାରୁ ଦିନେ ରାମସ୍ୱାମୀ ନିଜେ ଯାଇ ବନ୍ଧୁକ ଦେଖାଇ ଘର ନ ଛାଡିଲେ ଜୀବନରେ ମାରି ଦେବାକୁ ଧମକ ଦେଲେ । ଭଡାବାଲା ଯାଇ ଥାନାରେ ରାମସ୍ୱାମୀଙ୍କ ବିରୁଦ୍ଧରେ ଏତାଲା ଦେଲେ । କିନ୍ତୁ ପୋଲିସ୍ ତାକୁ ଗ୍ରହଣ କଲେ ନାହିଁ । ଅନ୍ୟ ଉପାୟ ନ ଦେଖି ଭଡ଼ାବାଲା ଯାଇ ହାଇକୋର୍ଟରେ ଅପିଲ କଲେ । ହାଇକୋର୍ଟ ମାମଲାର ବିଚାର ପାଇଁ ଯେଉଁ ଜଜ୍‌ଙ୍କୁ ନିଯୁକ୍ତ କଲେ ସେ ତାର ବିଚାର କରି ପାରିବେ ନାହିଁ ବୋଲି ନିଜର ଅକ୍ଷମତା ପ୍ରକାଶ କଲେ । ଜଣ ଜଣ କରି ତିନିଜଣ ଜଜ୍ ନିଜର ଅକ୍ଷମତା ପ୍ରକାଶ କଲେ । ସେମାନେ ଏପରି କାହିଁକି କଲେ, ଯାହାକି ଶପଥ ପାଠର ବିରୁଦ୍ଧାଚରଣ କରୁଛି, ସେ ବିଷୟରେ କେହି ତାଙ୍କୁ କିଛି ପଚାରି ପାରିଲେ ନାହିଁ । ଜଜ୍‌ମାନେ ଶପଥପାଠ ବେଳେ "Without fear or favour"ରେ କାମ କରିବେ ବୋଲି କହି ଥାଆନ୍ତି । କିନ୍ତୁ ଏ କ୍ଷେତ୍ରରେ ଅସ୍ୱାଭାବିକ ଭାବେ ସମସ୍ତେ ଚୁପ୍ ରହିଲେ । ନ୍ୟାୟ ପାଳିକାକୁ ନିଜ ଅକ୍ତିଆରକୁ ଆଣିବାର ଏହା ଏକ ଅଭିନବ ଉପାୟ । ରାମସ୍ୱାମୀଙ୍କ ପଛରେ ସରକାର ଥିଲେ । ମୁଖ୍ୟମନ୍ତ୍ରୀଙ୍କର ଦୃଢ଼ ସମର୍ଥନ ଥିଲା । ସେଇ ଭୟରେ ସେମାନେ ମୁହଁ ଖୋଲି ନ ଥିଲେ ।

୧୯୯୦ରେ ବମ୍ବେ ହାଇକୋର୍ଟରେ ଘଟିଥିବା ଜଷ୍ଟିସ୍ ଶରଦ ଦେଶାଇ ଏବଂ ଜଷ୍ଟିସ୍ ମଧୁକର କେନିଆ ପ୍ରସଙ୍ଗ ସେତେବେଳେ ଦେଶରେ ଚହଳ ସୃଷ୍ଟି କରିଥିଲା । କେଉଁ କାରଣରୁ ଏବଂ କିପରି ଭାବରେ ଜଷ୍ଟିସ୍ କେନିଆଙ୍କ ଅଫିସ ପାଖରୁ ୧.୫ ଲକ୍ଷ

ଟଙ୍କା ଉଦ୍ଧାର ହେଲା ଏବଂ କାହିଁକି ସେ କୋର୍ଟ ପରିସର ଭିତରେ ଧାରଣା ଦେବେ ବୋଲି କହିଲେ ସେ ସବୁ କଥାର ପୁନରାବୃତ୍ତି ଏବେ ଅନାବଶ୍ୟକ । କାରଣ ଘଟଣାଟି ସେତେବେଳେ ସୁପ୍ରିମ୍‌କୋର୍ଟର ମୁଖ୍ୟ ବିଚାରପତିଙ୍କ ସମେତ ରାଷ୍ଟ୍ରପତିଙ୍କୁ ମଧ୍ୟ ବ୍ୟଥିତ କରିଥିଲା ।

ନ୍ୟାୟପାଳିକାରେ ଦୁର୍ନୀତିର ତାଲିକା ଏତିକିରେ ସରି ନାହିଁ । ଏମାନଙ୍କୁ ଛାଡି ଜଷ୍ଟିସ୍ ଭି.ଏସ୍.କୋଟାୱାଲ, ଶରଦ ମନୋହର ଏବଂ ଜି.ଏଚ୍. ଗୁର୍ଚ୍ଚଲଙ୍କ ବିରୋଧରେ ମଧ୍ୟ ସେତେବେଳେ ବମ୍ବେ ବାର ଏସୋସିଏସନ୍‌ର କର୍ମକର୍ତ୍ତାମାନେ ବହୁ ଗୁରୁତର ଅଭିଯୋଗ ଆଣିଥିଲେ । ସେ ଅଭିଯୋଗ ଭିତରେ ଜଷ୍ଟିସ ମନୋହର ଆୟ ବର୍ହିଭୂତ ସମ୍ପତ୍ତି ଠୁଳ କରିବା, ଜଷ୍ଟିସ୍ ଗୁର୍ଚ୍ଚଲ କୁଆଡ଼େ ନିଶା ଦ୍ରବ୍ୟ (ନାର୍‌କୋଟିକ୍‌ସ୍) ଚାଲାଣକାରୀ ଏବଂ କୁଖ୍ୟାତ ଅପରାଧୀମାନଙ୍କ ଜାମିନ ପାଇଁ ପୁଲିସର ବିରୋଧ ସତ୍ତ୍ୱେ ଅତ୍ୟଧିକ ଯତ୍ନ ନେବା ଏବଂ ଭି.ଏସ୍. କୋଟାୱାଲ କେତେକ ବିବାଦମାନ ମାମଲାରେ ପକ୍ଷକୁ ସାହାଯ୍ୟ କଲାଭଳି ରାୟ ଦେବାର ଅଭିଯୋଗ ହୋଇଥିଲା ।

ଏବେ ତ ପରିସ୍ଥିତି ଆହୁରି ଖରାପ ହେଲାଣି । ରାମ ଜେଠମାଲାନୀ ଥରେ କହିଥିଲେ "There are only two types of Judges : Those who know the law. And those who know the Law Minister." ଏହି କାରଣରୁ ଏବେ ଜେଲ୍ ଭିତରେ ରହି ଅପରାଧୀମାନେ ସେଲୁଲାର ଫୋନ୍‌ରେ କୋଉ ବେଞ୍ଚରେ କୋଉ ଜଜ୍‌ମାନେ ରହିବେ ତାହା ସ୍ଥିର କରନ୍ତି । ଆଇନକୁ ନିଜ ବାଟକୁ ଆଣିବାକୁ ଏହା ଆଉ ଏକ ରାସ୍ତା ।

ଏବେ ଜଜ୍‌ମାନଙ୍କ ପାଇଁ Code of conduct ପ୍ରସ୍ତୁତ ହେଉଛି ଏବଂ ଜାତୀୟ ଆଇନ କମିଶନ ମଧ୍ୟ ଗଠିତ ହେଉଛି । ଆମ ଦେଶରେ କମିଶନର ଅଭାବ ନାହିଁ । କିନ୍ତୁ କୋଉ କମିଶନ ଜନତାର ସ୍ୱାର୍ଥ ରକ୍ଷାକରେ ? ସେମାନେ ସବୁବେଳେ ରାଜନୈତିକ ସ୍ୱାର୍ଥକୁ ପ୍ରଥମେ ରକ୍ଷା କରନ୍ତି । ସମସ୍ତ ନୈତିକତାକୁ ଜଳାଞ୍ଜଳି ଦେଇ ଯଦି ମୁଖ୍ୟ ବିଚାରପତିମାନେ ଅବସର ନେଲାପରେ ପୁଣି ରାଜନୀତିରେ ଯୋଗଦେଇ କମିଶନରେ ପଶନ୍ତି ତେବେ ସେମାନେ କୋଉ ସ୍ୱାର୍ଥକୁ ଜଗିବେ ?

ଏହା ହିଁ ଆଜି ଆମ ଆଗରେ ସତ୍ୟ । ସାଧାରଣ ଜନତାର ମୁକ୍ତିର ପଥ କମିଶନରୁ ମିଳିବ ନାହିଁ । କୋଉ ରାଜନୈତିକ ଦଳର ସତ୍ ସାହସ ଅଛି ସେ ନ୍ୟାୟାଳୟକୁ ସଂପୂର୍ଣ୍ଣ ସ୍ୱାଧୀନତା ଦେଇ ବେକରେ ଫାଶଟା ଲଗେଇ ରଖିବ ? ପ୍ରାୟ ଦୁଇ ଦଶନ୍ଧି ତଳେ ଗଠିତ ପଞ୍ଚାୟତ ଆଇନରେ ଗ୍ରାମ ପଞ୍ଚାୟତମାନଙ୍କୁ କେତେକ ସ୍ୱାଧୀନତା ଦିଆ ଯାଇଚି । କିନ୍ତୁ ସେତକ ମଧ୍ୟ କାର୍ଯ୍ୟକାରୀ ହୋଇ ପାରୁନି । ଯେଉଁ ସରକାର ସାମାନ୍ୟ ପଞ୍ଚାୟତଟିକୁ ସ୍ୱାଧୀନତା ଦେଉ ନାହିଁ ସେ ନ୍ୟାୟାଳୟକୁ କେମିତି ଦେବ ? ◘

(ପ୍ରଗତିବାଦୀ - ୨୩.୬.୯୮)

# ନାରୀ ନିର୍ଯାତନା, କାରଣ ଓ ନିରାକରଣ

ଚଳିତ ବିଧାନସଭା ଅଧିବେଶନରେ ମୁଖ୍ୟମନ୍ତ୍ରୀ ଘରୋଇ ବିଭାଗ ଖର୍ଚ୍ଚ ଦାବି ଉପରେ ଆଲୋଚନା ବେଳେ ରାଜ୍ୟରେ ଘଟିଥିବା ଅପରାଧର ଯୋଡ଼ ହିସାବ ଦାଖଲ କରିଥିଲେ, ତାହା ସମସ୍ତଙ୍କ ପାଇଁ ଏକ ଚିନ୍ତାର ବିଷୟ ହୋଇଛି । ଏହି ହିସାବରେ କେବଳ ନାରୀକୈନ୍ଦ୍ରିକ ଅପରାଧର ଯୋଡ଼ ହିସାବ ଦିଆ ଯାଇଛି ତାହା ହେଲା ଧର୍ଷଣ ୪୬୮, ଅପହରଣ ୨୨୯, ଯୌତୁକ ହତ୍ୟା ୨୫୫, ଯୌତୁକ-ଆତ୍ମହତ୍ୟା ୨୭, ଯୌତୁକ ନିର୍ଯାତନା ୬୭୩, ଅସଦାଚରଣ ୧୦୫୬, ଅଶ୍ଳୀଳ ଇଙ୍ଗିତ ୧୦୨, ଅଣ ଯୌତୁକ ନିର୍ଯାତନା ୩୪୩ ଏବଂ ଅପମୃତ୍ୟୁ (ନାରୀ ଓ ପୁରୁଷ) ୫୨୯୯ । ଏହି ହିସାବ କେବଳ ୭ ମାସର ଅର୍ଥାତ୍ ଏପ୍ରିଲ ୧ ଠାରୁ ଅକ୍ଟୋବର ୩୧ ପର୍ଯ୍ୟନ୍ତ । ପୁଲିସ ବିଭାଗର ଏହି ରିପୋର୍ଟରେ ନାରୀକୈନ୍ଦ୍ରିକ ଅପରାଧକୁ ରୋକିବା ପାଇଁ ସେମାନଙ୍କ ଅସହାୟତା ମଧ୍ୟ ପ୍ରକାଶ ପାଇଛି । ସେମାନେ ବରାବର ଏ କଥା କହି ଆସୁଛନ୍ତି ଯେ, ସ୍ତ୍ରୀ ଓ ପୁରୁଷର ଅବାଧ ମିଳାମିଶା ଏବଂ ମଦ ଓ ଅନ୍ୟାନ୍ୟ ନିଶାଦ୍ରବ୍ୟର ବ୍ୟବହାର ଏବର ସମାଜରେ ଯେଉଁ ପରିବର୍ତ୍ତନ ଆଣିଛି ତାହା ଫଳରେ ନାରୀ ନିର୍ଯାତନା ବଢୁଛି । କେଉଁଠି କେତେବେଳେ ସ୍ତ୍ରୀ ଓ ପୁରୁଷର ସମ୍ପର୍କ ସ୍ଥାପିତ ହେବ ଏବଂ ତାର ପରିଣତି କେଉଁଆଡକୁ ଗତି କରିବ ସେ କଥା କାହାରି ନିୟନ୍ତ୍ରଣରେ ନ ଥାଏ । ପୁଲିସ ମତରେ ଏହା ପ୍ରଫେସନାଲ୍ ଅପରାଧ ନୁହେଁ । ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ ବା ଏରିଆରେ ଏହା ହୁଏ ନାହିଁ କିମ୍ବା ନିର୍ଦ୍ଦିଷ୍ଟ କେତେଜଣଙ୍କ ଦ୍ୱାରା ମଧ୍ୟ ହୁଏ ନାହିଁ । ନିଜ ଇଚ୍ଛାରେ ହେଉ ବା ଅନିଚ୍ଛାରେ ହେଉ ମଣିଷ କେତେବେଳେ ଏବଂ କେଉଁଠି ତାର ଦୁର୍ବଳତାର ବଶବର୍ତ୍ତୀ ହୋଇଯିବ ସେ କଥା ପୁଲିସ କେମିତି ଜାଣିବ ? ପ୍ରତ୍ୟେକ ନାରୀକୈନ୍ଦ୍ରିକ ଅପରାଧ ପଛରେ ଥାଏ ମଣିଷ ମନର ବିଚିତ୍ର ମାନସିକତା । ଆଇନ ଅନୁସାରେ, ଯାହା ମଣିଷ ମନରେ ଥାଏ ତାହା ଅପରାଧ ନୁହେଁ । ମନରୁ ବାହାରି ତାହା ଯୋଜନାରେ ପରିଣତ ହେବା ଠାରୁ ଆରମ୍ଭ କରି କାର୍ଯ୍ୟ ସମ୍ପନ୍ନ ହେବା ପର୍ଯ୍ୟନ୍ତ କାମକୁ ଅପରାଧ କୁହାଯିବ ।

ଏଇ କିଛିଦିନ ତଳେ ଆଲ୍ଲାହାବାଦ ହାଇକୋର୍ଟ ଗୋଟିଏ ମାମଲାର ବିଚାର କରି କହିଲେ ଯେ, ଯେ କୌଣସି ପୁରୁଷ ଓ ସ୍ତ୍ରୀ ବୈବାହିକ ବନ୍ଧନରେ ଆବଦ୍ଧ ନ ହୋଇ ମଧ୍ୟ ଯେ କୌଣସି ଜାଗାରେ ଯେତେଦିନ ଇଚ୍ଛା ରାତ୍ରୀଯାପନ କରି ପାରିବେ । ଏ କଥାଟା ପୁଲିସର ହାତଟାକୁ ଆହୁରି ଢ଼ିଲା କରିଦେବ କି ନା ସେ କଥା ଆଇନର ତର୍ଜମା ଉପରେ ନିର୍ଭର କରେ । ମଣିଷ ମନର ସ୍ୱେଚ୍ଛାଚାରୀ ଦିଗଟା ଏହାଦ୍ୱାରା ଭାରତର

ସାମାଜିକ ଓ ସାଂସ୍କୃତିକ ପ୍ରେକ୍ଷାପଟକୁ ପଛରେ ପକେଇ ଅଧିକ ବଳଶାଳୀ ହେଲା ବୋଲି କୁହା ଯାଉଛି । ଏଥିପାଇଁ ଆମେ କାହାକୁ ଦାୟୀ କରିବା କି ନା ତାହା ଏକ ଭିନ୍ନ ପ୍ରଶ୍ନ । କିନ୍ତୁ ନାରୀକୈନ୍ଦ୍ରିକ ଅପରାଧ ଯେ ଆସ୍ତେ ଆସ୍ତେ ଆମ ଆଗରେ ଗୋଟାଏ ଦୃଢ଼ ଭିତ୍ତିଭୂମି ତିଆରି କରୁଛି ଏଥିରେ ସନ୍ଦେହ ନାହିଁ । ମନେ ହେଉଛି, ଯେଉଁ ଗତିରେ ଏହା ଚାଲୁଛି ତାହା ଆଉ କିଛିଦିନ ପରେ 'ଅପରାଧ' ନାମ କରଣ ହରାଇବ ଏବଂ ତା' ବଦଳରେ ଏକ 'ମାନସିକ ଆବଶ୍ୟକତା'ରେ ପରିଣତ ହେବ । ତାକୁ ଏକ 'ହବି' ବା 'ସାଧାରଣ କଥା' ବୋଲି କୁହାଯିବ । ଅପରାଧର ଗୁରୁତ୍ୱ ଆଉ ସେଥିରେ ନ ଥିବ ।

ପୁରାଣରେ ବଂଶରକ୍ଷା ଉଦ୍ଦେଶ୍ୟରେ ପରପୁରୁଷକୁ ନିମନ୍ତ୍ରଣ ଏବଂ ଅନ୍ୟ କେତେକ କ୍ଷେତ୍ରରେ ନାରୀର ସତୀତ୍ୱ ଅପହରଣକୁ ସାମାଜିକ ସ୍ୱୀକୃତି ମିଳିଛି । ନାରୀକୁ ଇଚ୍ଛା ଅନୁସାରେ ଉପଭୋଗ କରିବାକୁ ସ୍ୱୀକୃତି ଦିଆ ଯାଇଛି । ଏବେ ପାଶ୍ଚାତ୍ୟ ସଭ୍ୟତାରେ ଏହି ଅବାଧ ମିଳାମିଶା ଜନିତ ଯେଉଁ ସାମାଜିକ ସ୍ଖଳନ ଦେଖା ଦେଇଛି ତାକୁ ସେ ସମାଜ ସ୍ୱୀକୃତି ଦେଉ ନ ଥିଲେ ମଧ ସ୍ୱାଭାବିକ ଭାବେ ଗ୍ରହଣ କରି ନେଉଛି । ଅବିବାହିତ ମାତୃତ୍ୱକୁ ଆମ ପାଶ୍ଚାତ୍ୟ ଜଗତ ଗ୍ରହଣ କରୁଛି । ଏପରିସ୍ଥଳେ ଆମ ଭାରତୀୟ ସମାଜ ଏବେ ପୁରାଣକୁ ଅନୁସରଣ କରୁଛି କି ଗ୍ଲୋବାଲାଇଜେସନ୍ ମାଧ୍ୟମରେ ପାଶ୍ଚାତ୍ୟ ସଭ୍ୟତାକୁ ଗ୍ରହଣ କରୁଛି ତାକୁ ବିଚାର କରା ଯାଇ ପାରେ ।

ବିଧାନସଭାରେ ଉପସ୍ଥାପିତ ପୁଲିସ ରିପୋର୍ଟରେ ନାରୀକୈନ୍ଦ୍ରିକ ଅପରାଧ ପାଇଁ ମୁଖ୍ୟତଃ ଅବାଧ ମିଳାମିଶା ଓ ଅବାଧ ମଦର ବ୍ୟବହାରକୁ ଦାୟୀ କରା ଯାଇଛି । ଏ ବିଷୟରେ ଆମର ମାନ୍ୟବର ସଦସ୍ୟମାନେ କଅଣ ଆଲୋଚନା କଲେ ଏବଂ ତାର ପ୍ରତିକାର ସମ୍ପର୍କରେ କି ବ୍ୟବସ୍ଥା ଗ୍ରହଣ କଲେ ସେ କଥା ଅବଶ୍ୟ ଆମେ ଜାଣୁନା । ବିଶେଷ କରି ପୁଲିସ ଯେତେବେଳେ ତାର ହାତ ସଫା କରି ବସିଗଲା ସେତେବେଳେ ଆମର ନୀତି ନିୟମ ପ୍ରଣେତାମାନେ ଏ ଗୁରୁତର ବିଷୟଟି ଉପରେ କି ସିଦ୍ଧାନ୍ତ ଗ୍ରହଣ କଲେ ଆମେ ଜାଣୁନା । ହୁଏତ ସେମାନେ ଭାବିଥବେ ଯେ ଏହା ପୂରାପୂରି ସମାଜର ଦୋଷ, ତେଣୁ ସେ ଦାୟିତ୍ୱ ତା'ର । ସେମାନେ ଭାବୁଥିବେ ସାମାଜିକ ଦୋଷ ଦୁର୍ବଳତା ସହିତ ସେମାନଙ୍କର ବା କି ସମ୍ପର୍କ । ସେମାନେ ଏଥିପାଇଁ କାହିଁକି ମୁଣ୍ଡ ବଥେଇବେ ? ଅନ୍ୟ ପକ୍ଷରେ ଦେଖିବାକୁ ଗଲେ ପ୍ରତ୍ୟେକ ଅପରାଧ ପାଇଁ ସମାଜର ବ୍ୟବସ୍ଥା ଓ ଅବ୍ୟବସ୍ଥା ଦାୟୀ । ନାରୀକୈନ୍ଦ୍ରିକ ଅପରାଧକୁ ତା'ଠୁ ଅଲଗା କରି ହେବ ନାହିଁ । ତେଣୁ କେଉଁ କେଉଁ 'ବ୍ୟବସ୍ଥା ଓ ଅବ୍ୟବସ୍ଥା' ପାଇଁ ସମାଜରେ ଏ ସ୍ଖଳନ ଦେଖା ଯାଉଛି ତାହା ଗଣତାନ୍ତ୍ରିକ ବିଧି ବ୍ୟବସ୍ଥାରେ ଲୋକ ପ୍ରତିନିଧିମାନେ ହିଁ ପ୍ରଥମେ ଚିନ୍ତା କରିବା ଉଚିତ୍ । ସେମାନେ ଗୋଟିଏ ସୁସ୍ଥ ଓ ସୁନ୍ଦର ସମାଜ ତିଆରି କରିବାର ଦାୟିତ୍ୱ ନେଇଥିବା ଦୃଷ୍ଟିରୁ ଏହା ତାଙ୍କର ପ୍ରଥମ କାମ । ଖାଲି ଆଇନ ପ୍ରଣୟନ କରି ଦେଲେ କାମ ସରିଯାଏ

ନାହିଁ । ଆଇନର କାର୍ଯ୍ୟକାରିତା ପାଇଁ ଆବଶ୍ୟକ ହେଉଥିବା ବାତାବରଣ ସୃଷ୍ଟି କରିବା କାମ ମଧ୍ୟ ସେମାନଙ୍କର ।

ତାଙ୍କ ପଛକୁ ଥାଆନ୍ତି ସମାଜ ବିଜ୍ଞାନୀମାନେ । ଯେ କୌଣସି ସାମାଜିକ ସମସ୍ୟାର ବୈଜ୍ଞାନିକ ବିଶ୍ଳେଷଣ କରି ତାର ନିରାକରଣ ପାଇଁ ରାସ୍ତା ବାହାର କରିବା କାମ ସେମାନଙ୍କର । ତାହା ହିଁ ସେମାନଙ୍କର ସାମାଜିକ ଦାୟିତ୍ୱ । ସବୁ ଦେଶରେ ଓ ସବୁ ସମାଜରେ ଏଇ ସାମାଜିକ ଅନୁଷ୍ଠାନମାନେ ସବୁବେଳେ ଅଗ୍ରଣୀ ଥାଆନ୍ତି । କିନ୍ତୁ ଆମ ଦେଶରେ ସେ କଥା ହୁଏ ନାହିଁ । ପ୍ରଶାସନ ଓ ରାଜନୈତିକ ନେତୃତ୍ୱ ଯେତିକି ସମାଜ ଠାରୁ ନିଜକୁ ଅଲଗା କରି ରଖନ୍ତି ବୁଦ୍ଧିଜୀବୀ ମହଲ ମଧ୍ୟ ସେତିକି ଦୂରତ୍ୱ ରକ୍ଷା କରି ଚାଲନ୍ତି । ଆମ ଦେଶରେ ପୂରାକାଳରେ ସେପରି ହେଉ ନ ଥିଲା । ଶାସନଟା ରାଜାମାନଙ୍କ ହାତରେ ଥିଲେ ମଧ୍ୟ ବୁଦ୍ଧିଜୀବୀ(ଗୁରୁ)ମାନେ ରାଜାଙ୍କୁ ନୀତି ଓ ଅନୀତି ବିଷୟରେ ଉପଦେଶ ଦେଉ ଥିଲେ । ଇତିହାସର ଚାଣକ୍ୟଙ୍କ ପର୍ଯ୍ୟନ୍ତ ଏ ଧାରା ଅବ୍ୟାହତ ରହିଥିଲା । କିନ୍ତୁ ପରେ କେଉଁଠି ଏବଂ କେତେବେଳେ ଏଇ ପବିତ୍ର ସମ୍ପର୍କଟି ଛିନ୍ନ ହେଇଗଲା ଯାହା ଫଳରେ ଏବେ ସମାଜ ବା ଜନସାଧାରଣ ଏବଂ ପ୍ରଶାସନ ଦୁହେଁ ପରସ୍ପର ଠାରୁ ଅଲଗା ହୋଇ ଯାଇଛନ୍ତି ।

ତେବେ ସେ ଯା ହେଉ ସମାଜରେ ଏ କ୍ରମବର୍ଦ୍ଧମାନ ନାରୀ ନିର୍ଯାତନା ଏବେ ସମସ୍ତଙ୍କ ମନକୁ ଆନ୍ଦୋଳିତ କରୁଛି । ଏ ନିର୍ଯାତନାର କାରଣ ସମ୍ପର୍କରେ ପୁଲିସ ରିପୋର୍ଟ ଏବଂ ସମାଜବିଜ୍ଞାନୀମାନେ ଯାହା କୁହନ୍ତୁ ନା କାହିଁକି ଆମ ମତରେ ଏ ଅପରାଧ ପାଇଁ ପ୍ରେରଣା ଦୁଇଟି ପ୍ରଧାନ ସୂତ୍ରରୁ ଆମକୁ ମିଳୁଛି । ପ୍ରଥମ, ଟିଭିରେ ଆସୁଥିବା ଛବି ବା ଧାରାବାହିକ କାର୍ଯ୍ୟକ୍ରମମାନ । ଟି.ଭି.ର କାର୍ଯ୍ୟକ୍ରମ ପଛରେ ବଜାର ଅର୍ଥନୀତି ପ୍ରାଧାନ୍ୟ ଲାଭ କରିଥାଏ । ଚିତ୍ର ଯେତିକି ମୁଖ ରୋଚକ ହେବ ସେତିକି ତାର କାଟତି ବଢ଼ିବ ଏବଂ ସେତିକି 'ଲାଭ' ସଂଗ୍ରହ କରିବ । ପୁଞ୍ଜିବାଦୀ ଅର୍ଥନୀତିରେ ଆଉ ସବୁକୁ ଜଳାଞ୍ଜଳି ଦେଇ କେବଳ ଲାଭକୁ ବଡ଼ ହିସାବରେ ଗ୍ରହଣ କରା ଯାଏ । ସେଥିରେ ମଣିଷର ଜୀବନ ଢଙ୍ଗାଳ, ସଭ୍ୟତା, ସଂସ୍କୃତି, ଧାର୍ମିକ ଧାନ ଧାରଣାକୁ ପଛକୁ ଠେଲି ଦିଆ ଯାଏ । ମଣିଷକୁ ଅର୍ଥ ସର୍ବସ୍ୱ କରି ଦିଆ ଯାଏ । ସେ କ୍ଷେତ୍ରରେ କଳା ପଛକୁ ହଟି ଯାଏ । ସେକସ୍ ପ୍ରାଧାନ୍ୟ ଲାଭ କରେ । ଏବେ ଆମ ଟି.ଭି. ସିରିଏଲ, ଯାତ୍ରା ଓ ଥିଏଟର ସମସ୍ତେ ଗୋଟିଏ ସରଳରେଖାରେ ଥାଇ ସଂସ୍କୃତି ଅପେକ୍ଷା ଅପସଂସ୍କୃତିକୁ ବେଶି କୋଳେଇ ନେଲେଣି । ଏତେ ବେଶି ନଗ୍ନତା ଆମ ନାଟକରେ ପ୍ରଦର୍ଶିତ ହେଲାଣି ଯେ ତାକୁ ଆଉ ପରିବାର ଭିତରେ ସମସ୍ତେ ବସି ଦେଖି ପାରୁ ନାହାନ୍ତି । ଏବେ ବଜାର ଏପରି ହେଲାଣି ଯେ ନିଛକ ନଗ୍ନ ଚିତ୍ରର ସମ୍ପୂର୍ଣ୍ଣ ସିରିଏଲ୍ ମଧ୍ୟ ମିଳୁଛି । ତାକୁ ମଧ୍ୟ ରାତ୍ରୀରେ ଦେଖିବାକୁ କୁହା ଯାଉଛି । ତାର ବଜାର ଆହୁରି ଉତ୍ତେଜକ । ଭାରତରେ

ସତ୍ୟଜିତ ରାୟଙ୍କ ପରେ ଏବେ ଖୁବ୍ କମ୍ ନିର୍ମାତା ଅଛନ୍ତି ଯେଉଁମାନେ ଅଶ୍ଳୀଳତାକୁ ବାଦ୍ ଦେଇ ଚିତ୍ର ତିଆରି କରୁଛନ୍ତି । ଫଳରେ ଏବର ସିନେମା ଶିଳ୍ପରେ ଯେତେ ଲାଭ ମିଳୁଛି ଅନ୍ୟ କୌଣସି ଶିଳ୍ପରେ ମିଳୁନାହିଁ । ଯେଉଁଠି ଯେତେ ବେଶି ଲାଭ ସେଠି ଅପରାଧୀ କ୍ରିୟା କଳାପ ମଧ ସେତେ ବେଶି । ଫଳରେ ସିନେମା ଶିଳ୍ପ ଏବେ ଅପରାଧ, କଳାବଜାର ଠାରୁ ଆରମ୍ଭ କରି ସବୁ ପ୍ରକାର ଅନୈତିକ କାର୍ଯ୍ୟର ପ୍ରଧାନ ଉତ୍ସ ଭାବେ ଠିଆ ହେଲାଣି । କୁହାଯାଏ ତାହା ଭାରତର ସମାନ୍ତରାଳ ଅର୍ଥନୀତିର ମୁଖ୍ୟ କେନ୍ଦ୍ର । ସେ ଅର୍ଥନୀତି ଆମ ରାଜନୀତି ଓ ପ୍ରଶାସନକୁ ମଧ ନିୟନ୍ତ୍ରଣ କରେ । ଦେଶର ସମଗ୍ର ନିର୍ବାଚନ  ପ୍ରକ୍ରିୟାକୁ ହାତମୁଠାରେ ରଖିଥାଏ । ରାଜନୈତିକ ଦଳମାନେ ଭାରତୀୟ ସଂସ୍କୃତିକୁ ସମ୍ମାନ ଦିଅନ୍ତି ବୋଲି କହି ବୁଲନ୍ତି । କିନ୍ତୁ ସେମାନେ ସିନେମା ଶିଳ୍ପରେ ଥିବା ଅପସଂସ୍କୃତିକୁ ଆଖି ବୁଜି ଦିଅନ୍ତି । ସେଠି ସେମାନେ ମୁଣ୍ଡ ନୁଆଇଁ ପକାନ୍ତି ।

ଦ୍ୱିତୀୟରେ, ନାରୀ ନିର୍ଯାତନା ପାଇଁ ଆମ ସିନେମା ଯେତିକି ଦାୟୀ ଆମ ସାହିତ୍ୟ ମଧ ସେତିକି ଦାୟୀ । ସିନେମା ସହିତ ତାଳ ଦେଇ ଆମର 'ଆଧୁନିକ ତଥା ଉତ୍ତର ଆଧୁନିକ' ସାହିତ୍ୟ ମଧ ବେଶ୍ ମୁଣ୍ଡ ଟେକିଛି । ସେମାନେ ମଧ ବଜାର ଅର୍ଥନୀତିକୁ ହାତରେ ରଖିବାକୁ ଚାହାନ୍ତି । ବହି ବା ପତ୍ରିକାର ଯଦି ବିକ୍ରୀ ନହେଲା ତେବେ ତାହାକୁ କିଏ ଛାପିବ ? କାହିଁକି ଛାପିବ ? ବିକ୍ରୀ ବଢ଼େଇବାକୁ ହେଲେ ଯୌନ ଉତ୍ତେଜକ ଲେଖା ଏକାନ୍ତ ଆବଶ୍ୟକ । ତେଣୁ ଏବେ ବଜାରରେ ସେକସ୍ ଆଧାରିତ ପତ୍ର ପତ୍ରିକା ଓ ବହି ଅତି ଉନ୍ନତ ପରିପାଟିରେ ଭର୍ତ୍ତି ହୋଇ ଗଲାଣି । ଜଣେ ଲେଖକ ସେ ଦିନ କହୁଥିଲେ ଏଥର ଓଡ଼ିଶାର କେତେକ ପତ୍ରିକା ସେମାନଙ୍କ ପୂଜା ସଂଖ୍ୟା ପାଇଁ ଭଲ ମୁଖରୋଚକ ଲେଖା ପାଇଁ କୁଆଡ଼େ ପାଞ୍ଚ ଶହରୁ ହଜାରେ ଦୁଇ ହଜାର ଟଙ୍କା ଯାଏ ପାରିଶ୍ରମିକ ଦେଇଛନ୍ତି । ଏଥିପାଇଁ ସେମାନଙ୍କୁ ଛଅମାସ ଆଗରୁ ଆଡ଼ଭାନସ୍ ଦେଇ ନିଯୁକ୍ତି କରା ଯାଇଥିଲା । ସାହିତ୍ୟର ମାନ ଏବେ ଟଙ୍କାରେ ଓଜନ ହେଉଛି  । ଜୀବନର ମୂଲ୍ୟବୋଧ ଏବେ ଅର୍ଥ ସହିତ ତଉଲା ଯାଉଛି । ଫଳରେ କୋଣାର୍କ ନୁହେଁ, କୋଣାର୍କର ଚିତ୍ର ଆଜି ଆଙ୍କୁଛି ଆମ ସାହିତ୍ୟର କୁଶଳୀ ଶିଳ୍ପୀ । ମନେପଡୁଛି ଏଇ ପ୍ରସଙ୍ଗରେ ଜଣେ ପ୍ରବୀଣ ଲେଖକ ଥରେ କହୁଥିଲେ ''ଗୋଟିଏ ହାତରେ ଟଙ୍କା ଦିଅ ଓ ଅନ୍ୟ ହାତରେ ଯେ କୌଣସି ଅଶ୍ଳୀଳ ପୁସ୍ତକର ଅନୁବାଦଟି ନିଅ ।'' ଅର୍ଥ ବିନିମୟରେ ଯାହାକିଛି କରାଯାଇ ପାରେ । ଖାସି କଟାଳୀ ପେଟ ପାଇଁ ଖାସି କାଟେ, ଜୀବ ହତ୍ୟା କରେ । ବେଶ୍ୟା ପେଟ ପାଇଁ ଦେହ ଦାନ କରେ । ଏଇ ଦୃଷ୍ଟିରୁ ସେମାନେ ପାପ କରୁଛନ୍ତି ବୋଲି କୁହା ଯାଇ ପାରିବ ନାହିଁ । ଲେଖକ ଓ ମଞ୍ଚ କର୍ମୀମାନଙ୍କୁ ସେହି ଶ୍ରେଣୀଭୁକ୍ତ କରା ଯାଇପାରିବ ନାହିଁ । ଶିଳ୍ପୀକୁ କିନ୍ତୁ ଏହି ପର୍ଯ୍ୟାୟରୁ ଅଲଗା କରିହେବ ନାହିଁ । ମନକୁ କଳୁଷିତ କଲା ଭଳି ସାହିତ୍ୟ ଯେ କେବଳ ପୁରୁଷମାନେ ସୃଷ୍ଟି କରୁଛନ୍ତି ତା ନୁହେଁ । ନାରୀମାନେ ମଧ ଏହି ପ୍ରତିଯୋଗିତାରେ ପଛରେ ପଡ଼ି ନାହାନ୍ତି । ସେମାନେ

ପୁରୁଷମାନଙ୍କ ସହିତ ସମାନ ଅଧିକାର ଦାବି କରୁଛନ୍ତି । କିନ୍ତୁ ଲକ୍ଷ୍ୟ କରିବାର କଥା ଯେ, ପୁରୁଷମାନେ ନାରୀକୁ ଉପଭୋଗର ବସ୍ତୁ ହିସାବରେ ଚିତ୍ରିତ କରୁଥିବା ବେଳେ ନାରୀମାନେ ମଧ୍ୟ ନିଜକୁ ସେଇ ଭୂମିକାରେ ଛାଡ଼ି ଦେଉଛନ୍ତି । କୌଣସି ସାହିତ୍ୟରେ (ଓଡ଼ିଆରେ) ସେମାନେ ପ୍ରତିବାଦ କରିଥିବାର ଦେଖାଯାଇ ନାହିଁ ।

ମଲ୍‌ଟି ନ୍ୟାସ୍‌ନାଲ କମ୍ପାନୀର ବିଜ୍ଞାପନରେ ମଧ୍ୟ ସେଇ ନାରୀ ନିଜକୁ ପ୍ରଦର୍ଶିତ କରୁଛି । ବିଶ୍ୱ ସୁନ୍ଦରୀ ଶବ୍ଦର ସୃଷ୍ଟି ଏହି ବଜାର ଅର୍ଥନୀତିରୁ । ଅର୍ଥ ବିନିମୟରେ ଉନ୍ମୁକ୍ତ ଅଙ୍ଗ ଅବୟବକୁ ସେ ହସି ହସି ବିଜ୍ଞାପିତ କରି ଦେଉଛି ।

ଏସବୁ ସତ୍ତ୍ୱେ ଅନେକଙ୍କ ଠାରେ ଅତି ସୁଖର କଥା, ସଚେତନତା ପ୍ରକାଶ ପାଇଲାଣି । ସେମାନେ ଉଗ୍ର ଆଧୁନିକତା, ଅପସାଂସ୍କୃତିକ ଚିତ୍ର ଓ କୁସାହତ୍ୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେଣି । ନିକଟରେ ଗୋଟିଏ ବିଶ୍ୱବିଦ୍ୟାଳୟ ତରଫରୁ ଆୟୋଜିତ ସେମିନାର୍‌ରେ ଜଣେ ବିଶିଷ୍ଟ କବି ଆଲୋଚନା ପ୍ରସଙ୍ଗରେ କହିଥିଲେ ଯେ, ''ମୃତ୍ୟୁ ଓ ପ୍ରେମଜନିତ ସୂକ୍ଷ୍ମାତିସୂକ୍ଷ୍ମ ପ୍ରତିକ୍ରିୟା ବିଂଶଶତକ ସାହିତ୍ୟରେ ପ୍ରକଟିତ ।'' ଏହା ଯେ ପ୍ରଥମ ଥର ହେଉଛି ତା'ନୁହେଁ । ତା'ପୂର୍ବରୁ ବହୁ ସଭା ସମିତି ଓ ସମ୍ବାଦପତ୍ର ମାନଙ୍କରେ ଏ ସ୍ୱର ଉଠିଛି । ଲେଖାରେ ମଧ୍ୟ ପ୍ରକାଶ ପାଇଛି । ଯଦି ଉପର ଲିଖିତ ବିଶିଷ୍ଟ କବିଙ୍କ ଉକ୍ତିକୁ ଠିକ୍ ବୋଲି ଧରାଯାଏ ତେବେ କଅଣ ବୁଝିବାକୁ ହେବ ଯେ ବିଂଶ ଶତାବ୍ଦୀକୁ ଆମ ଲେଖକମାନଙ୍କର ଏକମାତ୍ର ଦାନ ହେଲା ପ୍ରେମ, ପ୍ରତାରଣା ଓ ମୃତ୍ୟୁ ? ପୃଥିବୀର ବିଶାଳ କ୍ଷେତ୍ରରେ ପ୍ରେମ ଓ ମୃତ୍ୟୁ ଛଡା ଆଉ କିଛି ନାହିଁ ? ଦାରିଦ୍ର୍ୟ, କ୍ଷୁଧା, ରୋଗ, ଶୋକ, ଅତ୍ୟାଚାର, ଶୋଷଣ ଓ ସାମାଜିକ ବୈଷମ୍ୟ ଏ ସବୁ କଅଣ ପ୍ରେମ ପାଖରେ ନ୍ୟୁନ ହୋଇ ଯାଇଛି ? ସମଗ୍ର ଜନ ଜୀବନର ଗୋଟାଏ ବିରାଟ ଅଂଶକୁ ଆମେ ଏମିତି ଆଡ଼େଇ ଦେବା ? ନାରୀକୁ ନାରୀ ନିର୍ଯାତନା ଠାରୁ ଦୂରରେ ରଖିବାକୁ ହେଲେ ଆମକୁ ଏଇସବୁ କାରଣଗୁଡ଼ିକ ପ୍ରଥମେ ଚିହ୍ନଟ କରିବାକୁ ହେବ ଏବଂ ସେମାନଙ୍କ ବିରୋଧରେ ଏକ ସମ୍ମିଳିତ ସ୍ୱର ଉତ୍ତୋଳନ କରିବାକୁ ହେବ । ସେ ସ୍ୱର ନାରୀ ଓ ପୁରୁଷର । ପ୍ରଶାସନ ଓ ରାଜନୀତିର । ଏ ସ୍ୱର ସମସ୍ତଙ୍କର । ଏ ଦାୟିତ୍ୱ ସମସ୍ତଙ୍କର ।



(ପ୍ରଗତିବାଦୀ -୧୮.୧୨.୨୦୦୧)

# ରୁଦ୍ର ଝଡ଼ ଆସୁଚି !

ଝଡ଼ ଏପରି ଏକ ବସ୍ତୁ ଯାହାକୁ ଦେଖି ହୁଏନା, କିନ୍ତୁ ଅନୁଭବ କରି ହୁଏ । ଝଡ଼ ଏପରି ଏକ ଶକ୍ତି, ଯାହା ଆମକୁ ନଷ୍ଟ ଭ୍ରଷ୍ଟ କରିଦିଏ ଅଥଚ ଆମେ ତା'ର ମୁକାବିଲା କରି ପାରୁନା । ଝଡ଼ ଏପରି ଏକ ବିଭୀଷିକା ଯାହା ଆମକୁ, ଆମ ସମାଜକୁ ତଳି ତଳାନ୍ତ କରେ ସତ କିନ୍ତୁ ତା ପରେ ପରେ ନୂତନ ନିର୍ମାଣର ପଥ ପରିଷ୍କାର କରି ଦିଏ ।

ମୁଁ କିନ୍ତୁ ସେପରି କୌଣସି ଝଡ଼ କଥା ଏଠି ଆଲୋଚନା କରିବି ନାହିଁ । ମୁଁ ଏପରି ଝଡ଼ କଥା କହିବି ଯାହାକୁ ଦେଖି ହୁଏ, ଅନୁଭବ କରି ହୁଏ, ତା ସହିତ ମୁକାବିଲା ମଧ୍ୟ କରି ହୁଏ ଏବଂ ଆବଶ୍ୟକ ହେଲେ ତା'ର ପ୍ରତିରୋଧ ପାଇ ନକ୍ସା ବି ତିଆରି କରି ହୁଏ । ସେ ଝଡ଼ ଅସନ୍ତୋଷର । ସେ ଝଡ଼ ଅବହେଳା ଅନ୍ୟାୟ ଏବଂ ଲଗାତାର ଘଟି ଯାଉଥିବା ଅତ୍ୟାଚାରର ।

ଏବେ କିଛି ଦିନ ତଳେ କୋରାପୁଟ ଅଞ୍ଚଳରେ ଏ ଝଡ ସୃଷ୍ଟି ହୋଇଛି । ସେ ଅଞ୍ଚଳର ହଜାର ହଜାର ବେକାର ଯୁବକ ଏକ 'ଲିବରେସନ୍ ଫ୍ରଣ୍ଟ' ବା 'କିଲଫ୍' ନାମରେ ଏକ ସଂଗ୍ରାମୀ ଅନୁଷ୍ଠାନ ଗଢ଼ି ସରକାରଙ୍କଠାରେ ଦାବି କରିଥିଲେ ଯେ ଜିଲ୍ଲା ଭିତରେ ଯେତେ ତୃତୀୟ ବା ଚତୁର୍ଥ ଶ୍ରେଣୀ ଚାକିରି ସୃଷ୍ଟି ହେଉଛି ତାକୁ କେବଳ ଜିଲ୍ଲାବାସୀଙ୍କୁ ଦିଆ ଯାଉ । ଜିଲ୍ଲା କାର୍ଯ୍ୟାଳୟରେ ସୃଷ୍ଟି ହେଉଥିବା ଜୁନିଅର କିରାଣୀ, ଟାଇପିଷ୍ଟ, ପିଅନ ଇତ୍ୟାଦି କାମରେ ଜିଲ୍ଲାବାସୀଙ୍କୁ ନିଯୁକ୍ତି ଦିଆ ଯାଉ । ସରକାର ସେ କଥା ମାନି ନ ଥିଲେ । ସେମାନେ ଚାକିରି ପାଇଁ ଦିଆ ଯାଇଥିବା ବିଜ୍ଞାପନରେ ଜିଲ୍ଲାବାସୀଙ୍କୁ ଅଗ୍ରାଧିକାର ଦିଆଯିବ ବୋଲି ଲେଖି ନ ଥିଲେ ବରଂ ଗୋଟିଏ ବିଜ୍ଞାପନରେ ଲେଖାଥିଲା ଯେ, Must be a citizen of India । ଏହା ଫଳରେ ଜିଲ୍ଲା ବାହାରୁ ଏପରିକି ପ୍ରଦେଶ ବାହାରୁ କିଛି ପ୍ରାର୍ଥୀ ଥିବାର ଅଭିଯୋଗ ହୋଇଛି । ଏପରି ମଧ୍ୟ ଅଭିଯୋଗ ହୋଇଛି ଯେ ଜିଲ୍ଲା ତଥା ପ୍ରଦେଶ ବାହାରୁ କିଛି ପ୍ରାର୍ଥୀଙ୍କୁ ନଜରରେ ରଖି ଏପରି ବିଜ୍ଞାପନ ଦିଆ ଯାଇଥିଲା । ଏସବୁ ଅଭିଯୋଗକୁ ମିଥ୍ୟା ବୋଲି କହି ଉଡ଼େଇ ଦେଇ ହେବ ନାହିଁ । ରାଜନୀତି ତଥା ବ୍ୟୁରୋକ୍ରେସିର ପଶା ଖେଳରେ ବ୍ୟକ୍ତିକୁ ଆଖିରେ ରଖି ଗୋଟି ଚଳେଇବା ଆଜି ଏକ ସାଧାରଣ କଥା ଏବଂ ସେଠି ସେ ବ୍ୟକ୍ତି ସ୍ୱାର୍ଥ ବ୍ୟାହତ ହେଲେ ରକ୍ତ ନଦୀ ବହିବାକୁ କିମ୍ବା ସେ କଣ୍ଟା ସାଫ୍ କରିବାକୁ ପ୍ରଶାସନ ମୋଟେ ପଛାଏ ନାହିଁ । କାରଣ ସେ ରକ୍ତ ତାଙ୍କର ନୁହେଁ- ନୀରିହ ଜନତାର, ଯିଏ ପଶା ଖେଳରେ ଏକ ଅବାଞ୍ଛିତ

ବସ୍ତୁ । ନିମ୍ନତମ ଆବଶ୍ୟକତାରୁ ବଞ୍ଚିତ ହୋଇ ରାହା ପାଉ ନ ଥିବା ଯୁବକମାନଙ୍କର ଗୋଟାଏ ସ୍ୱପ୍ନ ଥିଲା । ସେ ସ୍ୱପ୍ନ ସ୍ୱପ୍ନରେ ରହିଲା ଓ ବାଲିଘର ବାଲିରେ ମିଶିଗଲା ।

ବେକାର ଯୁବକଟିଏ ଖାଲି ସମାଜର ଶତ୍ରୁ ରୂପେ ପରିଗଣିତ ହୁଏନା । ସେ ପ୍ରଥମେ ଶତ୍ରୁ ହୁଏ ତା' ନିଜ ପରିବାରର, ବାପ ମାଆଙ୍କର । ତା' ସ୍ତ୍ରୀ ଓ ପିଲାପିଲିଙ୍କର । ଫଳରେ ତା ଭିତରେ ମନକୁ ମନ ସୃଷ୍ଟି ହୁଏ ପ୍ରଚଣ୍ଡ ବିସ୍ଫୋରଣ । ସେ ବିସ୍ଫୋରଣ ସୃଷ୍ଟି ହେଲେ ସେ ସମାଜ, ଆଇନ୍, ଶାସନ କିଛି ମାନେନା । ସେ ସେତେବେଳେ ଜଳ, ସ୍ଥଳ, ସୂର୍ଯ୍ୟ, ଚନ୍ଦ୍ର କାହାରି ଅସ୍ତିତ୍ୱ ସ୍ୱୀକାର କରେନା । ଏକ ଜ୍ୱଳନ୍ତ ଅଗ୍ନିପିଣ୍ଡ ହୋଇ ଘୂରି ବୁଲେ । ସେ ଆଗ୍ନେୟଗିରିର ଉଦ୍‌ଗୀରଣ, ସେ ଝଡ଼ର ଝଙ୍କାର, ଏବଂ ସେ ବିସ୍ଫୋରଣର ସ୍ୱର ଓ ସ୍ୱାକ୍ଷର ସେମାନେ ଛାଡି ଦେଲେ ସରକାରୀ ଅଫିସ, ଘର ଓ କୋଠାବାଡ଼ି ଉପରେ । ତା'ର ପରିଣତି ସେମାନେ ନିଜେ ଅନୁଭବ କଲେ । କିଛି ଆହତ ଓ କ୍ଷତ ବିକ୍ଷତ ହେଲେ । ଆଉ କିଛି କାରାରୁଦ୍ଧ ହେଲେ । ଆନ୍ଦୋଳନ ଯେ ଖାଲି କିଳପ୍ ଆରମ୍ଭ କରିଛି, ତା ନୁହେଁ ତା'ର ଯଥେଷ୍ଟ ପୂର୍ବରୁ ଆରମ୍ଭ ହେଇଛି ପାରାଦ୍ୱୀପରେ । ସେଠି 'ଭୂମିପୁତ୍ର' ନାମରେ ଆଉ ଏକ ଅନୁଷ୍ଠାନ ଗଢ଼ି ଠିକ୍ ସେଇ ଦାବୀ ନେଇ ସେମାନେ ଆନ୍ଦୋଳନ କରି ଆସୁଛନ୍ତି । ଜଣେ ସଂଗ୍ରାମୀ ଯୁବ କବି ତାହାର ନେତୃତ୍ୱ ନେଇଛନ୍ତି । ଜେଲ୍ ଓ ଲାଠି ସେମାନେ ଖାତିର୍ କରୁ ନାହାନ୍ତି ।

ଆନ୍ଦୋଳନ ମଧ୍ୟ ଆରମ୍ଭ ହୋଇଛି କଳାହାଣ୍ଡିରେ । ଯେଉଁଠି ସ୍ଥାନୀୟ ଲୋକଙ୍କ ଅପେକ୍ଷା Citizen of India କୁ ବେଶି ପ୍ରାଧାନ୍ୟ ଦିଆଯାଏ । ଆନ୍ଦୋଳନ ଆରମ୍ଭ ହେଇଛି ଜଗତସିଂହପୁର, କେନ୍ଦ୍ରାପଡ଼ା, ମୟୂରଭଞ୍ଜ ଓ ସୁନ୍ଦରଗଡ଼ରେ ମଧ୍ୟ । ତା ଆଗରୁ ଆନ୍ଦୋଳନ ଆରମ୍ଭ ହେଇଥିଲା ରାଉରକେଲାରେ, ଯେଉଁଠି ଏକାଥରେ ୨୭ ଜଣ ଅଣ ଓଡ଼ିଆ ଇଂଜିନିୟରଙ୍କୁ ବିନା ସାକ୍ଷାତକାରରେ ଚାକିରି ଦିଆ ଯାଇଥିଲା । ଆନ୍ଦୋଳନ ଜୋରଦାର ହେଲା, କେତେ ଜଣଙ୍କ ମୁଣ୍ଡ ଫାଟିଲା । କଥା ଗଲା ଶେଷରେ ହାଇକୋର୍ଟକୁ । ଏକଥା ଜଣାଶୁଣା । ଯାହାର ସମାଧାନ ସରକାର ଚାହାନ୍ତିନି ତାକୁ କୋର୍ଟକୁ ପଠେଇ ଦିଅନ୍ତି । ତାପରେ ଆରମ୍ଭ ହୁଏ ଅସରନ୍ତି ଅପେକ୍ଷାର କାହାଣୀ । ସେ କାହାଣୀ କେବେ ବି ସରେନା । ଯେମିତି ସରେ ନାହିଁ ବା ସରୁ ନାହିଁ ରାଜନେତାଙ୍କ ବିରୁଦ୍ଧରେ ଅଭିଯୋଗର ବିଚାର । ଆଇନର ଇନ୍ଦ୍ରଜାଲ ଭିତରେ ସେମାନେ ଚିର ଦିନକୁ ଢ଼ାଙ୍କି ହୋଇ ପଡ଼ନ୍ତି- ଲୋକଲୋଚନଠାରୁ ଦୂରରେ ରହି ଯାଆନ୍ତି ।

ଲକ୍ଷ୍ୟ କରିବାର କଥା, ଏହିସବୁ ଆନ୍ଦୋଳନ ଓଡ଼ିଶାର ସୀମାନ୍ତବର୍ତ୍ତୀ ଅଞ୍ଚଳରେ ବେଶି ଜୋରଦାର ହୋଇଛି ଏବଂ ହେଉଛି ମଧ୍ୟ । ଆଉ କେତେକ ଜାଗାରେ ଛୋଟ ଛୋଟ ଘଟଣାରୁ ଦାନା ବାନ୍ଧିବା ଆରମ୍ଭ କରୁଛି । ତାଳଚେର, କେନ୍ଦୁଝର, ବଡ଼ବିଲ, ବଲାଣୀ, କିରିବୁରୁ ଓ ଠାକୁରାଣୀ ପ୍ରଭୃତି ଖଣି ଅଞ୍ଚଳରେ ଖୁବ୍ ଶିଘ୍ର ଏହା ହିଂସ୍ର ରୂପ

ଧାରଣ କରିବାକୁ ଯାଉଛି । ଏହି ଅଞ୍ଚଳରେ ବ୍ୟାପକ ଭାବରେ ଖାଦାନରୁ ଛଟେଇ ଆରମ୍ଭ ହେଇଛି । ଓଡ଼ିଶା ସରକାରଙ୍କ ଏକମାତ୍ର କଞ୍ଚାଲୁହା ଓ ପାଇପ୍ କାରଖାନାରୁ ଲାଭ ହେଉ ନାହିଁ ଆଳ ଦେଖେଇ ଶହଶହ ଲୋକଙ୍କୁ ଅବସର ନେବାକୁ କୁହା ଗଲାଣି । ସ୍ୱେଚ୍ଛାରେ ଅବସର ନ ନେଲେ ବାଧ୍ୟତାମୂଳକ ଅବସରର ଖଣ୍ଡା ମୁଣ୍ଡ ଉପରେ ଝୁଲାଇ ଦିଆ ଗଲାଣି । ତାଳଚେର ସାର କାରଖାନାକୁ ପୂରା ବନ୍ଦ କରି ଦିଆଯିବ ବୋଲି ସେଠି କୋକୁଆ ଭୟ ସୃଷ୍ଟି ହେଲାଣି । ଅନ୍ୟ ଦିଗରେ ସୁନ୍ଦରଗଡ, ନୂଆଗାଁ, ବିଶ୍ରା, ବୀରମିତ୍ରପୁର, କୁଆଁରମୁଣ୍ଡା ଓ ବଣେଇ ଅଞ୍ଚଳରେ ମଧ୍ୟ ସ୍ଥାନୀୟ ଆଦିବାସୀମାନେ ଆନ୍ଦୋଳନ ଆରମ୍ଭ କରି ଆଉ ପାଦେ ଆଗେଇ ଯାଇଛନ୍ତି । ସେମାନେ ନୂଆ କରି ନିଯୁକ୍ତି ପାଇଥିବା ପ୍ରାଥମିକ ଶିକ୍ଷକମାନଙ୍କୁ ଅଳ୍ପଦିନ ଭିତରେ ସେ ସ୍ଥାନ ଛାଡି ଚାଲି ଯିବାକୁ ନିର୍ଦ୍ଦେଶ ଦେଇଛନ୍ତି ।

ଏସବୁ ଆନ୍ଦୋଳନର ଯଥାର୍ଥତାକୁ କେଉଁ ଯୁକ୍ତି ବଳରେ ଅସ୍ୱୀକାର କରି ହେବ ? କେଉଁ ଯୁକ୍ତି ବଳରେ ଅସ୍ୱୀକାର କରି ହେବ ? କେଉଁ ଯୁକ୍ତି ବଳରେ ଏହି ଆନ୍ଦୋଳନକାରୀଙ୍କ ହୃଦୟରେ ଜାତୀୟତା ତଥା ଅଖଣ୍ଡତାର ମହାମନ୍ତ୍ର ବୁଣି ସେମାନଙ୍କୁ ଉଦ୍‌ବୃଦ୍ଧ କରି ହେବ ? ଏବଂ ରାଷ୍ଟ୍ରର କେଉଁ ଶକ୍ତି ଏ ଉଦ୍‌ବେଳନକୁ ରୋକି ପାରିବ ? ଦିନକୁ ମୁଠାଏ ଭାତ ପାଇଁ ଅହରହ ସଂଗ୍ରାମ କରୁଥିବା ଏ ଯୁବକମାନଙ୍କୁ ଶାନ୍ତିର ପଥକୁ ଫେରେଇ ଆଣି ହେବ ? ଏସବୁ ପ୍ରତ୍ୟେକ ସଚେତନ ନାଗରିକ ମନରେ ଆଜି ଗଭୀର ଆଲୋଡ଼ନ ସୃଷ୍ଟି କରିଛି । ❑

(ଅନୁପମ ଭାରତ - ୧୭.୯.୯୭)

# ସ୍ୱାଧୀନତାର ଫଳ

ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ଏବେ ପାଳିତ ହେଉଛି । ଗତ ପଚାଶ ବର୍ଷର ସ୍ୱାଧୀନତାର ହିସାବ ନିକାଶ ଏବେ ଆରମ୍ଭ ହେଇଛି । ସବୁ ସ୍ତରରେ ତା'ର ବାଲାନ୍ସ ସିଟ୍ ତିଆରି ହେଲାଣି । ଏ ବାଲାନ୍ସ ସିଟ୍‌ରେ କ'ଣ ଅଛି, ଆୟ କେତେ ବ୍ୟୟ କେତେ, ତାର ଫର୍ଦ୍ଦ ଆଉ କିଏ ତିଆରି କରୁ କି ନ କରୁ ଭାରତର ଚତୁର୍ଥ ସ୍ତମ୍ଭ ଏ ବର୍ଷ ସୁବର୍ଣ୍ଣ ଜୟନ୍ତୀର ଆରମ୍ଭ ବେଳେ ଯେଉଁ ବିଶେଷ ସଂଖ୍ୟାମାନ ପ୍ରକାଶ କରିଥିଲେ ସେଥିରେ ତା'ର କୀୟଦଂଶ ପ୍ରକାଶ ପାଇଛି । ଓଡ଼ିଶାରେ ମିଳୁଥିବା ଜାତୀୟ କିମ୍ବା ପ୍ରାଦେଶିକ ସ୍ତରର ସମ୍ବାଦପତ୍ରମାନଙ୍କୁ ଯଦି କେହି ଦେଖିବାର ସୁଯୋଗ ପାଇଥିବ ତେବେ ସେ ନିଶ୍ଚୟ ଜାଣି ପାରିଥିବ ଯେ କାଁ ଭାଁ କେତୋଟି ବିଜ୍ଞାପନଧର୍ମୀ ପ୍ରବନ୍ଧକୁ ଛାଡି ଦେଲେ ଅନ୍ୟ ସବୁ ଲେଖାରେ ସେମାନେ ଅତ୍ୟନ୍ତ ନୈରାଶ୍ୟଜନକ ବାଣୀ ଶୁଣେଇଛନ୍ତି । ଲକ୍ଷ୍ୟ କରିବାର କଥା ଯେ ଏ ସବୁ କ୍ଷେତ୍ରରେ ଖୋଦ୍ ସରକାରଙ୍କ ଛତ୍ରଛାୟା ତଳେ ମନୋରମ ପରିବେଶ ଭିତରେ ସଯତ୍ନ ବର୍ଦ୍ଧିତ ଗଣ ମାଧ୍ୟମଗୁଡ଼ିକ ମଧ୍ୟ ଏହି ସର୍ବ ଭାରତୀୟ ସ୍ୱର ସହିତ ସ୍ୱର ମିଳାଇବାକୁ ବାଧ୍ୟ ହେଇଛନ୍ତି ।

ଯେଉଁ ପ୍ରଧାନ କଥାବସ୍ତୁକୁ ସେମାନେ ସେମାନଙ୍କ ଲେଖା ମାଧ୍ୟମରେ ଉପସ୍ଥାପିତ କରିଛନ୍ତି ତାହା ହେଲା ଦୀର୍ଘ ପଚାଶ ବର୍ଷ ଭିତରେ ମୋଟ ଆଠଟି ପଞ୍ଚବାର୍ଷିକ ଯୋଜନା ଏବଂ ତା ମାଧ୍ୟମରେ ଯେଉଁ ଲକ୍ଷ ଲକ୍ଷ କୋଟି ଟଙ୍କା ବ୍ୟୟିତ ହେଇଛି ସେ ସବୁ ସମ୍ପୂର୍ଣ୍ଣ ବ୍ୟର୍ଥ ହେଇଛି । ସେ ଅର୍ଥର ଏକ ସୂକ୍ଷ୍ମାତି ସୂକ୍ଷ୍ମ ଅଂଶ ମଧ୍ୟ ସାଧାରଣ ଜନତାର ଉପକାରରେ ଆସି ନାହିଁ । ଦେଶରେ ଧନୀ ଓ ଦରିଦ୍ରଙ୍କ ଭିତରେ ବ୍ୟବଧାନ ବଢ଼ିଛି । ଦରିଦ୍ର ଦରିଦ୍ରତର ଏବଂ ଧନୀ ଅଧିକ ଧନୀ ହେଇଛି । ବେକାରୀ ଆକାଶମୁଖୀ ହୋଇଛି । ଜାତି ଜାତି ଭିତରେ, ସମ୍ପ୍ରଦାୟ ସମ୍ପ୍ରଦାୟ ଭିତରେ, ଭାଷା ଭାଷା ଭିତରେ ବିଭେଦ ବଢ଼ିଛି । ଅଶିକ୍ଷା, ଅପସାଂସ୍କୃତିକ ଚିନ୍ତା ଓ ଚେତନା ବୃଦ୍ଧି ପାଇଛି । ସବୁଠାରୁ ବଡ଼ କଥା ହେଲା ପ୍ରଶାସନ ସହିତ ରାଜନୀତି ଏବଂ ଅପରାଧୀ ମିଶି ଏକ ନୂତନ ସାମ୍ରାଜ୍ୟ ଗଠନ କରିବାର ସୁଯୋଗ ପାଇଛନ୍ତି । ଏସବୁ ଆମ ସଂସଦୀୟ ଗଣତନ୍ତ୍ରର ମୂଳଦୁଆକୁ ଦୋହଲାଇ ଦେଇଛି । ଆମର ଦୀର୍ଘ ଦିନର ଆଶା ଓ ଆକାଂକ୍ଷା ସବୁ ଧୂଳିସାତ୍ ହୋଇ ଯାଇଛି । ବୈଦିକ ଭାରତର ଧାର୍ମିକ ଧ୍ୟାନ ଧାରଣା ଯାହାକୁ ନେଇ ଆମେ ଯୁଗ ଯୁଗ ଧରି ଗର୍ବ କରି ଆସୁଥିଲେ ତା' ମୂଳରେ କୁଠାରାଘାତ ହେଇ ସାରିଲାଣି । ସରକାରୀ ସ୍ତରରେ ଖର୍ଚ୍ଚର ମାତ୍ର ଅଠର ଭାଗ ଲୋକଙ୍କ ପାଖରେ ପହଞ୍ଚୁଛି । ବାକି ସବୁ ରାସ୍ତାରେ

ବାଟ ମାରଣା ହୋଇ ଯାଉଛି । ଯୋଜନାର ସେ ବିରାଟ ଅଂଶଟି ରାଜନେତା ଠାରୁ ଆରମ୍ଭ କରି ପ୍ରଶାସନ ପର୍ଯ୍ୟନ୍ତ ଏବଂ ଅସାଧୁ ବ୍ୟବସାୟୀଙ୍କ ଠାରୁ ଟାଉଟରଦଳଙ୍କ ପର୍ଯ୍ୟନ୍ତ ସମସ୍ତେ ଉପଭୋଗ କରୁଛନ୍ତି । ସବୁଠାରୁ ଆଶ୍ଚର୍ଯ୍ୟର କଥା, ଯେଉଁମାନେ ବା ଯେଉଁ ଦଳ ଏହି ମୋଟା ଅଙ୍କକୁ ହାତ ପଇଠ କରିଛନ୍ତି ବା କରୁଛନ୍ତି ସେମାନେ ତାକୁ ସ୍ୱୀକାର କରୁ ଛନ୍ତି ଏବଂ କହୁ ଛନ୍ତି ଯେ 'ଦୁର୍ନୀତିର ମୂଳୋତ୍ପାଟନ କରିବାକୁ ହେଲେ ଆଉ ଏକ ସଂଗ୍ରାମ ଆବଶ୍ୟକ' । ଏହା ହିଁ ସ୍ୱାଧୀନ ଭାରତର ପ୍ରକୃତ ଚିତ୍ର । ଯଦି ଏହା ହିଁ ସତ୍ୟ ଏହା ହିଁ ବାସ୍ତବ ତେବେ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ କ'ଣ ପାଇଁ ? କ'ଣ ପାଇଁ ଏତେ ବାହାସ୍ଫୋଟ, ଏତେ ବାକ୍‌ଚାତୁରୀ ? କ'ଣ ପାଇଁ ଏ ଢୋଲ ପିଟା ? ଖାଲି ଭାରତରେ ନୁହେଁ, ଭାରତ ବାହାରେ ମଧ୍ୟ ଏ ପ୍ରଶ୍ନ ଉଠିଲାଣି, ସେମାନେ ଏ କଥା ମଧ୍ୟ ପଚାରିଲେଣି, ଯଦି ସତୁରୀ ଭାଗ ଦାରିଦ୍ର୍ୟର ସୀମା ରେଖା ତଳେ, ଯଦି ମାତ୍ର ଅଠରରୁ କୋଡ଼ିଏ ଜଣ ବ୍ୟକ୍ତି ସମଗ୍ର ଦେଶର ଅର୍ଥନୀତିକୁ କରାୟତ୍ତ କରି ରଖିଛନ୍ତି, ଯଦି ରାଜନୀତି କରୁଥିବା ସମସ୍ତ ଲୋକ ଅପରାଧୀ, ଦୁର୍ନୀତିଗ୍ରସ୍ତ, ଅସାଧୁ ତଥା ଦୁଶ୍ଚରିତ୍ର, ଯଦି ମାଫିଆ ଓ ଲାଭଖୋର ବ୍ୟବସାୟୀମାନେ ଦେଶରେ କଳାଧନର ଗୋଟାଏ ସମାନ୍ତରାଳ ଅର୍ଥନୀତି ଚଳେଇଛନ୍ତି, ତେବେ ସୁବର୍ଣ୍ଣ ଜୟନ୍ତୀ କିଏ ଓ କାହା ପାଇଁ ପାଳନ କରୁଛି ? କାହା ସ୍ୱାର୍ଥ ସେଥିରେ ଉପକୃତ ହେଉଛି ? ଏ ପ୍ରଶ୍ନର ଉତ୍ତର ମିଳି ନାହିଁ । ମିଳିବ ବି ନାହିଁ । ଉତ୍ତର ଦେବ କିଏ ? ଭାରତ ଏପରି ଏକ ଦେଶ ଯେଉଁଠି କେହି କାହାରି ଉତ୍ତରଦାୟୀ ନୁହେଁ । ସମସ୍ତେ ସ୍ୱାଧୀନ । ସମସ୍ତେ ଯେ ଯାହା ବାଟରେ ଇଚ୍ଛାନୁସାରେ ଚାଲିବାର ଅଖଣ୍ଡ କ୍ଷମତା ହାସଲ କରିଛନ୍ତି । ମନ୍ତ୍ରୀ ତାର ଇଚ୍ଛାନୁସାରେ ଘର କିମ୍ବା ପ୍ଲଟ ପ୍ରଦାନ କରିପାରେ । ଇଚ୍ଛାନୁସାରେ ଗ୍ୟାସ୍, ପେଟ୍ରୋଲପମ୍ପ, ଟେଲିଫୋନ ଦେଇ ପାରେ । ଇଚ୍ଛାନୁସାରେ ବିଦେଶ ଭ୍ରମଣ କରି ପାରେ । ଇଚ୍ଛାନୁସାରେ ଅର୍ଥ ଗ୍ରହଣ କରି ପାରେ ଏବଂ ଏପରିକି ତକିଆ ତଳେ ଜମେଇ ପାରେ । ତାକୁ ପ୍ରଶ୍ନ ପଚାରିବ କିଏ ? କାହାର କ୍ଷମତା ଅଛି ମଧ୍ୟ ଯୁଗୀୟ ମହାରାଜାଠାରୁ ଯଥେଷ୍ଟ ବେଶି କ୍ଷମତାର ଅଧିକାରୀ ଏହି ଗଣତନ୍ତ୍ରର ଧ୍ୱଜାଧାରୀମାନଙ୍କୁ ଉତ୍ତର ମାଗିବ । ପୃଥିବୀର ଲୋକେ ଏଯାଏ ଚନ୍ଦ୍ରର କେବଳ ଗୋଟିଏ ପାର୍ଶ୍ୱ ଦେଖି ଆସୁଥିଲେ । ଆଜି ଆଉ ସେ କଥା ନାହିଁ । ଚନ୍ଦ୍ରର ଉଭୟ ପାର୍ଶ୍ୱ ଦେଖିବାର ଦକ୍ଷତା ମଣିଷ ହାସଲ କଲାଣି । ଯେଉଁ ମନ୍ତ୍ରୀ ବା ଏମ୍.ପି.ମାନଙ୍କର ଆମେ ଆଜିଯାଏ କେବଳ ଗୋଟିଏ ପାର୍ଶ୍ୱ ଦେଖି ଆସୁଥିଲୁଁ ସେମାନଙ୍କର ଆଉ ଏକ ପାର୍ଶ୍ୱ ମଧ୍ୟ ଆବିଷ୍କୃତ ହୋଇଛି ।

ସ୍ୱାଧୀନତାର ପଚାଶ ବର୍ଷ ଭିତରେ ଯଦି ସବୁଠୁ ବେଶି କେହି ହରେଇ ଥାଏ ସେ ହେଉଛି ଦେଶର ସାଧାରଣ ଜନତା । ଯେଉଁ ଜନତା ସ୍ୱାଧୀନତା ସଂଗ୍ରାମରେ ନିଜକୁ ତଳିତଳାନ୍ତ କରି ଉତ୍ସର୍ଗ କରି ଦେଇ ଥିଲା, ସେଇ ଜନତା ସ୍ୱାଧୀନତା ହାସଲ ହେଲା ପରେ ଅଚଳ ମୁଦ୍ରା ପରି ରାସ୍ତାକଡ଼କୁ ଫିଙ୍ଗା ହେଇ ଗଲା । ନେତା ଓ ଜନତା ଭିତରେ

ଗୋଟାଏ ଅଲଂଘ୍ୟ ପାଚେରୀ ନିର୍ମାଣ ହେଲା । ନେତାମାନେ ଜନତାକୁ କେବଳ ଭୋଟ ବେଳେ ଗୋଟିଏ ଯନ୍ତ୍ରରୂପେ ବ୍ୟବହାର କଲେ ।

ବସ୍ତୁତଃ ଯୋଉ ରାଜା ରାଜୁଡ଼ା ବା ବାଦଶାହୀ ଶାସନ ସ୍ୱାଧୀନତା ପୂର୍ବରୁ ଚଳୁଥିଲା, ସେଇ ଶାସନ ପୁଣି ଫେରି ଆସିଲା ଭିନ୍ନ ବେଶରେ ଏବଂ ଭିନ୍ନ ରୂପରେ । ଭାରତର ଜନତା ସବୁବେଳେ ସରଳ ବିଶ୍ୱାସୀ । ସେମାନେ ମୁହଁ ଦେଖି ମଣିଷ ଚିହ୍ନି ପାରନ୍ତି ନାହିଁ । ତେଣୁ ଯେଉଁ ନେତା ସେମାନଙ୍କୁ 'ପାଣି ମାଗିଲେ ପ୍ରହାର ଦିଏ' ତାକୁଇ ସେମାନେ ପୁଣି ପାଞ୍ଚବର୍ଷ ପରେ ଫୁଲମାଳ ଦେଇ କୋଳରେ ବସାନ୍ତି । ଏତେ ସରଳତା, ଏତେ ନିଷ୍କାମତା ଏବଂ ଏତେ ଭାବବିହ୍ୱଳତା ଆଉ କୋଉ ଦେଶର ଭୋଟର୍ ପାଖରେ ଥାଏ ?

ସୁଯୋଗ ନିଏ ରାଜନେତା । ସେଇ ସରଳତାର ସୁଯୋଗ ନେଇ ନେତାଟିଏ ସିଂହାସନାରୋହଣ କଲା ମାତ୍ରେ ସେ ତା'ର ନିଜର ସ୍ୱରୂପ ପ୍ରକାଶ କରେ । ସେ ଦୁଇ ହାତରେ ଖାଇବାକୁ ଆରମ୍ଭ କରେ ।

ଫଳରେ ସ୍ୱାଧୀନତାର ପଚାଶ ବର୍ଷ ଭିତରେ ଦେଶର ସବୁଠୁ ବେଶି ଲାଭ ଉଠେଇଥିବା ବ୍ୟକ୍ତିଟି ଜଣେ ଏମ୍.ପି. ବା ଏମ୍.ଏଲ୍.ଏ. କିମ୍ବା ସେମାନଙ୍କ ମନ୍ତ୍ରୀ । ଦେଶର ସମଗ୍ର ରାଜକୋଷ ଆଜି ଏଇମାନଙ୍କ ପାଦତଳେ ଅଜାଡି ଦିଆ ଯାଇଛି । ଗୋଟିଏ କେନ୍ଦ୍ର ସରକାରୀ କର୍ମଚାରୀର ଦରମା ଅନେକ କଷ୍ଟରେ ସାତ ଆଠ ବର୍ଷରେ ମାତ୍ର ଦୁଇ ତିନିଶହ ଟଙ୍କା ବଢୁଥିଲା ବେଳେ ଏବେ ଲୋକ ସଭାର ବାଚସ୍ପତି ଶ୍ରୀ ପି.ଏ.ସାଙ୍ଗମା ଏମ୍.ପି. ମାନଙ୍କର ଦରମା ୪ ଗୁଣ ବଢ଼ିବା ଆବଶ୍ୟକ ବୋଲି ଦାବୀ କରିଛନ୍ତି । ସାଙ୍ଗମା ସେତିକିରେ ଅଟକି ନାହାନ୍ତି । ସେ ଏବେ ସବୁ ଏମ୍.ପି.ଙ୍କୁ (ପ୍ରାୟ ୮ ଶହ) ସେମାନଙ୍କ କାର୍ଯ୍ୟକାଳ ଭିତରେ ପୃଥିବୀର ବିଭିନ୍ନ ଦେଶ ଭ୍ରମଣରେ ଯିବାର ବ୍ୟବସ୍ଥା ମଧ କରିଛନ୍ତି । ସେ କହନ୍ତି ଗଣତନ୍ତ୍ର ବିଷୟରେ ଏହା ସେମାନଙ୍କୁ ଅଧିକ ଜ୍ଞାନ ଆହରଣରେ ସାହାଯ୍ୟ କରିବ ।

ସାଙ୍ଗମା ଏବେ ସର୍ବୋତ୍କୃଷ୍ଟ ବାଚସ୍ପତି ବୋଲି ବିବେଚିତ ହେଲେଣି । ଭାରତର ଏବର ଗୋଳିଆ ରାଜନୀତିକୁ ତାଙ୍କର ସର୍ବୋତ୍କୃଷ୍ଟ ଦାନ ହେଲା ଗତ ପାର୍ଲାମେଣ୍ଟର ବିଶେଷ ଅଧିବେଶନ, ଯୋଉଥିରେ ଦେଖାଗଲା ଯେ ଦିନରାତି ୨୪ ଘଣ୍ଟାର ଭାଷଣବାଜି ଭିତରେ ସମସ୍ତେ କେବଳ ଚକ୍ଷୁ କୁଟିଛନ୍ତି । କି ଫଳ ସେଥିରୁ ଦେଶବାସୀଙ୍କୁ ମିଳିଲା ସେ କଥା କିଏ ତାଙ୍କୁ ପଚାରିବ ? ଗୋଟାଏ ଘଣ୍ଟା ଲୋକସଭା ଅଧିବେଶନରେ ଦେଶରେ ଖର୍ଚ୍ଚ ହୁଏ ୨.୮୫ ଲକ୍ଷ ଟଙ୍କା । ଆମ ସଂସଦୀୟ ଗଣତନ୍ତ୍ରର ବିଚାର ଆଲୋଚନାକୁ ଅଧିକ ଫଳପ୍ରଦ କରିବା କଥା ଚିନ୍ତା କରି ଥିଲା ବେଳେ ସାଙ୍ଗମା ଦେଖିଲେ ସଭ୍ୟମାନେ 'ସଭ୍ୟ' ଆଚରଣ କରୁ ନାହାନ୍ତି । ସେମାନଙ୍କୁ ସଭ୍ୟ ଆଚରଣ ଶିକ୍ଷା ଦେବାକୁ ସେ ସରକାରୀ ଖର୍ଚ୍ଚରେ ଗୋଟିଏ ଟ୍ରେନିଂ କ୍ଲାସ ମଧ ଖୋଲିଛନ୍ତି ।

ଗତ ବିଶେଷ ଅଧିବେଶନ ଆଉ କିଛି କରୁ ବା ନ କରୁ ଅଚାନକ ଭାବେ ଏମ୍.ପି. ମାନଙ୍କ ଦରମା ଓ ଭତ୍ତାକୁ ଦୁଇ ଗୁଣ କରିଦେଲା । ସେମାନଙ୍କ ଦରମା ୩୦୦୦ ରୁ ୬୦୦୦ ହେଲା । କ୍ଷେପନାରୀ ଆଲାଉନ୍ସ ୧ ହଜାରରୁ ୧୫ ଶହ, ସେକ୍ରେଟେରୀଏଲ୍ ଆସିଷ୍ଟାନ୍ସ ୪୦୦୦, ଟେଲିଫୋନ୍ ଆଲାଉନ୍ସ ୫୦ ହଜାରରୁ ଏକ ଲକ୍ଷ ଟଙ୍କା (ବର୍ଷକୁ) । ତାଛଡ଼ା ବିଦ୍ୟୁତ୍ ଶୁଳ୍କର ଫ୍ରି ହାର ମଧ୍ୟ ବଢ଼ିଛି । ଏହାଛଡା ଆହୁରି ଅନେକ ସୁବିଧା ସୁଯୋଗ । ଯଥା ମାତ୍ର ଦୁଇବର୍ଷ ସଦସ୍ୟ ପଦ ଥିଲେ ଆଜୀବନ ପେନସନ ଭୋଗ, ମାଗଣା ବିମାନ ଓ ରେଳ ଯାତ୍ରା (ଏ.ସି.କ୍ଲାସ୍‌ରେ) ଏବଂ ଜଣେ ସାଥୀ ସହ ଯେ କୌଣସି ସ୍ଥାନକୁ ଯାତ୍ରା, ବର୍ଷକୁ ଏକ କୋଟି ଟଙ୍କା ନିଜ କନଷ୍ଟିଟ୍ୟୁଏନ୍‌ସିରେ ଉନ୍ନତି ପାଇଁ ଖର୍ଚ୍ଚ ଯାହା ବୁଲାଣି ରାସ୍ତାରେ ଅଧା କିମ୍ବା ତା'ଠୁ ବେଶି ପୁଣି ନିଜ ହାତକୁ ଫେରି ଆସେ ବୋଲି କୁହାଯାଉଛି ।

ଏମ୍.ପି.ମାନେ ଏଥିରେ ସନ୍ତୁଷ୍ଟ ନୁହଁନ୍ତି । ସେମାନେ ଏହାଠୁ ଆହୁରି ଅନେକ ବେଶି ଦାବୀ କରୁଛନ୍ତି । ସେମାନଙ୍କ ଦାବୀ ଭିତରେ ଅଧିବେଶନ ଚାଲୁଥିବା ବେଳେ ଦୈନିକ ଭତ୍ତା ୨ ଶହରୁ ୩ ଶହକୁ ବୃଦ୍ଧି, ଅଧିକ ମାଗଣା ବିମାନ ଯାତ୍ରା, ଗ୍ୟାସ୍ ଓ ଟେଲିଫୋନ୍ ପ୍ରଦାନର କୋଟା ଯେଉଁଥିରୁ ସେମାନେ ପ୍ରଚୁର ଅର୍ଥ ଉପାର୍ଜନ କରୁ ଥିଲେ ତା'ର ପୁନଃପ୍ରବର୍ତ୍ତନ । ତାଛଡା ସେମାନଙ୍କ ସୁବିଧା ସୁଯୋଗ ଅସରନ୍ତି । ରାଜଧାନୀର ମଧ୍ୟ ସ୍ଥଳରେ ସୁନ୍ଦର ଓ ମନୋରମ ବାସସ୍ଥାନ ଯାହାର ଅଧିକାଂଶ ଅଂଶ ଭଡ଼ାରେ ଲାଗିଥାଏ । ଘର ସଜେଇବା ଆଲାଉନ୍ସ୍ ମଧ୍ୟ ମିଳେ ବର୍ଷକୁ ୧୦ ହଜାର । ତାଛଡ଼ା ରିହାତି ମୂଲ୍ୟରେ ଅନ୍ୟାନ୍ୟ ଅନେକ ଜିନିଷ । ସେମାନଙ୍କ ଖର୍ଚ୍ଚର ସୀମା ନାହିଁ । ସେଥିପାଇଁ ସେମାନେ ବିଦେଶକୁ ଯିବାକୁ ଚାହିଁଲେ ବିନା ବାକ୍ୟ ବ୍ୟୟରେ ସରକାର ଖର୍ଚ୍ଚ କରନ୍ତି । ଗୋଟିଏ ହିସାବରୁ ଜଣାଯାଏ ଜଣେ ଏମ୍.ପି. ପାଇଁ ମାସକୁ ଅନ୍ୟୁନ ଖର୍ଚ୍ଚ ୨ ଲକ୍ଷ ଟଙ୍କା । ସବୁ ଏମ୍.ପି.ଙ୍କୁ ହିସାବକୁ ନେଲେ ଦେଶ କେତେ ଖର୍ଚ୍ଚ କରୁଛି ଜଣା ପଡ଼ିବ ।

ମୁଁ ସାଙ୍ଗମାଙ୍କ କଥା କହୁଥିଲି । ଇଏ ହେଉଛନ୍ତି ସେଇ ସାଙ୍ଗମା ଯିଏ ଅନ୍ୟ ଉପାୟରେ ହରିଆନା ମୁଖ୍ୟମନ୍ତ୍ରୀଙ୍କ ସ୍ୱେଶାଳ କୋଟାରୁ ନିଜ ଘର ପାଇଁ ହରିଆନା ଡ଼େଭଲପମେଣ୍ଟ ଅଥରିଟିଠାରୁ ବିଶାଳ ପ୍ଲଟ୍ ପାଇଛନ୍ତି ବୋଲି ଜଣା ପଡ଼ିଛି । ସେ ଏକୁଟିଆ ପାଇ ନାହାନ୍ତି । ତାଙ୍କ ସହିତ ପୂର୍ବତନ ରାଷ୍ଟ୍ରପତି ଶଙ୍କର ଦୟାଲ ଶର୍ମାଙ୍କ ପତ୍ନୀ ଓ ପୁତ୍ରଙ୍କଠାରୁ ଆରମ୍ଭ କରି ଚିତ୍ର ତାରକା ମାଧୁରୀ ଦୀକ୍ଷିତଙ୍କ ପର୍ଯ୍ୟନ୍ତ ସମସ୍ତେ ପାଇଛନ୍ତି ଆମ ଦେଶର ଭି.ଆଇ.ପି.ମାନେ ହି ଭାଗ୍ୟବାନ । ସ୍ୱର୍ଗର ପାରିଜାତଠାରୁ ଆରମ୍ଭ କରି କୁବେର ପୁରୀର ରତ୍ନ ଭଣ୍ଡାର ସବୁ ସେମାନଙ୍କ ହାତ ପାଆନ୍ତାରେ । କଥାଟି ଏବେ ବିଚାରାଳୟରେ । ଦେଖାଯାଉ କ'ଣ ହେଉଛି ।

ମୁଁ ଏବେ କିଛି ବିଧାନସଭା ସଦସ୍ୟଙ୍କ କଥା କହି ଶେଷ କରିବି । ମୁଲାୟମ୍ ସିଂହ ଯେତେବେଳେ ଉତ୍ତରପ୍ରଦେଶର ମୁଖ୍ୟମନ୍ତ୍ରୀ ଥିଲେ ସେ ବହୁ ଏମ୍.ଏଲ୍.ଏ.ଙ୍କୁ ସନ୍ତୁଷ୍ଟ ରଖିବା ପାଇଁ ଅକାତରେ ତାଙ୍କ ନିଜ ପାଣ୍ଠିରୁ ଲକ୍ଷ ଲକ୍ଷ ଟଙ୍କା ଦାନ କରୁଥିଲେ । ସେ ସଂସ୍କୃତି ଏବେ ଓଡ଼ିଶାରେ ମଧ୍ୟ ଆରମ୍ଭ ହେଇଛି । ବହୁ ସଦସ୍ୟ ବହୁ ଭାବରେ ଉପକୃତ ହେଇଛନ୍ତି ଓ ହେଉଛନ୍ତି ମଧ୍ୟ । କିଛିଦିନ ତଳେ ସବୁ ସଦସ୍ୟଙ୍କୁ ଦାମିକା ବ୍ରିଫ୍‌କେଶ୍  ଉପହାର ଦିଆଯାଇଥିଲା । ବ୍ରିଫ୍‌କେଶ୍ କଥା ଶୁଣିଲେ ଆମର ହର୍ଷଦ୍‌ଙ୍କ ବ୍ରିଫ୍‌କେଶ୍ କଥା ମନେ ପଡ଼େ । ଈଶ୍ୱର କରନ୍ତୁ ଦରିଦ୍ର ଓଡ଼ିଶାରେ ସେ କଥା ନ ହେଉ । ତେବେ ଓଡ଼ିଶାର ଏମ୍.ଏଲ୍.ଏ. ମାନେ ଦରମା ଓ ଭତ୍ତା ଇତ୍ୟାଦି ଯାହା ଯାହା ପାଆନ୍ତି ତାହା ଅନ୍ୟାନ୍ୟ ଉନ୍ନତ ରାଜ୍ୟର ଏମ୍.ଏଲ୍.ଏ.ଙ୍କ ଦରମା ଓ ଭତ୍ତା ଅପେକ୍ଷା ଯଥେଷ୍ଟ ବେଶି । ଏସବୁ ସତ୍ତ୍ୱେ ରାତି ଦିନ ନିଲାମ ବଜାରରେ ଖାଲି ହିସାବ ଚାଲିଛି କୋଉଠୁ କେତେ ମିଳିବ ।

ଏ ସମସ୍ତଙ୍କୁ ଏବେ ଟପି ଯାଇଛି କର୍ଣ୍ଣାଟକ । ସେଠାକାର ଆସେମ୍ବ୍ଲି ସଦସ୍ୟଙ୍କ ସ୍ୱାସ୍ଥ୍ୟ ମୋଟେ ଠିକ୍ ରହୁ ନ ଥିଲା । କୌଣସି ଔଷଧ ମଧ୍ୟ କାଟୁ କରୁ ନ ଥିଲା । ତେଣୁ ସେଠାକାର ମୁଖ୍ୟମନ୍ତ୍ରୀ ପ୍ରାକୃତିକ ଉପାୟରେ ସେମାନଙ୍କ ସ୍ୱାସ୍ଥ୍ୟ ଠିକ୍ ରଖି ଅଧିକ କର୍ମକ୍ଷମ କରିବାକୁ ଏବଂ ସେମାନଙ୍କ ପରମାୟୁ ଅଧିକ କରିବାକୁ ଠିକ୍ କରି ସେମାନଙ୍କ ପାଇଁ ହେଲଥ୍ କ୍ଲବ୍‌ର ବ୍ୟବସ୍ଥା କରିଛନ୍ତି । କୋଟି କୋଟି ଟଙ୍କା ବ୍ୟୟରେ ପୃଥିବୀର ଅତ୍ୟାଧୁନିକ ଯନ୍ତ୍ରପାତି ଠାରୁ ଆରମ୍ଭ କରି ସୁଇମିଂ ପୁଲର ବ୍ୟବସ୍ଥା ଯୋଗାଇ ଦିଆଯାଇଛି । 'ବଡ଼ି ମେସେଜ୍' ପାଇଁ ଉଚ୍ଚ ଟ୍ରେନିଂ ପ୍ରାପ୍ତ କର୍ମଚାରୀ ମଧ୍ୟ ଅଛନ୍ତି । ସୁଇମିଂ ପୁଲରେ ଗାଧୋଇବାର ସୁଖ, ପପ୍ ମିଉଜିକ୍ ଶୁଣିବାର ସୁଖ କେତେ ଜଣକର ଥାଏ ? ଏହି ହେଲଥ୍ କ୍ଲବ୍‌ରେ ସଦସ୍ୟଙ୍କ ପରିବାର ମଧ୍ୟ ଯୋଗ ଦେଇ ପାରିବେ । ତେବେ ମହିଳା ସଦସ୍ୟଙ୍କ ପାଇଁ ଏ କ୍ଲବ୍ ନୁହେଁ । ତାଙ୍କ ପାଇଁ ଭିନ୍ନ ବ୍ୟବସ୍ଥା ବୋଧେ ହେବ । ■

(ଅନୁପମ ଭାରତ - ୨୯.୧୦.୯୭)

# ଏ ଅବକ୍ଷୟ କାହିଁକି ?

ମାସକ ତଳେ ମୁଁ ମାନ୍ଦ୍ରାଜ ଯାଇଥିଲି ସେଠାକାର ଉତ୍କଳ ଏସୋସିଏସନ୍‌ର ନିମନ୍ତ୍ରଣ କ୍ରମେ । ଅଶୀଦଶକର ପ୍ରଥମ ଭାଗରେ ମୁଁ ସେଠି ଥିଲାବେଳେ ଏହି ଏସୋସିଏସନ୍‌ର ଶୁଭଦାନ ସହିତ ସେଠି ଜଗନ୍ନାଥ ମନ୍ଦିର ନିର୍ମାଣର ଗୋଟାଏ ଯୋଜନା କଥା ଆମେ କେତେ ଜଣ ଚିନ୍ତା କରି ଥିଲୁଁ । ସେତେବେଳେ ଆମ ସହିତ ଥିଲେ ବିଶିଷ୍ଟ ହୃଦରୋଗ ଚିକିତ୍ସକ ଡ଼କ୍ଟର କବି ପ୍ରସାଦ ମିଶ୍ର, ଆଇ.ଆଇ.ଟି.ର ପ୍ରଫେସର ଡ଼କ୍ଟର ଏସ୍.ଏନ୍. ମାଝି ଏବଂ ଆହୁରି ଅନେକ । ସେଠାକାର ଓଡ଼ିଆ ଛାତ୍ର ସମାଜ ମଧ୍ୟ ଆମ ପଛରେ ଗୋଟାଏ ବିରାଟ ଶକ୍ତି ଭାବରେ ସେତେବେଳେ କାମ କରି ଥିଲେ । ଗତ ନଭେମ୍ବର ମାସରେ ସେ ସ୍ୱପ୍ନ ଆମର ଆଂଶିକ ସାକାର ହେଲା । ମନ୍ଦିରର ଦ୍ୱିତୀୟ ପର୍ଯ୍ୟାୟ କାମ ଶେଷ ହେଲା ।

ଗୋଟାଏ ବିରାଟ ଯୋଜନା । ପ୍ରାୟ ଏକ କୋଟି ଟଙ୍କା ଖର୍ଚ୍ଚ ହେଲାଣି । ସମୁଦ୍ର କୂଳରେ ଏକ ଏକର ପରିମିତ ସ୍ଥାନରେ ଗଣେଶ ମନ୍ଦିର ଓ ଲକ୍ଷ୍ମୀ ମନ୍ଦିର ସମେତ ଗୋଟାଏ ଛୋଟ ଅତିଥି ଭବନ ମଧ୍ୟ ନିର୍ମାଣ ସରିଛି । ଉଦ୍ଦେଶ୍ୟ, ଯେଉଁ ଓଡ଼ିଆମାନେ ସେଠାକୁ ଯାଉଛନ୍ତି ସେମାନେ ସେଠି ରହି ପାରିବେ । ମୁଖ୍ୟ ଜଗନ୍ନାଥ ମନ୍ଦିରର ନିର୍ମାଣ କାର୍ଯ୍ୟ ଦ୍ରୁତ ଆଗେଇ ଚାଲିଛି । ଏଇ ବର୍ଷ ସରିବ ।

ମାନ୍ଦ୍ରାଜର ଉତ୍କଳ ଏସୋସିଏସନ ଏବେ ଗୋଟାଏ ବିରାଟ ଅନୁଷ୍ଠାନରେ ପରିଣତ ହେଲାଣି । ପ୍ରତିବର୍ଷ ଉତ୍କଳ ଦିବସ, ଗଣେଶ ପୂଜା, ସରସ୍ୱତୀ ପୂଜା ଓ ରଥଯାତ୍ରା ପ୍ରଭୃତି ଅନୁଷ୍ଠିତ ହୁଏ । ମାନ୍ଦ୍ରାଜ ଓ ତାର ଆଖପାଖର ହଜାର ହଜାର ଓଡ଼ିଆ ତାର ପରିବାରବର୍ଗ ସହିତ ସେଠି ଉପସ୍ଥିତ ହୁଅନ୍ତି । ସେମାନଙ୍କୁ ଦେଖିଲେ ଆତ୍ମା ପରିତୃପ୍ତ ହୋଇଯାଏ । ଏ ପ୍ରକାର ବନ୍ଧୁ ମିଳନ ମୁଁ ଭାରତର ଅନ୍ୟ କୋଉଠି ଦେଖିନାହିଁ । ଯଦିଓ ସବୁଠି ସେଇ ଉତ୍କଳୀୟଙ୍କ ସହିତ ମୁଁ ମିଶିଛି ଏବଂ ପର୍ବ ପର୍ବାଣୀରେ ଯୋଗ ଦେଇଛି ।

ଏଥର ଯେତେବେଳେ ମାନ୍ଦ୍ରାଜ ଗଲି, ଦେଖିଲି, ସେ ଉତ୍ସବରେ ନିମନ୍ତ୍ରିତ ହୋଇ ଆସିଛନ୍ତି ବିଶିଷ୍ଟ ଲେଖକ ମନୋଜ ଦାସ । ଏଇଠି କହି ରଖିବା ଠିକ୍ ହେବ- ମନୋଜ ଦାସ ହିଁ ପ୍ରଥମ ବ୍ୟକ୍ତି, ଯାହାଙ୍କୁ ପ୍ରଥମେ ଆମେ କେତେଜଣ ଉତ୍କଳ ଦିବସ ପାଳନ ଉପଲକ୍ଷେ ନିମନ୍ତ୍ରଣ କରି ଆଣି ଥିଲୁଁ । ସେତେବେଳେ ଏସୋସିଏସନ ଗଠିତ ହୋଇ ନ ଥିଲା । ତାପରେ ଆମେ ସବୁ ଗଠନ ପ୍ରକ୍ରିୟାରେ ଲାଗି ପଡ଼ିଲୁଁ ।

ତେବେ ସେ ଯାହେଉ, ଏଥର ମନୋଜ ଦାସଙ୍କ ସହିତ ପୁରୀର ରାଜା ମଧ ଉପସ୍ଥିତ ଥିଲେ । କିନ୍ତୁ ଉତ୍ସବାନୁଷ୍ଠାନରେ ଟିକିଏ ଡେରିରେ ପହଞ୍ଚିବାରୁ ମୋର ସେମାନଙ୍କ ସହିତ ସାକ୍ଷାତ ହେଇ ପାରିଲାନି । ଡ଼କ୍ଟର କବି ପ୍ରସାଦ ମିଶ୍ର ମୋତେ କହିଲେ ଯେ ପୂର୍ଣ୍ଣାହୂତି ଚାଲୁଥିଲା ବେଳେ ମନୋଜ ବାବୁ କୁଆଡ଼େ କହିଲେ, ''ମୋର ମନେ ହେଲା ଏଠି ଦେବାବତରଣ ହେଇ ସାରିଛି ।'' ଡ଼କ୍ଟର ମିଶ୍ର ପଚାରିଲେ କେମିତି ? ମନୋଜ ବାବୁ କହିଲେ, ''ମୋତେ ସେତେବେଳେ ଗୋଟାଏ spiritual vibration ହେଲା ପରି ଲାଗିଲା ।''

ଏକଥା ଶୁଣି ମୁଁ ଡ଼କ୍ଟର ମିଶ୍ରଙ୍କୁ କହିଲି ମନୋଜ ବାବୁ ଯାହା କହିଛନ୍ତି, ତାହା ଠିକ୍ । ଡ଼କ୍ଟର ମିଶ୍ର ମୋତେ ଅନେଇ ରହିଲେ । ଏ କଥାର ବାକି ଅଂଶ ମୁଁ ପରେ କହୁଛି ।

ମାଡ୍ରାଜ ଯେତେବେଳେ ଯାଇଛି, ସେତେବେଳେ ପୁଟପର୍ତ୍ତି ଓ ତିରୁପତି ମଧ ମୋର ଆଉ ଥରେ ଦେଖିବାକୁ ଇଚ୍ଛା ହେଲା । ତେଣୁ ଫେରନ୍ତା ରାସ୍ତାରେ ମୁଁ ପୁଟପର୍ତ୍ତି ଗଲି । ଦେଖିଲି ଯା ଭିତରେ ଅନେକ ପରିବର୍ତ୍ତନ ହେଇ ସାରିଛି । ପୁଟପର୍ତ୍ତିର ସମସ୍ତ ଜଳ ଯୋଗାଣ ବ୍ୟବସ୍ଥା ସେଠାକାର ସାଇବାବାଙ୍କ ଆଶ୍ରମ ଗ୍ରହଣ କରିଛି । ଏକ ବିରାଟ ସହରକୁ ଜଳ ଯୋଗାଣ କମ କଥା ନୁହେଁ । ସମସ୍ତ ଦାୟିତ୍ୱ ଆଶ୍ରମର । ସେଥିପାଇଁ ସ୍ଥାନୀୟ ଲୋକ ନିଯୁକ୍ତ ହୋଇଛନ୍ତି । ଆନ୍ଧ୍ର ସରକାର ସେଠି କିଛି କରୁ ନାହାନ୍ତି । ଆଶ୍ରମ ତରଫରୁ ବିଶାଳକାୟ ଅତ୍ୟାଧୁନିକ ହାସପାତାଳ ମଧ ନିର୍ମାଣ ହୋଇଛି, ଆମ କଟକ ମେଡ଼ିକାଲ କଲେଜ ପରି ହେବ । କିନ୍ତୁ ଚାରିଆଡ଼େ ଚିକ୍ ଚିକ୍ କରୁଛି । ଚଟାଣରେ ମୁହଁ ଦେଖିହେବ । ହାସପାତାଳରେ ଅତ୍ୟାଧୁନିକ ଯନ୍ତ୍ରପାତି ମଧ ରହିଛି ।

ସବୁଠୁ ବଡ଼ କଥା ହେଲା, ସେ ହାସପାତାଳରେ ସବୁ ପ୍ରକାର ଚିକିତ୍ସା ମାଗଣାରେ ହୁଏ । ଖାଲି ଚିକିତ୍ସା ମାଗଣାରେ ନୁହେଁ, ରୋଗୀ ସହିତ ଯାଇଥିବା ଲୋକର ରହିବା ଓ ଖାଇବା ମଧ ମାଗଣାରେ ହୁଏ । କେବଳ ଯେ ଭକ୍ତମାନଙ୍କୁ ମାଗଣା ସୁବିଧା ଦିଆଯାଏ ତା ନୁହେଁ, ସମସ୍ତଙ୍କୁ ବିଶେଷ କରି ଗରିବମାନଙ୍କୁ ସେ ସୁଯୋଗ ପ୍ରଥମେ ମିଳେ ।

ପୁଟପର୍ତ୍ତିରେ ଆଶ୍ରମ ତରଫରୁ ସ୍କୁଲ, କଲେଜ ମଧ ଅଛି । ବହୁ ବିଦେଶୀ ପର୍ଯ୍ୟଟକ ପ୍ରତିଦିନ ଧାଡ଼ି ବାନ୍ଧିଛନ୍ତି । ଆଶ୍ରମ ସାମନାରେ ଯେଉଁ ରିର୍ଜଭେସନ୍ କାଉଣ୍ଟର ଅଛି, ସେଥିରେ ଗୋଟିଏ ଜାଗାରେ ବସ, ରେଳ ଓ ପ୍ଲେନ୍ ଟିକଟ ମିଳେ । କମ୍ପ୍ୟୁଟରାଇଜଡ୍ କାଉଣ୍ଟରରେ ଟିକେଟ୍ ଟିଏ ପାଇଁ ଦୁଇ ତିନି ମିନିଟରୁ ବେଶି ଲାଗେନା । ସବୁଠୁ ବଡ଼ କଥା, ସେଠାକାର ପରିବେଶ । ସମଗ୍ର ସହରଟା ଯେମିତି ଚମକୁଛି । ପରିଷ୍କାର, ପରିଚ୍ଛନ୍ନତା ସେଠାକାର କଲଚର । ଏହା ହିଁ ସେଠାକାର ବିଶେଷତ୍ୱ । ଶୃଙ୍ଖଳା, ସାଧୁତା ସେଠି ଜନଜୀବନ ସହିତ ନେସି ହୋଇ ଯାଇଛି ।

ଆମେ ସେଠୁ ଆସିଲୁଁ ତିରୁପତି । ଦୀର୍ଘ ପନ୍ଦର ବର୍ଷ ପରେ ଆଉ ଥରେ ସେଠକୁ ଯାଉ ଥିବାରୁ ମୋତେ ଅନେକଟା ନୂଆ ନୂଆ ଲାଗିଲା । ତିରୁପତିରୁ ତିରୁମଲା ଯାଏ ସମଗ୍ର ସ୍ଥାନଟା ଯେମିତି ସମ୍ପୂର୍ଣ୍ଣ ବଦଳି ଯାଇଛି । ରାସ୍ତା, ଘାଟ, ବସଷ୍ଟାଣ୍ଡ, ରେଳଷ୍ଟେସନ- ସବୁଠି ଆଭିଜାତ୍ୟର ଅଭିସାର । ମନ୍ଦିରର ପରିବେଶ ଯେତିକି ବଦଳିଛି ତାର ନୀତି ନିୟମ ତା'ଠୁ ଆହୁରି ଅନେକ ବେଶି ବଦଳିଛି । ଯାତ୍ରୀମାନଙ୍କ ପାଇଁ ଦେବ ଦର୍ଶନ, ରହିବା ଓ ଖାଇବା ସମ୍ପୂର୍ଣ୍ଣ ମାଗଣା । ଏବେ ମୁଣ୍ଡନ(ବାଳପକା) ମଧ ମାଗଣାରେ ହେଇ ଯାଉଛି । ପଣ୍ଡାମାନେ ଯାତ୍ରୀମାନଙ୍କ ସହିତ କଥାବାର୍ତ୍ତା ମଧ କରନ୍ତି ନାହିଁ । ସବୁ କାମରେ କ୍ୟୁ- କ୍ୟୁରେ ନ ଥିଲେ ଗୋଳମାଳ ହୁଏ । ଲଡୁ ମଧ ମାଗଣାରେ ମିଳେ(କେତେକ କ୍ଷେତ୍ରରେ) । ସେଠି ଏତେ ଲଡୁ ବ୍ୟବହାର ହୁଏ ବୋଲି ଏବେ ଦିନକୁ ଲକ୍ଷେ ଲଡୁ ତିଆରି କରି ପାରିବା ଭଳି ଗୋଟାଏ କାରଖାନା ବସିଛି । ଶହ ଶହ ଲୋକ ଏଇ କାମରେ ଲାଗିଛନ୍ତି । ତଥାପି କୁଆଡେ ଲଡୁର ଆବଶ୍ୟକତା ପୂରଣ ହୋଇପାରୁ ନାହିଁ । ମଣିଷର ଧାର୍ମିକ ଧ୍ୟାନ ଧାରଣା ସହିତ ବ୍ୟବସାୟିକ ବିଚାର ବୁଦ୍ଧି ତାଳ ଦେଇ ଚାଲିଛି । ଟଙ୍କା ବର୍ଷା କଥା ଆମେ ବେଳେ ବେଳେ ସ୍ୱପ୍ନ ଦେଖୁଁ । ତିରୁପତିରେ କିନ୍ତୁ ବାସ୍ତବତା । ଥରେ ଯଦି ଆଖି ମୁଦି ପାଞ୍ଚ ଦଶ ମିନିଟ ମନ୍ଦିରର ହୁଣ୍ଡି ପାଖରେ ଜଣେ ଠିଆ ହେବ, ତେବେ ଟଙ୍କା, ସୁନା କେମିତି ଖଳ ଖଳ ହେଇ ପଡୁଛି, ତାହା ଜାଣି ପାରିବ । ସେ ବର୍ଷା ଅବିଶ୍ରାନ୍ତ ଦିନରାତି ଚାଲି ଥାଏ । ମନ୍ଦିରର ରୋଜଗାର ଦିନକୁ କୋଟି କୋଟି ଟଙ୍କା । ପର୍ବ ପର୍ବାଣୀରେ ତାହା ଅନେକ ଗୁଣ ବଢ଼ିଯାଏ । କଳ୍ପନା କରି ହୁଏନା । ରୋଜଗାର ଦୃଷ୍ଟିରୁ ଏହା କୁଆଡେ ପୃଥିବୀର ଦ୍ୱିତୀୟ ବୃହତ୍ତମ ଧର୍ମାନୁଷ୍ଠାନ ।

ତିରୁପତିରେ ମଧ ମନ୍ଦିର ତରଫରୁ ସ୍କୁଲ, କଲେଜ, ବିଶ୍ୱବିଦ୍ୟାଳୟ, ହାସପାତାଳ ଏବଂ ମାଗଣା ବସ ସର୍ଭିସ ଅଛି । ମନ୍ଦିର ଜନ ହିତକର କାମରେ କୋଟି କୋଟି ଟଙ୍କା ସରକାରଙ୍କୁ ଦାନ କରୁଛି । ମୋର ଏ ସବୁ କହିବାର ଉଦ୍ଦେଶ୍ୟ ହେଉଛି, ପୁଟପର୍ତ୍ତି ଓ ତିରୁପତି ଏ ଦୁଇଟି ଧର୍ମାନୁଷ୍ଠାନ ହେଲେ ମଧ ଏମାନଙ୍କର ସମାଜକୁ ଦାନ ଅତୁଳନୀୟ । ଏଠି ଧର୍ମର ଏକ ସ୍ୱତନ୍ତ୍ର ଭୂମିକା ରହିଛି । ସେ ଭୂମିକା ମଣିଷକୁ ସତ୍ ଓ ଶୃଙ୍ଖଳା ମାଧମରେ ଏକ ଉନ୍ନତତର ସୋପାନକୁ ନେଇ ଯାଏ । ଯେ କୌଣସି ଧର୍ମରେ ଏ ଦୁଇଟି ବସ୍ତୁ ଯେତିକି ପ୍ରାଧାନ୍ୟ ଲାଭ କରିଛି, ଗୋଟିଏ ସୁସ୍ଥ ଓ ସୁନ୍ଦର ସମାଜ ଗଠନରେ ମଧ ସେତିକି ତାର ଆବଶ୍ୟକତା ରହିଛି । ସମାଜ ତାକୁ ଛାଡି ଚଳି ପାରେନା । କେବଳ ଗୋଟାଏ ଧ୍ୱଂସାଭିମୁଖୀ ସମାଜ ଏ ଦୁଇଟି ଠାରୁ ଦୂରେଇ ଯିବା କଥା ଚିନ୍ତା କରି ପାରେ ।

ତିରୁପତିରୁ ଆମେ ପୁରୀ ଆସିଲୁଁ । ଆମ ଯାତ୍ରାର ଶେଷ ପାଦ । ପୁରୀରେ ଗୋଟାଏ ଦିନର ଅବସ୍ଥାନ । ମନ୍ଦିରରେ ପଣ୍ଡାଙ୍କ ଅତ୍ୟାଚାର, ଦିଅଁ ଦର୍ଶନର ଅବ୍ୟବସ୍ଥା- ଏସବୁ ଆମକୁ ଅତିଷ୍ଠ କରି ପକେଇଲା । ବସ୍‌ଷ୍ଟାଣ୍ଡରୁ ବାସସ୍ଥାନ ପର୍ଯ୍ୟନ୍ତ ଏବଂ ବାସସ୍ଥାନରୁ ସମୁଦ୍ର ସ୍ନାନ ଯାଏ- ସବୁଠି ଗୋଟାଏ ଶିକାରି ଆଖି ଆମକୁ ଶୋଷି ପକାଉ ଥାଏ । ସବୁବେଳେ ସବୁଠି ଆମ ଆଗରେ ଦୁଇଟା ହାତ ଘୁରି ବୁଲୁଥାଏ ।

ଶ୍ରୀମନ୍ଦିରରୁ 'ଶ୍ରୀ' ଟା କେବେଠୁ କୋଉ ଏକ ଅନନ୍ତ ପାପଗର୍ଭ ଭିତରେ ଲୁଚି ଗଲାଣି । ପରିବେଶ ଦେଖିଲେ ମୁଣ୍ଡ ବିଗିଡ଼ି ଯାଏ । ସିଂହଦ୍ୱାର ଠାରୁ ଗର୍ଭଗୃହଯାଏ ମଣିଷ ରୁନ୍ଧି ହୋଇ ଯାଏ, ଅଣ ନିଃଶ୍ୱାସୀ ହୋଇଯାଏ ।

ମୁଁ ସିଂହଦ୍ୱାରରେ ଠିଆ ହେଲି ଆଖିବୁଜି । ଦେଖିଲି ଶ୍ରୀ ଠାକୁର ଦୁଇ ହାତ ପାତି ଭକ୍ତଙ୍କ ଆଡ଼େ ସଜଳ ନୟନରେ ଦେଖୁଛନ୍ତି । କହୁଛନ୍ତି, ଦେଖିଲୁତ ଦେଉଳରୁ ପଥର ଖସିଲାଣି । ଆଉ ଗୋଟାଏ ଶତାବ୍ଦୀ ପାରିହେବ କି ନା ସନ୍ଦେହ । ଏଆଡେ ହେଇ ମୋ ପେଟକୁ ଦେଖ । ଲକ୍ଷ୍ମୀ ନ ଥିଲା ବେଳେ ସିନା ଭୋକରେ ଆଉଟି ପାଉଟି ହେଉଥିଲା । ଏବେତ ଲକ୍ଷ୍ମୀଙ୍କ ପେଟ ବି ଖାଲି । ଛପନ ପଉଟିରୁ ଛ'ପା ବି ମୋତେ ମିଳୁନି । ମୋ ଜମିବାଡ଼ି ସବୁ କିଏ କୁଆଡ଼େ ନେଇ ଗଲେଣି । ଏବେ ବିକ୍ରୀ ହେବ ବୋଲି ବିଜ୍ଞାପନ ପ୍ରକାଶ ପାଇଛି ।

ଲୋକେ ଜମି କେତେବେଳେ ବିକନ୍ତି ? ସବୁ ହରେଇ ସାରିଥିଲା ବେଳେ । ଆଉ କଅଣ ଅଛି ଯେ ? ଜମି ବି ଅଛି କୋଉଠି ବିକ୍ରୀ ହେବ ? ଜମି ନାହିଁ କି ଧାନ, ଚାଉଳ ବି ନାହିଁ । ମୋ ରୋଷଘରେ ତ ଛାତ ଗଳି ପଡ଼ିଲାଣି । ହାଣ୍ଡି ଓଲଟି ପଡ଼ିଛି । ସବୁତ ଖାଇ ଗଲେ । ଆଉ କଅଣ ଅଛି ଯେ ? ମୋ ମନ୍ଦିର ପଛପଟୁ ପାଚେରୀ ଭାଙ୍ଗି ସବୁ କିଏ କୁଆଡେ ନେଇ ଗଲେଣି । ହେଇ ତ ସେଦିନ ହୁଣ୍ଡି ପାଇଁ ଭକ୍ତ ଜଣେ ଚେକ ପଠେଇ ଥିଲା । ତାର ବି ପତ୍ତା ମିଳୁନି । ତାକୁ ବି କିଏ ଖାଇଗଲା । ପୁଲିସ ଏବେ କେସ କରିଛି । କଅଣ ମିଳିବ ସେଥିରୁ ?

ତୁ ତ ଜାଣୁ, ମୁଁ ଜନ୍ମରୁ ହାତ ଖଣ୍ଡିଆ ନ ଥିଲି । ମୋ ହାତକୁ ଏଇଠି ଖଣ୍ଡିଆ କରି ଦିଆ ଯାଇଛି । ଏଇ ଉତ୍କଳରେ ଜନ୍ମ ବେଳକୁ ମୋତେ ହାତ ଖଣ୍ଡିଆ ହେବାକୁ ପଡ଼ିଲା । ସେ କଷ୍ଟ ମୋତେ ଯୁଗେ ଯୁଗେ ବହନ କରିବାକୁ ପଡ଼ିବ । ମୋତେ ଏଠୁ ଉଦ୍ଧାର କର ବୋଲି ମୁଁ ରଡ଼ି ଛାଡୁଛି । କିନ୍ତୁ ମୋତେ ଶୁଣୁଛି କିଏ ?

ଜଗନ୍ନାଥ ଆଉ ପୁରୀରେ ନାହାନ୍ତି । ସେ ଏବେ ବମ୍ବେ, କଲିକତା, ମାଡ୍ରାଜ, ଦିଲ୍ଲୀ କିମ୍ବା ଲଣ୍ଡନ କି ଆମେରିକାରେ ବାସ କରୁଛନ୍ତି । ତା' ନ ହେଇଥିଲେ ମନୋଜ ବାବୁ ସେଦିନ spiritual vibration କଥା କହି ନ ଥାଆନ୍ତେ । ମୁଁ ଅନ୍ତତଃ ତାକୁ ଏଇ ଦୃଷ୍ଟିରେ ଦେଖୁଛି ।

କେବଳ ଯେ ଜଗନ୍ନାଥଙ୍କର ଅଧୋଗତି ଘଟିଛି ତା ନୁହେଁ । ସାମଗ୍ରିକ ଭାବେ ପୁରୀ ସହରର ଓ ଓଡ଼ିଶାର ମଧ୍ୟ ଅଧୋଗତି ଘଟିଛି । ପୁରୀକୁ ଓଡ଼ିଆ ଜାତିର ସାଂସ୍କୃତିକ ପ୍ରାଣକେନ୍ଦ୍ର ବୋଲି ଧରା ଯାଉଥିଲା । ଓଡ଼ିଶା ବାହାରେ ଓଡ଼ିଆ 'ପୁରୀ ଜଗନ୍ନାଥ ଧାମର ଓଡ଼ିଆ' ଭାବରେ ପରିଚିତ ହେଉଥିଲା, ତେଣୁ ଜଗନ୍ନାଥ ବା ପୁରୀ ହିଁ ଥିଲା ଆମର ପ୍ରକୃତ ପରିଚୟ । ତାହା ହିଁ ଥିଲା ଓଡ଼ିଆର ଆତ୍ମା, ପ୍ରାଣ ଓ ପରାକାଷ୍ଠା । କିନ୍ତୁ କେଇଟା ବର୍ଷ ଭିତରେ ଆମେ ଜଗନ୍ନାଥଙ୍କୁ ଟଙ୍କୁ କରିବା ସଙ୍ଗେ ସଙ୍ଗେ ସମଗ୍ର ପୁରୀକୁ ମଧ୍ୟ

ଗ୍ରାସ କରି ନେଲୁଁ । ତାଙ୍କର ପ୍ରିୟ ଭକ୍ତ ଜଗନ୍ନାଥ ଦାସଙ୍କ ସାଧନାର ପୀଠ ସାତ ଲହରୀ ମଠ ଯେଉଁଠି ଦିନେ ଜଗନ୍ନାଥ ଦାସ ଓଡ଼ିଆ ଜାତିର ସମସ୍ତ ଚିନ୍ତା ଓ ଚେତନାର ବାର୍ତ୍ତା ବହନ କରୁଥିବା ଭାଗବତ ରଚନା କରିଥିଲେ; ସେଇ ପୂଣ୍ୟପୀଠକୁ ଏବେ ଆମ ସମାଜର ବଡ଼ପଣ୍ଡାମାନେ ଖଣ୍ଡ ଖଣ୍ଡ କରି କିଏ କୁଆଡ଼େ ନେଇ ଗଲେଣି । ସେ ପୀଠ ଏବେ ଅସାଧୁ, ଅସାମାଜିକ ତଥା ମଦ୍ୟପଙ୍କ ମଠରେ ପରିଣତ ହୋଇଛି । କଥିତ ଅଛି ସେଠି ଜଗନ୍ନାଥ ଦାସଙ୍କୁ ସମ୍ମାନ ଦେଖେଇବା ପାଇଁ ଦିନେ ବଙ୍ଗୋପସାଗର ନିଜେ ଦୂରକୁ ଘୁଞ୍ଚିଯାଇ ପୂଣ୍ୟାତ୍ମାଙ୍କୁ ସ୍ଥାନ ଛାଡି ଦେଇ ଥିଲା ।

ଅନ୍ୟ ଜାତିଟିଏ ହୋଇଥିଲେ ସେ ସ୍ଥାନକୁ ସରକାର ସଂରକ୍ଷିତ କରି ଗୋଟାଏ ବିରାଟ ସଂଗ୍ରହାଳୟର ସ୍ମୃତିପୀଠରେ ପରିଣତ କରି ପାରି ଥାଆନ୍ତା । କିନ୍ତୁ ହାୟ, ଓଡ଼ିଆର ଅଧୋଗତି ଏବେ ଏତେ ତଳକୁ ଗଲାଣି ଯେ ସେ ଭାଗବତକୁ ଭୁଲି ସାରିଲାଣି । ତାର ଲେଖକକୁ କିଏ ପଚାରେ ? ଯେଉଁ ଭାଗବତ ଦିନେ ଆମର ପ୍ରତି ଗାଁରେ ପ୍ରତି ଘରେ ପାଠ କରା ଯାଉଥିଲା, ପୂଜା ହେଉଥିଲା, ଯେଉଁ ପବିତ୍ର ପରମ୍ପରା ଦିନେ ଓଡ଼ିଶାରେ ଏତେ ଲୋକପ୍ରିୟ ଥିଲା ଯେ ଆସାମର ବୈଷ୍ଣବବାଦର ପ୍ରବର୍ତ୍ତକ ତଥା ସଂସ୍କାରକ ଶ୍ରୀମନ୍ତ ଶଙ୍କର ଦେବ ସେଥିରେ ଅନୁପ୍ରାଣିତ ହୋଇ ତାକୁ ଆସାମକୁ ନେଇ ଗଲେ ଏବଂ ଅସମୀୟମାନଙ୍କୁ ସେଇ ମନ୍ତ୍ରରେ ଦୀକ୍ଷିତ କରାଇଲେ । ଫଳରେ ଏବେ ଆସାମରେ ଏପରି ପରିବାର ନାହିଁ ଯାହା ଘରେ ଭାଗବତ ପୋଥି ନାହିଁ, ଏପରି ବ୍ୟକ୍ତି ନାହିଁ ଯେ ଭାଗବତ ପାଠ କରେନା, ଏପରି ପର୍ବ ପର୍ବାଣୀ ନାହିଁ ଯେଉଁଥିରେ ଭାଗବତ ପୂଜା କରା ଯାଏନା ।

ସେଠି ଶଙ୍କର ଦେବ ଭାଗବତ ମାଧ୍ୟମରେ ନୂଆ ଜାତିଟିକୁ ଗଢ଼ି ଦେଲେ । ସେ କହିଲେ ଭାଗବତର ଆତ୍ମାକୁ ଯେ ଚିହ୍ନିନାହିଁ, ଜାଣିନାହିଁ, ସେ ଜାତି ନିଜକୁ ଚିହ୍ନି ନାହିଁ । ଭାଗବତର ଆତ୍ମା ହିଁ ଆମର ଆତ୍ମା; ଭାଗବତର ମୂଳମନ୍ତ୍ର ହିଁ ଆମ ସମାଜର ମୂଳମନ୍ତ୍ର ।

ଅସମୀୟା ସମାଜରେ ଜାତିପ୍ରଥା ନାହିଁ । ସେଠି ଯୌତୁକ ପ୍ରଥା ନାହିଁ । ସେଠି ଉଚ୍ଚନୀଚର ଭେଦଭାବ ନାହିଁ । ସେଠି ଅଛି ଜାତୀୟତାର, ମହାନୁଭବତାର ଏବଂ ସ୍ୱାଭିମାନର ଗର୍ବ ଓ ଗୌରବ । ସେଠି ଅଛି ଏକତାର ଅହଂକାର । ସମଗ୍ର ପୃଥିବୀ ହୁଏତ ଦିନେ ଖଣ୍ଡ ଖଣ୍ଡ ହୋଇ ଯାଇପାରେ । କିନ୍ତୁ ରହିଯିବ ଅସମୀୟ ଜାତି ଏକ ଓ ଅଭିନ୍ନ ହୋଇ ।

ମୁଁ ଅମଡ଼ା ମାଡ଼ି ଚାଲି ଯାଉଛି । ଶଙ୍କରଦେବ, ଚୈତନ୍ୟ ଦେବ ଓ ଜଗନ୍ନାଥ ଦାସ; ଏମାନେ ସମସାମୟିକ । କନ୍ତୁ କୋଉ ଜାତି କାହାକୁ ନେଇ କେବେ ଉର୍ଦ୍ଧ୍ୱରେ ଟେକି ଧରିଛି, ସେ କଥା ଏବେ ଚିନ୍ତା କରା ଯାଇପାରେ । ମୋର ଅଗ୍ରଜତୁଲ୍ୟ ବନ୍ଧୁ ସ୍ୱର୍ଗତଃ ହୃଦାନନ୍ଦ ମହାନ୍ତି ଯେ କି ସାତଲହରୀ ମଠର ରକ୍ଷଣାବେକ୍ଷଣ ପାଇଁ ଆଜକୁ

ପ୍ରାୟ ୧୫ ବର୍ଷ ହେଲା ବହୁ ଚିଠି, ବହୁ ନେତା, ପଣ୍ଡିତ ତଥା ବୁଦ୍ଧିଜୀବୀଙ୍କ ଠାକୁ ଲେଖି ଆସୁଛନ୍ତି ସେ ଯେତେବେଳେ ମୋତେ କହିଲେ ସାତଲହରୀର ପଚାଶ ଭାଗରୁ ବେଶି ସ୍ଥାନ ଓଡ଼ିଶାର ବଡ଼ ଅଫିସର ଓ ନେତାମାନେ ନିଜ ନାଁରେ କରେଇ ନେଇଛନ୍ତି ଏବଂ କେହିକେହି ସେଠି ଏବେ ତାରକା ହୋଟେଲମାନ କରିବାକୁ ଚିନ୍ତା କରୁଛନ୍ତି ମୁଁ ସ୍ତବ୍ଧ ହୋଇଗଲି । କାହାକୁ କହିବା ? କିଏ ଶୁଣିବ ? ସମସ୍ତେ ତ ଖାଇବାରେ ବ୍ୟସ୍ତ ।

ଓଡ଼ିଶାର ସବୁ ମଠ ମନ୍ଦିର ଆଜି ଶନିର ବଳୟ ଭିତରେ ଛନ୍ଦି ହୋଇ ପଡ଼ିଛନ୍ତି । କାହାର ସୁନା ଅଳଙ୍କାର କିଏ ଚୋରାଇ ନେଇ ଗଲାଣିତ, ଆଉ କାହାର ମନ୍ଦିର ସମ୍ପତ୍ତି କିଏ ଖାଇ ଗଲାଣି । ସବୁଠାରୁ ଆଶ୍ଚର୍ଯ୍ୟର କଥା, ସରକାରୀ ନୀତି ନିୟମରେ ପରିଚାଳିତ ଏହି ମନ୍ଦିର ସମ୍ପତ୍ତିକୁ ନେଇ ଯେଉଁ ବ୍ୟବସାୟୀମାନେ ବ୍ୟବସାୟ କରି ଏବଂ ଲୋକସେବା କରିବା ଉଦ୍ଦେଶ୍ୟରେ କାମ ଆରମ୍ଭ କରିଥିଲେ, କାଳକ୍ରମେ ସେସବୁ ମଧ୍ୟ ଚଳୁ ହୋଇ ସାରିଲାଣି । ଠାକୁର, ମଠ ଓ ମନ୍ଦିରକୁ ନେଇ ଆମେ ଏବେ ନୂଆ ବ୍ୟବସାୟ ଆରମ୍ଭ କରିଛୁଁ । ଅତି ସହଜରେ ଏବଂ ସନ୍ଦେହର ସମ୍ପୂର୍ଣ୍ଣ ଉର୍ଦ୍ଧ୍ୱରେ ରହି ଠାକୁରଙ୍କ ନାଁରେ ଭଲ ରୋଜଗାର କରିହୁଏ । ଯେ ଆଉ କୌଣସି କାମକୁ ନ ପାରିଲା, ସେ ମନ୍ଦିର, ମଠ ଓ ଆଶ୍ରମ ନାଁରେ ଭଲ ଚାନ୍ଦା ସଂଗ୍ରହ କରି ପାରେ । ସେତେବେଳେ ଆଉ କିଛି ଚିନ୍ତା ନ ଥାଏ । ମନ୍ଦିର ପାଇଁ କାମ କରୁଥିବା ଲୋକର ସାମାଜିକ ଓ ଆର୍ଥିକ ସ୍ଥିତି ଅନ୍ୟମାନଙ୍କ ଭିତରେ ପରିଷ୍କାର ବାରି ହୋଇପଡ଼େ । ତାପରେ ସମୟ ଆସେ ଯେତେବେଳେ ସେ ନିଜେ ମନ୍ଦିର ଅପେକ୍ଷା ବେଶି ମାନ୍ୟତା ପାଏ ।

ଆମର ଅବକ୍ଷୟ କେବଳ ସଂସ୍କୃତି ଜଗତର ସୀମା ଭିତରେ ଆବଦ୍ଧ ହୋଇ ରହି ନାହିଁ । ଆମର ଚିନ୍ତା ଓ ଚରିତ୍ରକୁ ମଧ୍ୟ ଆବୋରି ପକାଇଛି । ଫଳରେ ଆମେ ଏକ ପଙ୍ଗୁ ଜାତି ହିସାବରେ ପରିଗଣିତ ହେଲୁଣି । ଆମେ କିଛି କରିବାକୁ ଚାହୁଁନା । କିଛି ନ କରି ଅନେକ କିଛି ପାଇ ଯିବାକୁ ଚାହୁଁ । ସେଇଟା ଯଦି ଏକା ରାତିକେ ହୁଏ ଆହୁରି ଭଲ । ଏ ପ୍ରକାର ଗୋଟାଏ ନୂଆ କଲଚର୍ ଆମ ଭିତରେ ମୁଣ୍ଡ ଟେକି ଉଠିଲାଣି । ବିନା କାମରେ, ବିନା ପରିଶ୍ରମରେ ସବୁ ଆମ ହାତ ପାହାନ୍ତାରେ ଯେମିତି ମିଳିଯାଉ ।

ବୋଧେ ଏଇ କାରଣରୁ ଆମର ଶିଳ୍ପ ଓ କୃଷି ଉତ୍ପାଦନ ଅତି ଦ୍ରୁତ ଗତିରେ ତଳକୁ ଖସିଲାଣି । ଯେଉଁରାଜ୍ୟ ଦିନେ ବାହାରକୁ ଧାନ ଚାଉଳ ରପ୍ତାନୀ କରୁଥିଲା, ସେ ବର୍ତ୍ତମାନ ଚାଉଳ ପାଇଁ ବାହାର ରାଜ୍ୟ ଉପରେ ନିର୍ଭର କଲାଣି । କେନ୍ଦ୍ର ସରକାର ଗୋଟାଏ ମାସ ତାଙ୍କ ଭଣ୍ଡାରରୁ କୋଟା ନ ପଠାଇଲେ ଆମ ହାଣ୍ଡି ଓଲଟି ପଡୁଛି । ଦୁଇ ତିନିଟା ସାର କାରଖାନା ଥିବା ସତ୍ତ୍ୱେ ଆମ କୃଷି ଉତ୍ପାଦନ ବଢୁନାହିଁ । ଦୁର୍ଭାଗ୍ୟ ଯେ ସେ କାରଖାନା ମଧ୍ୟ ବର୍ଷଯାକ ଅଚଳ । ଖାଲି ଧାନ ଚାଉଳ ନୁହେଁ; ଆଳୁ, ପିଆଜ, ଡାଲି, ତେଲ, ଲୁଣ, ଚିନି, ଅଣ୍ଡା, ଦୁଧ, ଚା, ଏପରିକି ଆଚାର ମଧ୍ୟ ଆମର ବାହାରୁ ଆସେ । ଅନ୍ୟଦିଗରେ କପଡ଼ା, ପୋଷାକ, ଛତା, ଜୋତା, ଔଷଧପତ୍ର ଏସବୁ ମଧ୍ୟ ବାହାରୁ ଆସେ । ନାରୀ ପ୍ରସାଧନର ସିନ୍ଦୁର, ଅଳତା, ବିନ୍ଦି, କାଚଚୁଡ଼ୀ, ଶଂଖା, କନ୍ତୁରୀ,

ସ୍ନୋ, ପାଉଡ଼ର, ଲିପ୍‌ଷ୍ଟିକ୍, ସାବୁନ ଏବଂ ଦର୍ପଣ ମଧ୍ୟ ବାହାରୁ ନ ଆସିଲେ ଆମ ଡ୍ରେସିଂ ଟେବୁଲ ଶୋଭା ପାଏନା ।

ଖାଲି କୃଷି ଓ ଶିଳ୍ପରେ ଏ ଅଧୋଃଗତି ? ନା, ଆମ ସାହିତ୍ୟ ତ ପୂରାପୂରି ଅନ୍ୟ ଉପରେ ନିର୍ଭରଶୀଳ । ଏବେ ଏପରି ବହି ନାହିଁ, ଯାହା ସମ୍ପୂର୍ଣ୍ଣଭାବେ ନିଜ ମାଟିରୁ ଉଭାରି ଆସିଛି । ଏପରି ଲେଖକ ନାହିଁ, ଯେ ଏକାନ୍ତଭାବେ ନିଜସ୍ୱ ଚିନ୍ତା ଓ ଚେତାନା ଉପରେ ନିର୍ଭର କରିପାରେ । ବାହାର ସାହିତ୍ୟ ଏତେ ପରିମାଣରେ ଆମକୁ ଅକ୍ତିଆର କରି ସାରିଲାଣି ଯେ, କଥା କଥାରେ ଆମେ ବାହାରକୁ ନ ଗଲେ, ବାହାର ଲେଖାକୁ ଉଦ୍ଧାର ନ କଲେ ନିଜକୁ ପଣ୍ଡିତ ବୋଲି କହି ହେଉନି । ଥରେ ଜଣେ ବନ୍ଧୁ କହୁଥିଲେ, ଜଣେ ଓଡ଼ିଆ ଅଧ୍ୟାପକ ଏବଂ ଆଉ ଜଣେ ଇଂରାଜୀ ଅଧ୍ୟାପକ ଏ ଦୁଇଟିରୁ କାହାକୁ ଢୋଗଁ କରା ଯାଇ ପାରେ ? କଥା ଉଠିଲେ ଆମେ ପ୍ରଥମେ ଇଂରାଜୀ ଅଧ୍ୟାପକ କଥା ହିଁ ଚିନ୍ତା କରିବା । ଆମ ଚିନ୍ତା ଏବେ କୁଆଡ଼େ ଗଲାଣି ତାହା ଏଇଥିରୁ ଜଣାପଡ଼ିବ । ଆମ ଲେଖକମାନେ ପ୍ରଦେଶ ଭିତର ଅପେକ୍ଷା କୌଣସି ପ୍ରକାରେ ବାହାରର ଯେ କୌଣସି ପୁରସ୍କାରକୁ ବେଶି ପସନ୍ଦ କରନ୍ତି । ଏବେ ଅରୁନ୍ଧତୀ ରାୟଙ୍କୁ ଦେଖିଲା ପରେ ଆମ ଲେଖକମାନେ କେମିତି ହେଲେ ତାଙ୍କ ବହିଟା ଇଂରାଜୀରେ ହୋଇଯାଉ ଏବଂ ଆମେରିକା କି ଇଂଲଣ୍ଡରେ ଅବସ୍ଥିତି ନ ଥିବା ଯେ କୌଣସି ଅନୁଷ୍ଠାନଟିଏ ସାର୍ଟିଫିକେଟ୍‌ଟିଏ ଦେଇ ଦେଉ ବୋଲି ଭାବିଲେଣି । ଆଉ ଦଳେ ଓଡ଼ିଆରେ ଲେଖି କିଛି ଲାଭ ନାହିଁ ବୋଲି ରୀତିମତ ପ୍ରଚାର ଆରମ୍ଭ କଲେଣି । ହୁଏତ ଭାବୁଛନ୍ତି ଅରୁନ୍ଧତୀ ଏକାଥରକେ ଅନ୍ଧାରରୁ ଆଲୋକକୁ ଚାଲିଗଲେ, ଆମେ କାହିଁକି ଯାଇ ପାରିବାନି ? ସେ ଯେମିତି କଲେ ଆମେ ବି ସେମିତି କରିବା । ଏପ୍ରକାର ଗୋଟାଏ ଅବକ୍ଷୟୀ ସ୍ଥାଣୁତା ଓ ସ୍ଖଳନ ଆମକୁ ଘେରିଥିବା ବେଳେ ଆମେ କେମିତି କହିବା ଓଡ଼ିଆ ଗୋଟାଏ ବୀର ଜାତି ଥିଲା ?

ସବୁଠି, ସବୁକ୍ଷେତ୍ରରେ ଆମକୁ ଗୋଟିଏ ସ୍ଥାଣୁତା, ସ୍ଖଳନ ଏବଂ ଅପାରଗ ପଣିଆ ବା ଯାହାକୁ ଅନ୍ୟ ଅର୍ଥରେ ଆଳସ୍ୟ ମଧ୍ୟ କୁହା ଯାଇପାରେ, ଆମକୁ ଘେରି ରହିଛି । ଏପରି ଅବସ୍ଥାରେ ଓଡ଼ିଆ ଏକାକୀ ଗୋଟିଏ ବୀର ଜାତି ଥିଲା ବୋଲି କେମିତି କହିବା ? କଟକରୁ ଭୁବନେଶ୍ୱର କିମ୍ବା କଟକର ଚଉଦୁଆରକୁ ବଦଳି ହେଲେ ଆମର ଅବସ୍ଥା ଅସମ୍ଭାଳ ହୋଇ ଯାଉଛି ଏବଂ ଏଥିପାଇଁ ଆବଶ୍ୟକ ହେଲେ ସ୍ତ୍ରୀର ଗହଣା ବନ୍ଧା ପକେଇ ଯାଇ ମନ୍ତ୍ରୀଙ୍କ ଘରେ ଧାରଣା ଦେଉଥିବା ବେଳେ କେମିତି ଆମେ ବିଶ୍ୱାସ କରିବା ଯେ ଦିନେ ଏ ଜାତି ସାତ ସମୁଦ୍ର ତେର ନଈ ପାର ହୋଇ ବାଣିଜ୍ୟ କରିବାକୁ ଯାଉଥିଲା ? କେମିତି ବିଶ୍ୱାସ କରି ହେବ ଯେ ଦିନେ ଏ ଜାତି ନିଜ ଜୀବନକୁ ପାଣି ଛଡ଼େଇ ପାଲଟଣା ଡ଼ଙ୍ଗାରେ କଲମ୍ବସ ପରି ସମୁଦ୍ର ପରେ ସମୁଦ୍ର ପାର ହୋଇ ମାସ ମାସ କାଳ ପିଲା, ପରିବାର ଛାଡି ବିଦେଶରେ ଯାଇ ରହୁଥିଲା ? ଆଜିର ଅବସ୍ଥା ଦେଖିଲେ ସେତେବେଳର କଥା ବୁଢ଼ୀ ଅସୁରୁଣୀ ଗପ ପରି ମନେ ହେଉଛି ।

ଆମ ଜାତି କେବେ ବୀର ଥିଲା କେଜାଣି ? କିନ୍ତୁ ଇଂରେଜମାନେ ଯେତେବେଳେ ଆସିଲେ ସେମାନେ ଆମକୁ ଦେଖିବା ମାତ୍ରେ ଜାଣିଗଲେ ଯେ ଏ ଜାତି ନିରାମିଷାଷୀ । ଏମାନେ ଲଢ଼େଇ କରିବାତ ଦୂରର କଥା, ପ୍ରତିବାଦ ମଧ୍ୟ କରି ପାରନ୍ତି ନି । (ବୋଧେ ବିନା ପ୍ରତିରୋଧରେ ସେମାନେ ଆସିଗଲେ ବୋଲି) । ତେଣୁ ସେମାନେ ବେଙ୍ଗଲ ରେଜିମେଣ୍ଟ, ପଞ୍ଜାବ ରେଜିମେଣ୍ଟ, ଗୁର୍ଖା ରେଜିମେଣ୍ଟ ଇତ୍ୟାଦି କଲେ, କିନ୍ତୁ ଓଡ଼ିଶା ରେଜିମେଣ୍ଟ କଲେ ନାହିଁ । ଆମର ଅତୀତ ଇତିହାସ ନ ଦେଖି ମଧ୍ୟ ସେମାନେ ବୋଧେ ଜାଣିଗଲେ ଯେ, ''ଯୁଦ୍ଧ'' ଓ ''ଓଡ଼ିଆ'' ଅଲଗା ଅଲଗା କଥା । କିମ୍ବା ହୁଏତ ଭାବିଲେ ଯେ କଳିଙ୍ଗ ଯୁଦ୍ଧ ଏ ଜାତିର ଶେଷ ଯୁଦ୍ଧ । ଆଉ ଅଛି କିଏ ଯେ ଯୁଦ୍ଧ କରିବ ? ତେବେ କାରଣ ଯାହା ହେଉନା କାହିଁକି, ସେମାନେ ଓଡ଼ିଶାରେ ଭଲ କାଣ୍ଟନମେଣ୍ଟର ମଧ୍ୟ ଆବଶ୍ୟକତା ନାହିଁ ବୋଲି ଅନୁଭବ କଲେ । ସାମୟିକ ଆନ୍ଦୋଳନ ହେଲେ ବିହାର କି ବେଙ୍ଗଲରୁ ସୈନ୍ୟ ଆଣି ଚଳେଇ ନେଇ ହେବ ବୋଲି ଭାବିଲେ ଏବଂ ସେହିପରି କଲେ ମଧ୍ୟ । ସ୍ୱାଧୀନତା ପୂର୍ବରୁ କୌଣସି ଆନ୍ଦୋଳନକୁ ସେମାନେ ସେତେ ଗୁରୁତର ବୋଲି ମନେ କରି ନାହାନ୍ତି । ଅତି ସହଜରେ ଏବଂ ଅଳ୍ପ ସୈନ୍ୟ ସାମନ୍ତ ନେଇ ଆନ୍ଦୋଳନ ଦମନ କରିଛନ୍ତି ।

ଏବେ ଇଂରେଜଙ୍କ ପୂର୍ବ କଥା ଦେଖିବା । ସବୁଠିତ ପରାଜୟ ଏବଂ ବ୍ୟର୍ଥତାର ଗ୍ଲାନି ଆମକୁ ଘାରିଛି । ଅଶୋକ ଆସିଲେ, କଳାପାହାଡ଼ ଆସିଲେ । ବର୍ଗୀ, ମରହଟ୍ଟା ସମସ୍ତେ ଆସିଲେ ଏବଂ ଆମକୁ ନିଶ୍ଚିହ୍ନ କଲେ ନଚେତ୍ ଲୁଣ୍ଠନ କଲେ । ମୁସଲ୍‌ମାନ୍‌ମାନେ ଆସିଲେ ଏବଂ ଆମକୁ ବିଭିନ୍ନ 'କର' ମାଧ୍ୟମରେ ଶୋଷଣ କଲେ । ଗଡ଼ଜାତର ରାଜାମାନେ ତ ବରାବର ଆମକୁ ଶୋଷଣ କରିବାର ଅଧିକାର ପାଇଥିଲେ । ସବୁଠୁ ଆଶ୍ଚର୍ଯ୍ୟର କଥା ଯେ, ସେମାନେ ଯେତେ ଅତ୍ୟାଚାର ଓ ଶୋଷଣ କଲେ ମଧ୍ୟ ଆମେ ଖାଲି ତାଙ୍କୁ ନୁହେଁ, ତାଙ୍କ ପାଖଲୋକଙ୍କୁ ମଧ୍ୟ ଦେଖିଲାମାତ୍ରେ ଫୁଲମାଳ ଦେଇ ବନ୍ଦେଇ ପକାଉ । ଏବେବି ସେଇ କଥା କରୁଛୁଁ । କୋଉ ଯୁଗରୁ ତ ସେମାନଙ୍କ ରାଜ୍ୟ ଗଲାଣି । କିନ୍ତୁ ଏବେ ମଧ୍ୟ ଆମେ ସେମାନଙ୍କୁ ମହାରାଜା ଓ ମହାରାଣୀ ବୋଲି ଭୋଟ ଦେଇ ଦେଉଛୁଁ । ଏହା ଭିତରେ ଅର୍ଦ୍ଧଶତାବ୍ଦୀ ଅତିକ୍ରାନ୍ତ ହେଲାଣି ତଥାପି ସେମାନଙ୍କ ପ୍ରତି ଆମର ସମ୍ମାନ ଅତୁଟ ରହିଛି ।

ଗଡ଼ଜାତର ରାଜାମାନେ ଆମ ଉପରେ ଯେଉଁ ଅତ୍ୟାଚାର କରିଛନ୍ତି, ତାର ଚାରିଭାଗରୁ ଭାଗେ ମଧ୍ୟ ଇଂରେଜମାନେ ଆମ ଉପରେ କରି ନାହାନ୍ତି । 'ଯତନନଗର' ଆଜି ବି ତ ଓଡ଼ିଶା ଇତିହାସରେ ଅତ୍ୟାଚାରର ଅମ୍ଳାନ ସାକ୍ଷୀଟିଏ । ତାର ପ୍ରତ୍ୟେକ ଶିଳାସ୍ତରରେ ଅତ୍ୟାଚାରର ଇସ୍ତାହାର ଏବେ ବି ଆମକୁ ଆଖି ମିଟିକା ମାରୁଛି । ଆଜିବି ଯଦି ତାକୁ କେହି ପଢ଼ିବାକୁ ଚେଷ୍ଟାକରେ, ତେବେ ସେ ଜାଣିପାରିବ ଯେ, ସଭ୍ୟତାର ସମସ୍ତ କଳଙ୍କର ଇତିହାସ ସେଇଠି ସ୍ତରୀଭୂତ ହୋଇ ରହି ଯାଇଛି । ନାଜୀ କେମ୍ପରେ ନାହିଁ କି ହିରୋସୀମାରେ ନାହିଁ; କି ଅନ୍ଧକୂପରେ ମଧ୍ୟ ନାହିଁ । ତା ସତ୍ତ୍ୱେ ସ୍ତାବକତା

ଆମଠି ଏତେ ବେଶି, ଆମ ରକ୍ତମାଂସରେ ଏପରି ସଞ୍ଚରୀ ଯାଇଛି ଯେ ଆମେ ସେମାନଙ୍କୁ ଆଜି ଦେଖିଲା ମାତ୍ରେ ମୁଣ୍ଡ ନୁଆଁଇ ଦେଇ ପାଦଧୂଳି ପାଇଁ ହାତ ବଢ଼ାଇ ଦେଉଛୁଁ ।

କୌଣସି ବୀର ଜାତିର ଏ ଚରିତ୍ର କେବେ ହୋଇ ପାରେନା । କିପରି କୁହାଯିବ ଯେ ଓଡ଼ିଆ ଗୋଟିଏ ସଂଗ୍ରାମୀ ଜାତି ଥିଲା ବୋଲି ? କି ସଂଗ୍ରାମୀ ଲକ୍ଷଣ ଏମାନଙ୍କଠି ଅଛି ? ଉତ୍ତର ସ୍ୱାଧୀନତାର ଓଡ଼ିଶାରେ ଗୋଟିଏ ବୋଲି ରାଜ୍ୟବ୍ୟାପି ଆନ୍ଦୋଳନ ହୋଇ ନାହିଁ । ତେଣୁ ଏଠି ବୀରତ୍ୱ ଅଛି ବୋଲି ଜାଣି ହୁଏନା । ହେଇ ତ ସେ ଦିନର କଥା । ଏବେ ବି ସେ କଥା ମନରୁ ଯାଇନି । ବରଂ ସେ କଥା ମନେ ପଡ଼ିଲେ ମୁଣ୍ଡଟା ଆପେ ଆପେ ତଳକୁ ନଇଁ ଆସେ ।

ଓଡ଼ିଶାର ଲୋକମାନେ ସେନାବାହିନୀରେ ଯୋଗ ଦେବାକୁ ପସନ୍ଦ କରନ୍ତିନି ବରଂ ଭୟ କରନ୍ତି ବୋଲି କହିବା ଠିକ୍ ହେବ । ପୁଅ ଅନ୍ୟ କୌଣସି ଚାକିରି ନ ପାଇ ଆର୍ମି ରିକ୍ରୁଟିଙ୍ଗ୍ ସେଣ୍ଟରକୁ ଯାଇଛି ଶୁଣିଲେ ପରିବାର ଭିତରେ ଝଡ଼ଟିଏ ଆପେ ଆପେ ସୃଷ୍ଟି ହୋଇ ଯାଏ । ତେଣୁ ୧୯୬୨ରେ ଚୀନ୍-ଭାରତ ଯୁଦ୍ଧ (ପ୍ରକୃତରେ ସେଇଟା ଥିଲା ଏକ ପାଖିଆ ଯୁଦ୍ଧ) ବେଳେ କିଛି ଓଡ଼ିଆଙ୍କୁ ସେନାବାହିନୀରେ ଯୋଗ ଦେବାକୁ ସରକାର ଉତ୍ସାହିତ କରିବା ସମେତ ଅନ୍ୟ କେତେକ ଅଧିକ ସୁବିଧା ସୁଯୋଗ ମଧ୍ୟ ଘୋଷଣା କଲେ । ତଥାପି କିଏ କାହିଁକି ଯାଆନ୍ତା । ସେଆଡେ ଯୁଦ୍ଧ ଘୋରତର ଆରମ୍ଭ ହୋଇ ଗଲାଣି । ତେଣୁ ଓଡ଼ିଶା ସରକାର ସେତେବେଳର ଓଡ଼ିଶା ମିଲିଟାରୀ ପୁଲିସରୁ (ଏବେ O.S.A.P.) ଗୋଟିଏ କମ୍ପାନୀକୁ କିଛିଦିନ ପାଇଁ ପଠେଇବାକୁ ଠିକ୍ କଲେ । ଏମାନେ ଯୁଦ୍ଧକ୍ଷେତ୍ରକୁ ନ ଯାଇ ପଛରୁ ସେନାବାହିନୀକୁ ସାହାଯ୍ୟ କରିବେ । ଯେଉଁମାନେ ଅନେକ କଷ୍ଟରେ ଯିବାକୁ ମଙ୍ଗିଲେ, ସେମାନଙ୍କୁ ଉତ୍ସାହିତ କରିବାକୁ କଟକ ଷ୍ଟେସନରେ ଗୋଟିଏ ସମ୍ବର୍ଦ୍ଧନା ସଭା ଅନୁଷ୍ଠିତ ହେଲା । ବିରାଟ ଆୟୋଜନ । ମନ୍ତ୍ରୀଙ୍କ ଠାରୁ ଆଇ.ଜି ପର୍ଯ୍ୟନ୍ତ ସମସ୍ତେ ଆସିଲେ ସେମାନଙ୍କୁ ବିଦାୟ ଦେବାକୁ । ସେମାନେ ସବୁ ପ୍ଲାଟଫର୍ମ ଉପରେ, 'ଓଡ଼ିଆ ଅତୀତରେ ଖୁବ ବୀର ଜାତି ଥିଲା' କହି ଭାଷଣ ଦେଲେ ଏବଂ ଆଜି ଯେଉଁମାନେ ଯାଉଛନ୍ତି, ସେମାନେ ଆମର ବୀର ସୈନିକ ବା ପାଇକ ପୁଅ କହି ସେମାନଙ୍କ ବେକରେ ଲମ୍ବା ଲମ୍ବା ଫୁଲମାଳମାନ ଲମ୍ବେଇ ଦେଲେ । ଜବାନ୍‌ମାନେ ଏ ଭାଷଣରେ ଏପରି ଅନୁପ୍ରାଣିତ ହେଲେ ଯେ ସେମାନଙ୍କ ଆଖିରୁ ଧାର ଧାର ଲୁହ ବହି ପଡ଼ିଲା । ସେମାନଙ୍କୁ ଅଧିକ ଉତ୍ସାହିତ କରିବାକୁ ଝିଅମାନେ ସୈନିକମାନଙ୍କୁ ଫୁଲ ଓ ଚନ୍ଦନ ଦେଇ ବନ୍ଦେଇ ପକାଇଲେ । ଖବରକାଗଜର ରିପୋର୍ଟରମାନଙ୍କ ସାମନାରେ (ସେତେବେଳେ ଟି.ଭି. କିମ୍ବା ଭିଡିଓ କେମେରା ନ ଥିଲା) ଏହାକୁ ଏକ ଐତିହାସିକ ଘଟଣା କହି ଆମର ପୂର୍ବ ଗୌରବ ଫେରି ଆସିଲା ବୋଲି ମଧ୍ୟ କହିଲେ । ତାର କିଛି ସମୟ ପରେ ଗାଡ଼ି ଆସିଲା । ଗାଡ଼ି ଷ୍ଟେସନରେ ଅଟକିବା ମାତ୍ରେ ଆମର ବୀର ସୈନିକମାନେ ଫୁଲମାଳ ଓ ଚନ୍ଦନ ଟିପା ସହ ଗାଡ଼ିକୁ ଉଠିଲେ ଏବଂ ସଙ୍ଗେ ସଙ୍ଗେ ଅପରପାର୍ଶ୍ୱରେ ଓହ୍ଲେଇ ପଡ଼ି ଆଖି ବୁଜା ନିଜ ଗାଁ ଆଡ଼କୁ ଦୌଡ଼ିଲେ । ଓଡ଼ିଆ ଜାତିର

ଇତିହାସ ଏକ ଅନ୍ଧକାରଚ୍ଛନ୍ନ ଅତୀତର ଇତିହାସ । ଗର୍ବ, ଗୌରବ, ସ୍ୱାଭିମାନ ଏବଂ ଶୌର୍ଯ୍ୟ ଏସବୁ ଗୋଟିଏ କଥା ଏବଂ ବାସ୍ତବତାର ଘଟଣାବଳୀ ଆଉ ଏକ କଥା । ଚନ୍ଦ୍ରକୁ ଦୂରରୁ ଦେଖିଲେ ଯେତେ ସୁନ୍ଦର ଦିଶେ, ଯେମିତି ଆମର କବିତ୍ୱ ଉଚ୍ଛୁଳି ପଡ଼େ, ତାକୁ ପାଖରେ ଠିଆ ହୋଇ ଦେଖିଲେ ସେମିତି ଲାଗେନା । କାବ୍ୟ କବିତାର ଧାର ଶୁଖି ଯାଏ ।

ଆମର ସ୍ଖଳନ ଆଜି ଆରମ୍ଭ ହୋଇ ନାହିଁ । ଅନେକ ଆଗରୁ ହୋଇଛି । ତେବେ ସ୍ୱାଧୀନତା ପରେ ଆମ ଜାତିର ଚନ୍ଦ୍ରସେଣାମାନେ ସେ ସ୍ଖଳନକୁ ଆହୁରି କ୍ଷୀପ୍ରତର କଲେ । ବିଗତ ଶତାବ୍ଦୀ ବୋଧେ ଆମପାଇଁ ଅନେକ କାରଣରୁ ମାହେନ୍ଦ୍ର ମୁହୂର୍ତ୍ତ ଆଣି ଦେଇଥିଲା । ଫକୀରମୋହନ, ମଧୁସୂଦନ, ଗୋପବନ୍ଧୁ ପ୍ରଭୃତି ଯେଉଁ କେତେଜଣ ମନିଷୀ ଜନ୍ମଲାଭ କଲେ, ସେମାନେ ଏ ଜାତି ପାଇଁ ଗୋଟିଏ ଗୋଟିଏ ଠେକ ଦେଇ ଥିବାରୁ ଆମେ ଏ ଯାଏ ବର୍ତ୍ତିଗଲୁଁ । ଚଳିତ ଶତାବ୍ଦୀରେ ସେପରି ମହାପୁରୁଷ କେହି ଜନ୍ମଲାଭ କରି ନାହାନ୍ତି । ଯେଉଁମାନେ ଜନ୍ମିଲେ ସେମାନେ ଆଉ ଏକ ପୃଥିବୀର କଥା କହିଲେ । ଆଉ ଏକ ଓଡ଼ିଆ ସଂସ୍କୃତି କଥା ଚିନ୍ତା କଲେ, ଯୋଉଥିରେ ବ୍ୟକ୍ତିସ୍ୱାର୍ଥ, ବ୍ୟକ୍ତି ଚିନ୍ତା ଏବଂ ବ୍ୟକ୍ତିବାଦ ହିଁ ପ୍ରାଧାନ୍ୟ ଲାଭ କଲା ।

ଏବେ ଦଳେ କହୁଛନ୍ତି ସରକାର କିଛି କରୁ ନାହାନ୍ତି, ସବୁ କଥାରେ ସରକାରକୁ ଦାୟୀ କରିବା ଆମର ଗୋଟିଏ ଅଭ୍ୟାସ । ନିଜର କ୍ଷମତା ନ ଥିଲେ ଅନ୍ୟକୁ ଦାୟୀ କରାଯାଏ । ଆମେ କିଛି କରିବୁନି, ସବୁ ସେମାନେ କରିଦେବେ, ଆଉ ଏକ ଧ୍ୱଂସକାରୀ ଚିନ୍ତା । ସରକାର କେବେ ସାହିତ୍ୟ ଓ ସଂସ୍କୃତିର ଉନ୍ନତି ସାଧନ କରି ପାରେନା । ତା' ଯଦି ହେଉ ଥାଆନ୍ତା ତେବେ ସରକାର ପରିଚାଳିତ ଗଣମାଧ୍ୟମଗୁଡ଼ିକ (ଉଭୟ ପ୍ରିଣ୍ଟ ଓ ଇଲେକ୍‌ଟ୍ରୋନିକ୍) ସେ ସମସ୍ୟାର ସମାଧାନ କରି ପାରୁ ଥାଆନ୍ତା । ସରକାରରେ ଥିବା ସାହିତ୍ୟ ଏକାଡ଼େମୀ କିଛି କରିପାରେ କି ? ସଙ୍ଗୀତ ଓ ନାଟକାନୁଷ୍ଠାନ ? ଏସବୁ ସ୍ଥାନରେ କାହାରି କିଛି କରିବାର ନ ଥାଏ ବୋଲି ରାସ୍ତାକଡ଼ରୁ ଧରିଆଣି ତା ମୁଣ୍ଡରେ ସୁନାକଳସ ଢ଼ାଳି ଦିଆଯାଏ । ଆମର ଏବର ନୀତିନିୟମ ଅନୁସାରେ ସଂସ୍କୃତି ମନ୍ତ୍ରୀ ଯେ ଜଣେ ସଂସ୍କୃତିସମ୍ପନ୍ନ ବ୍ୟକ୍ତି ହୋଇଥିବେ, ତା'ର କିଛି ମାନେ ନାହିଁ । ଶିକ୍ଷାମନ୍ତ୍ରୀ ଯେ ଶିକ୍ଷାର ଉଚ୍ଚ ଆଦର୍ଶରେ ବିଶ୍ୱାସ କରୁଥିବେ, ତାର ମଧ ମାନେ ନାହିଁ । ତେଣୁ ଏମାନଙ୍କ ଠାରୁ ସଂସ୍କୃତିର ସୁରକ୍ଷା କଥା ଆଶା କରିବା ବୃଥା । ନିଜ ଅନ୍ତର ଭିତରୁ ଉତ୍‌ଥିତ ଏକ ପ୍ରାଣମୟ ଉଚ୍ଛ୍ୱାସ ହିଁ କେବଳ ଭାଷା, ସାହିତ୍ୟ ଓ ସଂସ୍କୃତିକୁ ଉଚ୍ଚରୁ ଉଚ୍ଚତର ସୋପାନକୁ ନେଇଯାଏ । ଏଥିପାଇଁ ଆବଶ୍ୟକ ଇଚ୍ଛାର ଏକ ଆଗ୍ନେୟ ଉଦ୍‌ଗୀରଣ । ଆମେ ଯେ କୌଣସି ଉନ୍ନତ ଜାତିର ଇତିହାସ ଅଧ୍ୟୟନ କଲେ ତାହା ହିଁ ଦେଖି ପାରିବା । 

(ଅନୁପମ ଭାରତ -୯.୨ - ୨୨.୨- ୧.୩.୧୯୯୮)

# ଯୁଦ୍ଧ ନୁହେଁ, ଶାନ୍ତି ଚାହୁଁ

ସେଦିନ ଥିଲା ବୁଦ୍ଧ ଜୟନ୍ତୀ । ସେଦିନ ଶାନ୍ତିର ବାଣୀ ପୃଥିବୀର ପ୍ରତ୍ୟେକ ମଣିଷ ପାଇଁ ବିଞ୍ଚି ହୋଇ ଯାଇ ଥିଲା । ଏଇ ଭାରତରୁ ସେଇ ବାଣୀ ପ୍ରଥମେ ଆରମ୍ଭ ହୋଇ ପୃଥିବୀକୁ ନୂଆ ସନ୍ଦେଶ ଦେଇ ଥିଲା । ମଣିଷ ମୃତ୍ୟୁ, ଦୁଃଖ, ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ ଭାରତ ହିଁ ପ୍ରଥମେ ଚେଷ୍ଟା କରି ଥିଲା ।

ସେହିପରି ଏକ ପବିତ୍ର ଦିବସରେ ଭାରତ ଆଣବିକ ବୋମା ବିସ୍ଫୋରଣ କରି ସମଗ୍ର ପୃଥିବୀ ପାଇଁ ମୃତ୍ୟୁର ପଥ ଖୋଲିଦେଲା । ଯାହା ଆମେ ହଜାର ହଜାର ବର୍ଷ ଧରି ସମଗ୍ର ମୁକ୍ତିକାମୀ ମଣିଷ ପାଇଁ ଏକ ଆଲୋକର ପଥ ଭାବରେ ଗ୍ରହଣ କରି ଆସିଥିଲୁଁ, ଆଜି ତାକୁ ନିଜ ହାତରେ କବର ଦେଇ ଦେଲୁଁ ଏବଂ କହିଲୁଁ- ''ହେଇଦେଖ, ଆମ ହାତରେ ମାରଣାସ୍ତ୍ର । ଏବେ ସମସ୍ତେ ମୃତ୍ୟୁ ପାଇଁ ପ୍ରସ୍ତୁତ ହୁଅ ।''

ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ଗୋଟିଏ ଆଣବିକ ବୋମାର ବିଭୀଷିକା ଆମେ ଦେଖିଛୁଁ । ଲକ୍ଷ ଲକ୍ଷ ନିରୀହ ମଣିଷ ଆଜି ମଧ୍ୟ ତାର ବିଷ ଜ୍ୱାଳାରେ ଆତଯାତ ହେଉଛନ୍ତି । ସେମାନେ ହୁଏତ ବଂଶାନୁକ୍ରମେ ସେ ଯନ୍ତ୍ରଣାରୁ ମୁକ୍ତି ପାଇବେ ନାହିଁ । ପାଇବା ସମ୍ଭବ ନୁହେଁ । ଆମେ ସେ ସବୁ ଦେଖିଛୁଁ, ଏବେ ବି ଦେଖୁଛୁଁ । ସେ ନାରକୀୟ ଯନ୍ତ୍ରଣାର ଛବି ଏବେ ବି ଆମ ମାନସପଟରୁ ଲିଭିନାହିଁ । ତଥାପି ଆମେ ଚେତିଲୁ ନାହିଁ । ବୋମାଟିଏ ନିକ୍ଷେପ ପରେ କ'ଣ ହେବ ସେ କଥା ମୋଟେ ଭାବିଲୁ ନାହିଁ । କାହାକୁ ମାରିବୁ ? କିଏ ଆମର ଶତ୍ରୁ ? କୋଉ ଯୁଗରୁ ତ ଆମେ ମନ୍ତ୍ର ଉଚାରଣ କରି ଆସୁଚୁଁ- 'ବସୁଧୈବ କୁଟୁମ୍ବକମ୍' । ସମଗ୍ର ପୃଥିବୀ ଆମର ପରିବାର । ସମସ୍ତେ ମୋର ମିତ୍ର, ଭାଇ, ବଂଧୁ, ପରିଜନ । କିଏ ମୋର ପର ? କାହାକୁ ଶତ୍ରୁ ମଣିବି ? ଆନ୍ତର୍ଜାତିକ ସୀମାରେଖା ପାଖରେ ଯେଉଁମାନେ ବାସ କରନ୍ତି ସେମାନେ ଜାଣିଥିବେ ସେ ସୀମାରେଖାଟି କେତେ ଯନ୍ତ୍ରଣା ଦାୟକ । ବାପକୁ ପୁଅଠାରୁ, ପୁଅକୁ ମାଆଠାରୁ, ଭାଇକୁ ଭାଇଠାରୁ, ସ୍ୱାମୀକୁ ସ୍ତ୍ରୀଠାରୁ ଏବଂ ଶେଷରେ ପ୍ରେମିକକୁ ପ୍ରେମିକାଠାରୁ ଅଲଗା କରି ରଖୁଥିବା ଏ ନୃଶଂସ ସୀମାରେଖା ହିଁ ସେମାନଙ୍କର ପ୍ରଥମ ଓ ପ୍ରଧାନ ଶତ୍ରୁ । ସେମାନେ କହନ୍ତି ବୋମା ହୁଏତ ଆମକୁ ଏକା ଥରେ ଶେଷ କରି ଦେବ । ତେଣୁ ତାକୁ ଆମେ ସ୍ୱାଗତ କରିବୁଁ । କିନ୍ତୁ ଏ ସୀମାରେଖା ଆମକୁ ଯୁଗ ଯୁଗ ଧରି ଅଲଗା କରି ରଖୁଛି । ମାଟିଠାରୁ ମମତାକୁ ଦୂରେଇ ଦେଉଛି । ସେ ଯନ୍ତ୍ରଣା ଚିରଦିନର । ତେଣୁ ଅସହ୍ୟ, ତାକୁ ପ୍ରଥମେ ଉଠାଅ । ମଣିଷକୁ ମଣିଷଠାରୁ ଅଲଗା କରୁଥିବା ପାଚେରୀ ଭାଙ୍ଗି ଦିଅ ।

ତାକୁ ପ୍ରଥମେ ବୋମା ମାରି ଉଡ଼େଇ ଦିଅ । ମଣିଷକୁ ନୁହେଁ ।

ସେମିତ ଏକ ପାଚେରୀକୁ ସେଦିନ ଯେଉଁ ଜର୍ମାନ ଜାତି ଭାଙ୍ଗି ଖଣ୍ଡ ଖଣ୍ଡ କରିଦେଲା, ମାଡ଼ି ମକଚି ଧୂଳିରେ ମିଶେଇ ଦେଲା, ସେମାନେ ସମଗ୍ର ମଣିଷ ଜାତି ପାଇଁ ନୂଆ ଆଦର୍ଶର ପଥଟିଏ ଖୋଲିଦେଲେ । ସେମାନେ କହିଲେ ଆମକୁ ଅଲଗା କରିବ କିଏ ? ଆମ ରକ୍ତ ସେଠି ଅଛି, ଏଠି ବି ଅଛି । ଆମ ଭାଷା, ସାହିତ୍ୟ, ଆମ ସଂସ୍କୃତି ଏଠି ଯେମିତି ଅଛି, ସେଠି ବି ସେମିତି ଅଛି । ତେବେ ଅଲଗା ହେବୁ କେମିତି ? କିଏ ଅଲଗା କରିବ ଆମକୁ ? କେମିତି ଅଲଗା ହେବ ? ପାଚେରୀ ଦେଇ ମଣିଷକୁ ଅଲଗା କରି ହେବ ? ତାର ଭାଷା, ସାହିତ୍ୟ ଓ ସଂସ୍କୃତିକୁ ?

ଯେଉଁ ଜାତି ବର୍ଲିନ ପାଚେରୀ ଉଡ଼େଇ ଦେଇ ଛାତିରେ ଛାତି ମିଶେଇ ଦେଲା ସେ ତ ଅନେକ ବୋମା ରଖିଛି । ଗୋଟାଏ ଦୁଇଟା ବୋମାରେ ସମଗ୍ର ପୃଥିବୀର ମଣିଷ ସତ୍ତା ଲୋପ ପାଇବ । ପୃଥିବୀ ଜଡ଼ ପାଲଟି ଯିବ । ଗୋଟାଏ ମୁହୂର୍ତ୍ତରେ ଜୀବନର ମହ ମହ ବାସନାରେ ମହକୁ ଥିବା ପୃଥିବୀ ପୋଡ଼ି ପାଉଁଶ ହୋଇଯିବ । ସେମାନେ ଆଜି କହୁଛନ୍ତି ପୃଥିବୀରେ ଆଉ ବୋମାର ଆବଶ୍ୟକତା ନାହିଁ- ହୃଦୟର ଆବଶ୍ୟକତା ଅଛି । ଅସ୍ତ୍ରର ଆବଶ୍ୟକତା ନାହିଁ- ପ୍ରେମର ଆବଶ୍ୟକତା ଅଛି । ସେ ଜାତି ଆଜି କହୁଛି ବୋମାର ଚିରନ୍ତନ ମୃତ୍ୟୁ ହେଉ । ଏକବିଂଶ ଶତାବ୍ଦୀ ଶାନ୍ତି ଓ ପ୍ରୀତିର ଶତାବ୍ଦୀ ହେଉ ।

ସୀମାରେଖାର ମଣିଷମାନଙ୍କ ଉପରେ ଯୁଗେ ଯୁଗେ ବହୁ ସାହିତ୍ୟ ଲେଖା ଯାଇଛି ଏବଂ ଏବେ ମଧ୍ୟ ଲେଖା ଯାଉଛି । ସେମାନଙ୍କ ଦୁଃଖ, ଯନ୍ତ୍ରଣା, ବିରହ, ବିଚ୍ଛେଦ ସାଧାରଣ ମଣିଷକୁ ଯୁଗେ ଯୁଗେ ଆନ୍ଦୋଳିତ କରିଛି । ସେମାନେ ସମସ୍ତେ ମଣିଷ ଜାତିକୁ ଗୋଟିଏ ବୋଲି ବରାବର କହି ଆସିଛନ୍ତି । ସେ ପାଖର ଦୁଃଖ ଓ ଏ ପାଖର ଦୁଃଖର ସ୍ୱର ଅଲଗା ନୁହେଁ । ସେ ପାଖର ଶୋକର ଭାଷା ଓ ଏ ପାଖର ଶୋକର ଭାଷା ଅଲଗା ହୋଇ ପାରେନା ।

ବାଡ଼, ପାଚେରୀ, ସୀମାରେଖା ଏସବୁ କେବେ ମଣିଷ ପାଇଁ ହୋଇ ନ ଥିଲା । ମଣିଷ ଜନ୍ମରୁ ମୁକ୍ତ । ଉପରେ ଆକାଶ, ତଳେ ମାଟି, ଦିଗ୍‌ବଳୟରୁ ଦିଗ୍‌ବଳୟ ଯାଏ ତାର ଗତି ବିଧି ଓ ସଂଚରଣ, ତାକୁ ରୋଧିବ କିଏ ? ଈଶ୍ୱର ବି କେବେ ମଣିଷ ଚାରିପାଖେ ସୀମାରେଖା ଟାଣିବାକୁ ଚାହିଁ ନାହାନ୍ତି । ସେ ବି କେବେ ତାକୁ ସୀମିତ କରିବାକୁ ଚାହିଁ ନାହାନ୍ତି । ସେ ସବୁ କେବଳ ସ୍ୱେଚ୍ଛାଚାରୀ, ସ୍ୱାର୍ଥବାଦୀ ଶାସକର ସୃଷ୍ଟି । ସେ ସବୁ କେବଳ ଗୋଟାଏ ଅଦ୍ଭୁତ ଖିଆଲର ସୃଷ୍ଟି । ମଣିଷ ଯେତେବେଳେ ମଣିଷର ଆବରଣ ଛାଡ଼ି ପଶୁର କାୟା କକ୍ଷରେ ପ୍ରବେଶ କରେ, ସେ ସେତେବେଳେ ନିଜକୁ ସଂକୁଚିତ କରିଦିଏ । ନିଜକୁ ଛୋଟ କରିଦିଏ । ସେତେବେଳେ ସେ ତା ନିଜ ଚାରିପଟେ ସୀମାରେଖା ତିଆରି କରେ । ନିଜକୁ ସୀମାବଦ୍ଧ କରିଦିଏ । ଏହା ହିଁ ମଣିଷର

ବିଭେଦକାରୀ ଶକ୍ତିର ଇତିହାସ । ତା ସହିତ ସାଧାରଣ ମଣିଷର କୌଣସି ସଂପର୍କ ନ ଥାଏ । ସେ ଏ ସବୁ ମାରପେଞ୍ଚ କଥା ମୋଟେ ଜାଣି ନ ଥାଏ । ଆମେ ସେ ଇତିହାସରୁ କାଣିଚାଏ ବି ଶିଖିଲୁ ନାହିଁ । ଆମ ଭିତରେ ମଣିଷ ମାରିବାର ଏକ ଦୂରନ୍ତ ଲାଳସା ଜାଗି ଉଠିଲା । ଆମେ ବୋମା ଫୁଟେଇ ଦେଲୁଁ ଏବଂ ନିଜକୁ ସର୍ବଶକ୍ତିମାନ୍‌ମାନଙ୍କ ଭିତରେ ଗୋଟିଏ ଭାବି ଗର୍ବରେ ଫାଟି ପଡ଼ିଲୁଁ । ଆତ୍ମ ଅହଂକାରରେ ଉନ୍ମାଦ ହୋଇ ଉଠିଲୁଁ । ସମଗ୍ର ପୃଥିବୀକୁ କରାୟତ୍ତ କଲୁଁ ବୋଲି ମନେ କଲୁଁ ଏବଂ ବଡ଼ ନିର୍ଲଜ୍ଜ ଭାବରେ ଦାବୀ କରି କହିଲୁଁ ଯେ- ''ହେ ପୃଥିବୀ ! ମୁଁ ଯେ ସମଗ୍ର ବିଶ୍ୱକୁ ଧ୍ୱଂସ କରି ଦେଇ ପାରେଁ ସେ କଥା ତମେମାନେ ସ୍ୱୀକାର କର । ମୁଁ ପ୍ରଭୂତ ପ୍ରଳୟଙ୍କରୀ କ୍ଷମତାର ଅଧିକାରୀ ହୋଇ ଥିବାରୁ ତମେମାନେ ଏଣିକି ମୋ ପାଖରେ ମଥାନତ କର ।''

ପୃଥିବୀ ହସିଲା । କହିଲା- କେଡ଼େ ମୂର୍ଖଟାଏ ତୁ ? ସେ ପ୍ରଳୟଙ୍କରୀ ଶକ୍ତି ପ୍ରୟୋଗ ହେଲେ ତୁ ନିଜେ ସେଥିରୁ ବର୍ତ୍ତିଯାଇ ପାରିବୁ କି ? ସେ ଧ୍ୱଂସକାରୀ ଶକ୍ତି ତୋତେ ମଧ ଜାଳି ପୋଡ଼ି ପାଉଁଶ କରିଦେବ । ତୁ କ'ଣ ଏ କଥା ଜାଣି ନାହୁଁ । ମଣିଷ ମନ ଭିତରେ ଯେତେବେଳେ ଅନିଷ୍ଟକାରୀ ଚିନ୍ତାଟିଏ ଜନ୍ମନିଏ, ସେ ସେଥିରେ ନିଜେ ପ୍ରଥମେ ଧ୍ୱଂସ ହୋଇଥାଏ । ପରମାଣୁ ବୋମାଟିଏ ସବୁ ଅନିଷ୍ଟକାରୀ ପରମାଣୁରେ ତିଆରି ହେଇଥିବାରୁ ତାହା ସମଗ୍ର ମଣିଷ ଜାତିକୁ ଧ୍ୱଂସ କରିବ ହିଁ କରିବ ।

ଆମେ କାହିଁକି ବୋମା ଫୁଟେଇଲୁଁ ? କି ଆବଶ୍ୟକତା ଥିଲା ତା'ର ? ଏପରି କେଉଁ ପ୍ରଚ୍ଛନ୍ନ କାରଣ ରହିଥିଲା ଯେ, ଯୋଉଁଥି ପାଇଁ ଆଉ ସବୁ କାମକୁ ପଛକୁ ପକେଇ ଆମେ ସେଇଟିକୁ ଫୁଟେଇ ପକେଇଲୁଁ । ଆତ୍ମରକ୍ଷା ପାଇଁ ? ଏ ଯୁଗର ଯୁଦ୍ଧରେ କିଏ ମରେ, କିଏ ବଞ୍ଚେ ? ଏହା ଏକ ଅବାନ୍ତର ପ୍ରଶ୍ନ । ଏବେ ଯେଉଁ ଯୁଦ୍ଧଟି ହେବ ସେଥିରେ ଯିଏ ମରିବ ସିଏ ତ ଯିବ, କିନ୍ତୁ ଯେ ଦୈବାତ ବଞ୍ଚିଯିବ ସେ ତ ବରାବର ମୃତ୍ୟୁ ଯନ୍ତ୍ରଣା ହିଁ ଭୋଗୁଥିବ । ତା'ର ଆଉ ବଞ୍ଚିବାରେ କ'ଣ ଥାଏ ? ଜୀବନର କି ସ୍ୱାଦ ସେ ପାଇବ ଯେ ? ଯାହା ହେଇଛି ହୀରୋସୀମାରେ, ଏ କଥା କଅଣ ଆମେ ଜାଣିନୁଁ ?

ତେବେ କାହିଁକି ଏ ବିସ୍ଫୋରଣ ? କାହିଁକି ଏ ଆସ୍ଫାଳନ ? ରାଜନୀତିର ପଶାପାଲିରେ ଚତୁର ଗୋଟି ଚାଳନା ପାଇଁ ? ଆମର ୭୫ ଭାଗ ଦାରିଦ୍ର୍ୟ ଲୁଚେଇବା ପାଇଁ ? ଆମର ଅନାହାରଜନିତ ମୃତ୍ୟୁକୁ ଘୋଡ଼େଇବା ପାଇଁ ? ୩୦ କୋଟି ବେକାରଙ୍କ ଆତୁର ଦୃଷ୍ଟିକୁ ଏଡ଼ାଇବା ପାଇଁ ? ଦ୍ରୁତ ଖସୁଥିବା ଅର୍ଥନୀତିକୁ ଢ଼ାଙ୍କିବା ପାଇଁ ? ଆମର ଜାତୀୟ ଆୟ ଏବେ ୫ ପରସେଣ୍ଟକୁ ଖସି ଆସିଲାଣି । କୃଷି ଉତ୍ପାଦନ ୩.୭ କୁ ଖସିଛି । ଶିଳ୍ପ ଉତ୍ପାଦନ ଏବେ ଖସି ମାତ୍ର ୪.୨ରେ ପହଞ୍ଚିଲାଣି । ଆଉ ମୁଦ୍ରାସ୍ଫୀତି ? ଏବେ ୮.୩କୁ ଛୁଇଁ ସାରିଲାଣି । ବୈଦେଶିକ ବାଣିଜ୍ୟରେ ତ ଅବସ୍ଥା ଆହୁରି ଖରାପ । ରପ୍ତାନୀ ୩୪.୦୦ ରେ ଥିଲା ବେଳେ ଆମଦାନୀ ୪୦.୮ରେ ଅଛି । ତେଣୁ କାହାକୁ ଢ଼ାଙ୍କି ହେବ ? କାହା ଆଖିରୁ ଏ ସବୁକୁ ଏଡ଼େଇ ଦେଇ ହେବ ? ତେବେ ଏ ବିସ୍ଫୋରଣ କୋଉ କାମରେ ଲାଗିବ ?

ଭାରତ ଆଗରେ ଆଉ ଏକ ବଡ଼ ପ୍ରଶ୍ନ ତାର ଦ୍ରୁତ ସାଂସ୍କୃତିକ ଅବକ୍ଷୟ, ଯାହା ଆମର ପରିଚୟକୁ ପୂରା ନଷ୍ଟ କରି ଦେଲାଣି । ଏବେ ଅବସ୍ଥା ଏପରି ହେଲାଣି ଯେ, ନିଜେ ବି ନିଜକୁ ଚିହ୍ନି ହେଉ ନାହିଁ । ମୁଁ କିଏ, କଅଣ ? କୋଉଠି ଓ କାହିଁକି ବୋଲି ପ୍ରଶ୍ନ ଆସିଲାଣି । ଏ ସବୁ ପ୍ରଶ୍ନ ନିଜକୁ ପଚାରିବାକୁ ପଡୁଛି । ଉତ୍ତର କେହି ଦେବାକୁ ନାହିଁ, ଏ କଥା ଆମେ ଜାଣୁଁ । ଏ ବିସ୍ଫୋରଣ ପାରିବ ରୋକି ଏ ପ୍ରବହମାନ ଅପସଂସ୍କୃତିର ସ୍ରୋତକୁ ? ବାଧା ଦେଇ ପାରିବ ତାର ବେଗକୁ ? କେବଳ ଦେଶରକ୍ଷାର ଖର୍ଚ୍ଚ ଏବେ ୪୦ ହଜାର କୋଟିରେ ପହଞ୍ଚିଲାଣି । ବିସ୍ଫୋରଣର ଖର୍ଚ୍ଚ ଯାହା ବିଜ୍ଞାନ ଓ କାରିଗରୀ ଏବଂ ମହାକାଶ ଗବେଷଣା ବିଭାଗରେ ଅଛି ସେଥିରେ ଆଉ ୧୦ ହଜାର କୋଟି କି ତା'ଠୁ ବି ବେଶି ଥିବ । ସବୁ ମିଶିଲେ ମୋଟ ଜାତୀୟ ଆୟର କେତେ ଭାଗ ହେବ ସେ ହିସାବ ମୋ ପାଖରେ ନାହିଁ । ତେବେ ଏଇ ଟଙ୍କାରେ କେତେଟା ଇସ୍ପାତ କାରଖାନା କି କେତେଟା ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ର ହେଇ ପାରିବ ସେ କଥା ଏବେ ଦେଖି ନିଅନ୍ତୁ । ମୁଣ୍ଡ ଉପରେ ତ ଏକଲକ୍ଷ କୋଟିର ଋଣ ଭାର ଖଣ୍ଡା ଆକାରରେ ଝୁଲୁଛି । ତାର ଓଜନ ତ ପ୍ରତିଦିନ ବଢ଼ି ବଢ଼ି ଚାଲିଛି । ମୁକ୍ତି ମିଳିବ ଏ ବିସ୍ଫୋରଣ ଦ୍ୱାରା ?

ତେବେ ଏ ଧମାକା କଅଣ ପାଇଁ ? ଲୁଚେଇ ହେବ ଆମ ଭିତରେ ନୂଆ ନୂଆ ରୂପରେ ନୂଆ ନୂଆ ରଙ୍ଗରେ ଆତ୍ମ ପ୍ରକାଶ କରୁଥିବା ବିଭେଦକୁ ? ଜାତି, ଅଞ୍ଚଳ, ଭାଷା, ସଂପ୍ରଦାୟ ଏ ସବୁ ଭେଦଭାବକୁ କୋଉଠି ଢାଙ୍କି ହେବ ? କେମିତି ହେବ ? ପ୍ରତିଦିନ ପ୍ରତି ମୂହୂର୍ତ୍ତରେ ତ ଆମକୁ ଭାଗ ଭାଗ କରା ଯାଉଛି । କୋଉଟା ବେଶି ଭୟଙ୍କର ? ଭେଦଭାବର ଚିନ୍ତନ ଯାହା ଆମର ସମାଜ, ଆମର ଗୋଷ୍ଠି ବ୍ୟବସ୍ଥାକୁ ଭିତରୁ ଭିତରୁ କୋରି ପକାଉଛି, ନା ପରମାଣୁର ବିସ୍ଫୋରଣ ? କେମିତି ଲଢ଼ି ହେବ ଏ ଭୋକିଲା, ନିରନ୍ନ, ଦୁର୍ବଳ, ସ୍ୱାସ୍ଥ୍ୟହୀନ ଏବଂ ସର୍ବୋପରି ମାତ୍ର ୫୨ ପରସେଣ୍ଟର ସାକ୍ଷରତାର ଦେଶଟାକୁ ନେଇ ? କେତେଦିନ ଲଢ଼ିହେବ ? ଗୋଟାଏ ଦିନ ବି ତ ହେବ ନାହିଁ । ଆମ ଦେଶ ତ ଭିଏତ୍‌ନାମ ନୁହେଁ । ୧୭ ବର୍ଷ ଯୁଦ୍ଧ କଲେ ମଧ ପଇସାଟିଏ ଦରବୃଦ୍ଧି ହେଲା ନାହିଁ । ଆଉ ବାଂଲାଦେଶ ସହିତ ମାତ୍ର ୧୭ ଦିନ ଯୁଦ୍ଧ କଲୁଁ ଯେ ରିଫ୍ୟୁଜି ଟେକ୍ସ ସାତ ବର୍ଷ କାଳ ଆମକୁ ଶୋଷିଲା । ଆହୁରି ବାକି ଅଛି ଶୋଷିବାକୁ ?

ଏ ପ୍ରହସନ ବନ୍ଦ ହେଉ, ସାରା ପୃଥିବୀରେ ବନ୍ଦ ହେଉ । ମାରଣାସ୍ତ୍ର କେବେ କାହାକୁ ଶାନ୍ତିରେ ରଖେଇ ଦିଏନା । ମାରଣାସ୍ତ୍ର କେବଳ ଭୀତି ପ୍ରଦର୍ଶନ କରେ । ଉତ୍ତେଜନା ସୃଷ୍ଟି କରେ । ଭୀତି ଓ ଉତ୍ତେଜନା ଶାନ୍ତି ଓ ମୈତ୍ରୀର ପରିପନ୍ଥୀ ।

ବୁଦ୍ଧ, ଯୀଶୁ ଓ ମହମ୍ମଦ କେହି ଧ୍ୱଂସର କଥା କହି ନାହାନ୍ତି । ଭଗବାନ ଶ୍ରୀକୃଷ୍ଣ ବି ନୁହେଁ । ସମସ୍ତେ ସୃଷ୍ଟିର କଥା କହିଛନ୍ତି । ସମଗ୍ର ପୃଥିବୀ ସେଇ ଗୋଟିଏ କଥା କହୁ- ଶାନ୍ତିର କଥା, ମୁକ୍ତିର କଥା । ଯୁଦ୍ଧ ଯଦି କରିବାକୁ ହୁଏ ତେବେ ଦାରିଦ୍ର୍ୟ ବିରୁଦ୍ଧରେ, ଅନ୍ୟାୟ, ଅତ୍ୟାଚାର ଓ ଶୋଷଣ ବିରୁଦ୍ଧରେ ଯୁଦ୍ଧ ହେଉ । ସମସ୍ତ ଶକ୍ତି ସେଥିରେ ନିୟୋଜିତ ହେଉ । ଆମେ ତା ପଛରେ ଅଛୁଁ ଏବଂ ରହିବୁଁ ମଧ । ❑

(ଅନୁପମ ଭାରତ -୬.୬.୧୯୯୮)

# ଉଦୟଗିରିରେ ସୂର୍ଯ୍ୟୋଦୟ

ଏବେ ଏବେ ଆର୍.ଉଦୟଗିରିରେ ଘଟିଥିବା ହିଂସାକାଣ୍ଡ ଖାଲି ଓଡ଼ିଶାରେ ନୁହେଁ ପଡ଼ୋଶୀ ରାଜ୍ୟ ଆନ୍ଧ୍ରର ପ୍ରଶାସନରେ ମଧ୍ୟ ପ୍ରକମ୍ପ ସୃଷ୍ଟ କରିଛି । ଯୁଗଯୁଗ ଧରି ଉଚ୍ଚବର୍ଗର ବଡ଼ପଣ୍ଡାମାନେ ଏବଂ ସେମାନଙ୍କ ସହିତ ସାମିଲ୍ ହୋଇଥିବା ସରକାରୀ କର୍ମଚାରୀମାନଙ୍କ ଦ୍ୱାରା ଶୋଷିତ ହେଉଥିବା ଆଦିବାସୀମାନେ ଯେତେବେଳେ ଦେଖିଲେ ଯେ ଅନ୍ୟାୟ ଓ ଅତ୍ୟାଚାର ଶେଷ ସୀମାରେ ପହଞ୍ଚିଲାଣି, ସେତେବେଳେ ସେମାନେ ବାଧ୍ୟ ହୋଇ ଆଇନ୍‌କୁ ହାତକୁ ନେଇ ଗଲେ । ସେମାନେ ଜେଲ୍‌ର ଅନ୍ଧାରୀ ଗୁହା ଭିତରକୁ ପଶିଗଲେ । କୋଠରୀଗୁଡ଼ିକର ଲୁହା କବାଟ ଭାଙ୍ଗି ପକାଇଲେ । କଏଦୀମାନଙ୍କୁ ଖଲାସ କରି ଦେଲେ । ସେମାନଙ୍କ ଉପରେ ଅତ୍ୟାଚାର କରି ପରେ ପୁଲିସର ସୁରକ୍ଷିତ ସେଲ୍ ଭିତରେ ଥିବା ଅପରାଧୀମାନଙ୍କୁ ବାହାରକୁ ଟାଣି ଆଣି ସମସ୍ତଙ୍କ ସମ୍ମୁଖରେ ନିଆଁ ଲଗାଇ ପୋଡ଼ି ଦେଲେ ଏବଂ ଅନ୍ୟ କେତେଜଣଙ୍କୁ ଦିବାଲୋକରେ ହତ୍ୟାକଲେ ।

ସେମାନେ ଭାବିଲେ କ'ଣ ଜଙ୍ଗଲ ଓ ପାହାଡ଼ର ପାଦ ତଳେ ବାସ କରୁଥିବା ଏହି ନିରୀହ ଆଦିବାସୀମାନେ କେବେ ହେଲେ ରାଷ୍ଟ୍ରଠାରୁ ନ୍ୟାୟ ପାଇ ପାରିବେ ନାହିଁ ? ଗୋଟାଏ ଗଣତନ୍ତ୍ରର ସରକାର କେବେହେଲେ ସେମାନଙ୍କୁ ସୁରକ୍ଷା ଯୋଗାଇ ପାରିବ ନାହିଁ ? ଆଇନ୍‌ର ଶାସନ ସେଠି କେବଳ ଗୋଟାଏ ଦିବାସ୍ୱପ୍ନ । ସରକାର ନିଜେ ଯେଉଁଠି ଗୋଟାଏ ଅତ୍ୟାଧୁନିକ ଶୋଷଣ ଯନ୍ତ୍ରରେ ପରିଣତ ହୋଇ ଯାଏ, ରାଜନୀତି ଯେଉଁଠି କେବଳ ପ୍ରବଞ୍ଚନାରେ ରୂପାନ୍ତରିତ ହୁଏ ଏବଂ ଆଇନ୍ ଯେଉଁଠି କେବଳ ସରକାରୀ କଳ ଏବଂ ରାଜନେତାର ପଣାପାଲିରେ ପରିଣତ ହୁଏ ଏବଂ ପ୍ରତି ମୁହୂର୍ତ୍ତରେ ତା'ର ବିରାଟ ପାଟିର ଆଁ ଭିତରେ ସମଗ୍ର ଜନସତ୍ତାକୁ ଗିଳି ଦେବାକୁ ଚେଷ୍ଟାକରେ ସେଠି ସେମାନେ ଆଉ କାହାଠୁ ବା ନ୍ୟାୟ ପାଇ ପାରିବେ ?

ସେପରି ଅବସ୍ଥାରେ ଜନତା ନିଜର ସୁରକ୍ଷା ପାଇଁ ନିଜେ ରାସ୍ତାକୁ ବାହାରି ଆସେ । ସେତେବେଳେ ସେ ଆଉ କାହାକୁ ଖାତିର୍ କରେନା । ଆଇନ୍ ଓ ଶାସନ ସମସ୍ତଙ୍କୁ ସେ ପଛକୁ ପକେଇ ଦିଏ । ଦୟା, କ୍ଷମା, ନୀତି, ଆଦର୍ଶ ଇତ୍ୟାଦି ସବୁ ମାନବିକ ଗୁଣକୁ ସେ ତୁରନ୍ତ ପାଶୋରି ପକାଏ । ନିଜର ଅସ୍ତିତ୍ୱ ବଜାୟ ରଖିବା ତା ଆଗରେ ଏକ ବିରାଟ ପ୍ରଶ୍ନ ହୋଇଉଠେ । ସେ ଯେତେବେଳେ ଦେଖେ ତା'ର ଚାରିପାର୍ଶ୍ୱରେ କେହି ସାହା ଭରସା ନାହିଁ, ଆହା ପଦେ ମଧ୍ୟ କେହି କହିବାକୁ ନାହିଁ-

ସେତେବେଳେ ସେ ତା'ର ସବୁ ବୁଦ୍ଧି ବୃତ୍ତି ହରେଇ ବସେ । ସମଗ୍ର ପୃଥିବୀରେ ସେ ସେତେବେଳେ ନିଜ ଛଡ଼ା ଆଉ କାହାକୁ ଦେଖେ ନାହିଁ । ସେ ସେତେବେଳେ କେବଳ ଗୋଟିଏ କଥା ଭାବେ- ବରାବର ତିଳ ତିଳ ହୋଇ କାପୁରୁଷ ପରି ମରିବା ଅପେକ୍ଷା ବୀର ପରି ଏକାଥରେ ମରିବା ଶ୍ରେୟ ।

ମଣିଷ ମନର ଏହା ଏକ ସ୍ୱାଭାବିକ ପ୍ରକ୍ରିୟା । ସେ ପ୍ରକ୍ରିୟା ଚିରନ୍ତନ ତାହା ଆଜି ସୃଷ୍ଟି ହୋଇନାହିଁ । କୋଉ ଆଦିମ ଯୁଗରୁ ତାହା ମଣିଷ ମନର ଅନ୍ଧାରୀ ଗୁହା ଭିତରେ ଚେର ମାଡ଼ି ରହି ଆସୁଛି ଏବଂ ସମୟକ୍ରମେ ତାକୁ ତା'ର ଅସ୍ତିତ୍ୱ ଜାହିର୍ କରିବାକୁ ପ୍ରେରଣା ଯୋଗାଇ ଆସୁଛି ।

ମଣିଷକୁ ବଞ୍ଚିବାକୁ ପଡ଼ିବ । ବଞ୍ଚିବା ପାଇଁ ତା'ର ଯାହା ଯାହା ଆବଶ୍ୟକ ସେଥିପାଇଁ ଓ ତା'ର ଦଖଲ ଭୋଗ ପାଇଁ ତାକୁ ଅହରହ ସଂଗ୍ରାମ କରିବାକୁ ପଡ଼େ । ସେ ସଂଗ୍ରାମର ପଥ ଯେତେ ପିଚ୍ଛିଳ ହେଉ ପଛକେ, ଯେତେ କଣ୍ଟକିତ ହେଉ ପଛକେ ସେ ତାକୁ ଭୟ କରି ପଛେଇ ଯାଏ ନାହିଁ । ତେଣୁ ସବୁବେଳେ ସବୁ ସମୟରେ ବଞ୍ଚିବା ପାଇଁ ସଂଗ୍ରାମର ପଥକୁ ସମାଜ ସ୍ୱୀକୃତି ଦେଇ ଆସିଛି ଏବଂ ମଣିଷ ମଧ ତାକୁ ଯୁଗେ ଯୁଗେ ଏକ ଅଘୋଷିତ ଅଧିକାର ଭାବେ ବାଛି ନେଇଛି । ସେଠି ହିଂସା ଅହିସାଂର ପ୍ରଶ୍ନ ନ ଥାଏ । ନ୍ୟାୟ ଅନ୍ୟାୟର ବାଛ ବିଚାର ନ ଥାଏ ।

ଆର.ଉଦୟଗିରିର ପାର୍ବତ୍ୟ ଉପତ୍ୟକାରେ ଘଟିଥିବା ହିଂସାକୁ ଏଇ ଦୃଷ୍ଟିରୁ ବିଚାର କରା ଯାଇ ପାରେ । ପ୍ରଶାସନିକ ଭାଷାରେ ତାକୁ ନକ୍ସଲ ଆନ୍ଦୋଳନ କୁହା ଯାଇ ପାରେ, ପୁଲିସ୍ ଭାଷାରେ ତାକୁ ସାଂଘାତିକ ହିଂସାକାଣ୍ଡ କୁହା ଯାଇ ପାରେ, ରାଜନୈତିକ ଭାଷାରେ ତାକୁ ପ୍ରଶାସନିକ ବିଫଳତା ବା ଆଉ କିଛି କୁହା ଯାଇ ପାରେ । କିନ୍ତୁ ତାହା ଯେ ଲଗାତାର ଅତ୍ୟାଚାର ବିରୁଦ୍ଧରେ ଅସନ୍ତୋଷର ଏକ ସ୍ୱତଃସ୍ଫୂର୍ତ୍ତ ଉଦ୍‌ଗୀରଣ- ଏଥିରେ ସନ୍ଦେହ ନାହିଁ । ତା ପଛରେ ନକ୍ସଲମାନେ ଥାଆନ୍ତୁ କି ନ ଥାଆନ୍ତୁ । ସେ ଆନ୍ଦୋଳନକୁ କେହି ବ୍ୟକ୍ତି ବିଶେଷ ବା ଅନୁଷ୍ଠାନ ପ୍ରୋତ୍ସାହିତ କରି ଥାଉ ବା ନ କରି ଥାଉ ତାହା ଏକ ଭିନ୍ନ ପ୍ରଶ୍ନ ।

ବନ୍ୟା ଯେତେବେଳେ ପ୍ରବଳ ହୁଏ, ସେତେବେଳେ ସେ କୂଳ ଲଂଘିବାକୁ ବାଧ୍ୟ । ଝଡ଼ ଯେତେବେଳେ ପ୍ରବଳ ପରାକ୍ରମରେ ମାଡ଼ି ଆସେ ସେତେବେଳେ ତାହା ପ୍ରଳୟର ସୂଚନା ଦିଏ, ତାକୁ ସେତେବେଳେ ରୋକିବା ମୋଟେ ସମ୍ଭବ ନୁହେଁ । ସେମିତି ପୁଞ୍ଜିଭୂତ ଜନ ଅସନ୍ତୋଷ କାହାର ପ୍ରରୋଚନାକୁ ଅପେକ୍ଷା ରଖେ ନାହିଁ । ତାହା ଆପେ ଆପେ ମାଡ଼ି ଯାଏ । ଆଇନ୍ ଓ ଶୃଙ୍ଖଳା ସେତେବେଳେ ତା ଆଗରେ ତୁଚ୍ଛ ହୋଇ ଯାଏ ।

ଉଦୟଗିରିର ଏଇ ଅଭ୍ୟୁଦୟକୁ ଏବେ ସରକାରୀ ମହଲ ବିଭିନ୍ନ ଦୃଷ୍ଟିରୁ ବିଚାର କରିବାକୁ ଆରମ୍ଭ କରି ଛନ୍ତି । ବିଧାନସଭାରେ ଉତ୍ତେଜନା ପ୍ରକାଶ ପାଇଛି । ସେମାନେ

ଆଲୋଚନା ବେଳେ ନବ ଉନ୍ମେଷକୁ ସରକାରୀ ବିଫଳତା ବୋଲି ଅଭିହିତ କରିଛନ୍ତି । ସରକାର ମଧ ମୋଟାମୋଟି ଏ ଅଭିଯୋଗକୁ ସ୍ୱୀକାର କରିଛନ୍ତି । କିନ୍ତୁ ସମ୍ବାଦପତ୍ରମାନେ ଘଟଣାକୁ ରାଜନୈତିକ ବିଫଳତା ସହିତ ପ୍ରଶାସନିକ ବିଫଳତା ବୋଲି କହିଛନ୍ତି । ଆମେ କିନ୍ତୁ ଏସବୁ ଶବ୍ଦର ଇନ୍ଦ୍ରଜାଲ ଭିତରେ ପଶିବାକୁ ଚାହୁଁନା । ସରକାରୀ ସମର୍ଥନରେ ଚାଲି ଆସୁଥିବା ଦୀର୍ଘଦିନର ଅତ୍ୟାଚାର ହିଁ ଏସବୁ ଅସନ୍ତୋଷର ମୂଳ କାରଣ ବୋଲି ଆମର ଦୃଢ଼ ମତ ।

କାରଣ- ସରକାରଙ୍କର ସାଧାରଣ ନୀତି ହେଲା ଅସାଧୁ ଅଫିସର୍ ତଥା କର୍ମଚାରୀମାନଙ୍କୁ ସେ ସବୁ ଦୁର୍ଗମ ଅଞ୍ଚଳକୁ ପଠାଇବା । ସରକାରଙ୍କର ତଥାକଥିତ 'ଭଲଲୋକ'ମାନେ ସବୁବେଳେ ମନ୍ତ୍ରୀ ଓ ସେମାନଙ୍କ ପ୍ରିୟଜନଙ୍କ ଚାରିପାଖେ ସୃଷ୍ଟି ହୋଇଥିବା ଦୁର୍ଭେଦ୍ୟ ଦୁର୍ଗ ଭିତରେ ରହିବାର ସୌଭାଗ୍ୟ ଅର୍ଜନ କରି ଥାଆନ୍ତି । ସେମାନେ କେବେହେଲେ ପାହାଡ଼ ଜଙ୍ଗଲରେ ଥିବା ଅସଭ୍ୟ ଅନାର୍ଯ୍ୟ ଲୋକଙ୍କ ପାଖକୁ ଯିବାର କିମ୍ବା ସେ ଅସ୍ୱାସ୍ଥ୍ୟକର ପରିବେଶକୁ ଯିବାର ଆବଶ୍ୟକତା ଅନୁଭବ କରି ନାହାଁନ୍ତି । ସେମାନଙ୍କ ଚାକିରି କାଳ ଭିତରେ ଏ ପ୍ରକାର ସର୍ଭିସ୍ କଣ୍ଡିସନ୍‌କୁ ସାମ୍ନା କରିବାର ଆବଶ୍ୟକତା କେବେ ଅନୁଭବ କରି ନ ଥାଆନ୍ତି । ତେଣୁ ସରକାର ମନେ କରନ୍ତି ଅସାଧୁମାନଙ୍କୁ ସେ ଦୁର୍ଗମ ଅଞ୍ଚଳକୁ ଠେଲି ଦେଲେ ଅଳ୍ପଦିନ ଭିତରେ ସେମାନଙ୍କ ଭିତରେ ସାଧୁତାର ପରି ପ୍ରକାଶ ଘଟିବ । କିନ୍ତୁ ସେ କଥା ହୁଏନାହିଁ । ଅସାଧୁମାନେ, ସେମାନେ ପୁଲିସ୍ ହୁଅନ୍ତୁ ବା ଅନ୍ୟ ପ୍ରଶାସନିକ ଅଫିସର ହୁଅନ୍ତୁ ପାର୍ବତ୍ୟ ଇଲାକାରେ ନିରୀହ ତଥା ଶିକ୍ଷାଠାରୁ ଦୂରରେ ଥିବା ଆଦିବାସୀମାନଙ୍କ ପାଇଁ ଆସୁଥିବା କୋଟି କୋଟି ଟଙ୍କାର ଲୋଭକୁ ମୁର୍ଚ୍ଛି ପାରେନି ନାହିଁ । ସମଗ୍ର ଶାସନ କଳ ଏଥିରେ ଅଭ୍ୟସ୍ତ । ଏ ବିଷୟରେ ବହୁ ଅଫିସର ଅତ୍ୟନ୍ତ ଉଦାର । ଯେଉଁମାନଙ୍କର ଝିଅ ବାହାଘର କରିବାର ଥାଏ କିମ୍ବା ଅବସର ସମୟ ଆସିଲାଣି ଅଥଚ କୌଣସି ସହରରେ ଘରଟିଏ ନାହିଁ ତେବେ ତାଙ୍କୁ 'ହ୍ୟୁମାନିଟେରିଆନ୍ ଗ୍ରାଉଣ୍ଡ'ରେ ଆଦିବାସୀ ଇଲାକାକୁ ବଦଳି କରିଦେଲେ ସେମାନେ ଏକ ମହାନ୍ ତଥା ପବିତ୍ରତମ କାମଟିଏ କଲେ ବୋଲି ମନେ କରନ୍ତି । ବାସ୍, ରାସ୍ତା ସାଫ୍ ହୋଇଯାଏ । ଦୁର୍ନୀତିର ଅସ୍ଥିମଜ୍ଜାରେ ଗଢ଼ିଥିବା ଏହି କର୍ମଚାରୀମାନେ ବିଭିନ୍ନ ଉପାୟରେ ଲୋକମାନଙ୍କୁ ଅନ୍ୟ ସମସ୍ତଙ୍କ ଆଖି ସାମ୍ନାରେ ଶୋଷଣ କରିବାରେ ଲାଗି ପଡ଼ନ୍ତି । ସେମାନଙ୍କର ଆଉ ଭୟ କାହାକୁ ? ସେମାନେ ତ ଉପରୁ ଲାଇସେନ୍ସଟିଏ ହାସଲ କରି ସାରିଛନ୍ତି । ତେଣୁ ଶୋଷଣର ଜାଲ ବିଛେଇବାକୁ ସେମାନଙ୍କୁ ମୋଟେ ଡେରି ହୁଏନାହିଁ । ସ୍ଥାନୀୟ ସାହୁକାର ଏବଂ ସେମାନଙ୍କ ଦ୍ୱାରା ପ୍ରତିପାଳିତ ଗୁଣ୍ଡାମାନଙ୍କ ଠାରୁ ଆରମ୍ଭ କରି ସ୍ଥାନୀୟ ଲୋକ ପ୍ରତିନିଧିମାନେ ମଧ ସେମାନଙ୍କୁ ସବୁପ୍ରକାର ସାହାଯ୍ୟ ଯୋଗାଇ ଦିଅନ୍ତି ।

ଆମର ଦୁର୍ଭାଗ୍ୟ ଯେ ଏହି ଲୋକ ପ୍ରତିନିଧିମାନେ ମଧ୍ୟ ସବୁବେଳେ ଏହି ଶୋଷଣ ପ୍ରକ୍ରିୟାକୁ ସାହାଯ୍ୟ କରି ଆସନ୍ତି । ଲୋକ ପ୍ରତିନିଧିମାନେ ଦୁର୍ନୀତିର ବଳୟରେ ବଢ଼ିଥିବା ଭୋଟ୍ ଯନ୍ତ୍ରରୁ ସୃଷ୍ଟି ହୋଇଥିବାରୁ ଦୁର୍ନୀତିର ପକ୍ଷ ନେବା ଏକ ସ୍ୱାଭାବିକ୍ କଥା । ତେଣୁ ଗୋଟିଏ ଦିଗରେ ପ୍ରଶାସନିକ ଅସାଧୁତା ଏବଂ ଅବହେଳା ଲୋକଙ୍କୁ ଦୁଃଖ ଓ ନିର୍ଯାତନାର ଅତଳ ଗହ୍ୱର ଭିତରକୁ ଠେଲି ଦେଉଥିଲା ବେଳେ ସ୍ଥାନୀୟ ଲୋକ ପ୍ରତିନିଧିମାନେ ମଧ୍ୟ କେବେହେଲେ ଲୋକଙ୍କ ଭିତରେ ସେମାନଙ୍କ ବଞ୍ଚିବାର ମୌଳିକ ଅଧିକାର ବିଷୟରେ ସଚେତନତା ସୃଷ୍ଟି କରିବାକୁ ଚେଷ୍ଟା କରନ୍ତି ନାହିଁ । ଭୋଟ୍ ପରେ ସେମାନେ ଅନ୍ୟ ସବୁ ସ୍ୱାର୍ଥବାଦୀ ଲୋକ ପ୍ରତିନିଧିଙ୍କ ପରି ଲୋକଙ୍କ ଠାରୁ ଦୂରେଇ ରହନ୍ତି ।

ସୁଖର କଥା ଆମ ମୁଖ୍ୟମନ୍ତ୍ରୀ ଏବେ ଏସବୁ ବାସ୍ତବ ଘଟଣାଗୁଡ଼ିକ ଭଲ ଭାବରେ ବୁଝିଛନ୍ତି ବୋଲି ମନେହୁଏ । ସେ କହିଛନ୍ତି ଯେ 'ପ୍ରଶାସନ ଏଥିପାଇଁ ପ୍ରତିହିଂସା ପରାୟଣ ହେବନାହିଁ କି ଆଦିବାସୀମାନଙ୍କ ଉପରେ ଜୋର୍ ଜୁଲମ ମଧ୍ୟ କରିବ ନାହିଁ, ସେ ଏକଥା ମଧ୍ୟ କହିଛନ୍ତି ଯେ ''ଲୋକଙ୍କ ପ୍ରକୃତ ସମସ୍ୟାର ସମାଧାନ ପାଇଁ ସରକାର ସବୁମତେ ଚେଷ୍ଟା କରିବେ ।'' ଯଦି ଏହା ତାଙ୍କର ଆନ୍ତରିକ ଇଚ୍ଛା ହୋଇଥାଏ, ତେବେ ଏ ନବବର୍ଷରେ ସେ ହେବ ପ୍ରଥମ ଅନନ୍ଦିତ ବ୍ୟକ୍ତି । ଗୋଟାଏ ୱେଲ୍‌ଫେଆର୍ ଷ୍ଟେଟ୍‌ରେ ଲୋକଙ୍କୁ ସବୁପ୍ରକାର ସୁଖ ସୁବିଧା ଯୋଗାଇ ଦେବାରେ, ଆଇନ୍‌ର ଶାସନ ପ୍ରତିଷ୍ଠା କରିବାରେ, ପ୍ରଶାସନର ଗୋଟାଏ ବିରାଟ ଭୂମିକା ରହିଛି । ଏହାକୁ ଅସ୍ୱୀକାର କରିହେବ ନାହିଁ । ସେମାନଙ୍କ ଦାୟିତ୍ୱ ଓ କର୍ତ୍ତବ୍ୟକୁ ପୁରୋଭାଗରେ ରଖିବାକୁ ହେବ । ପ୍ରଶାସନରେ ସାଧୁ ତଥା କର୍ତ୍ତବ୍ୟ ପରାୟଣ ଲୋକଙ୍କ ଅଭାବ ନାହିଁ । ମୁଁ ଏକଥା ଦୃଢ଼ ଭାବରେ କହି ପାରିବି ଯେ ଯଦି ଉପରସ୍ତରରେ ଅସାଧୁତା ନ ଥାଏ ତେବେ ତା'ର ଚେର ତଳ ସ୍ତରକୁ କେବେହେଲେ ଯାଇ ପାରିବ ନାହିଁ । ଜଣେ ପୁଲିସ୍ ମୁଖ୍ୟ କିମ୍ବା ଜଣେ ଜିଲ୍ଲା ମୁଖ୍ୟ ଯଦି ପ୍ରକୃତରେ ଲୋକଙ୍କ ପାଇଁ କାମ କରିବାକୁ ଚାହିଁବେ ତେବେ ତାଙ୍କୁ କେହି ରୋକି ପାରିବେ ନାହିଁ । କିନ୍ତୁ ଆମର ଦୁର୍ଭାଗ୍ୟ, ସେପରି ହୋଇପାରେ ନାହିଁ । ତା'ର କାରଣ ଆଜିକାଲି ଏପରି ହେଲାଣି ଯେ ଜିଲ୍ଲାମାନଙ୍କୁ ପଦାଧିକାରୀମାନେ ମନ୍ତ୍ରୀଙ୍କଠାରୁ ନିଲାମରେ ନେଇ ଥାଆନ୍ତି । ସେମାନଙ୍କ ପାଇଁ ଟାର୍ଗେଟ୍ ଆଗରୁ ଧାର୍ଯ୍ୟ ହୋଇଥାଏ । ମୁଖ୍ୟମନ୍ତ୍ରୀ ଯଦି ପ୍ରକୃତରେ ଲୋକଙ୍କର ମଙ୍ଗଳ ଚାହୁଁଛନ୍ତି ତେବେ ପ୍ରଥମେ କିଛି ସାଧୁ, ସଚ୍ଚୋଟ ତଥା ଦକ୍ଷ ଲୋକଙ୍କୁ ସେଠାକୁ ପଠାନ୍ତୁ । ସେମାନଙ୍କୁ ରାଜନୀତିର ଉର୍ଦ୍ଧ୍ୱରେ ରଖନ୍ତୁ । ସଚ୍ଚା ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କୁ ସବୁପ୍ରକାର ସାହାଯ୍ୟ ଯୋଗାଇ ଦିଅନ୍ତୁ । ସେ ଦେଖନ୍ତୁ ଯୋଜନାର ୧୮ ପଇସା ନୁହେଁ ପୂରା ୧୬ ଅଣା ଲୋକଙ୍କଠାରେ ପହଞ୍ଚୁ ।



(ଅନୁପମ ଭାରତ - ୯.୧.୯୯)

## ଲେଖକଙ୍କର ଅନ୍ୟ କେତୋଟି ପୁସ୍ତକ

| | | |
|---|---|---|
| ୧. | ପୃଥିବୀ ଓ ପୃଥିବୀ | (ଗଳ୍ପ ସଂକଳନ) |
| ୨. | ଗୋଟିଏ ମେଣ୍ଢାପଲ | (ଗଳ୍ପ ସଂକଳନ) |
| ୩. | ପ୍ରମିଳା | (ଗଳ୍ପ ସଂକଳନ) |
| ୪. | ଭାରତ ଭାଗ୍ୟ ବିଧାତା | (ବ୍ୟଙ୍ଗ ଗଳ୍ପ ସଂକଳନ) |
| ୫. | ପ୍ରଥମ ପୃଥିବୀ | (ଉପନ୍ୟାସ) |
| ୬. | ଉପତ୍ୟକାର ଉପକଥା | (ଭ୍ରମଣ କାହାଣୀ) |
| ୭. | ଅପୂର୍ବ ପୂର୍ବ | (ଭ୍ରମଣ କାହାଣୀ) |
| ୮. | ଲୁ ତଥା ଅନ୍ୟ କହାନୀୟା<br>ଅନୁବାଦ - କୁମାର ହସନ ଓ ଡକ୍ଟର(ଶ୍ରୀମତୀ) ବାସନ୍ତୀ ରଥ | (ହିନ୍ଦୀ ଗଳ୍ପ ସଂକଳନ) |
| ୯. | ରବୀନ୍ଦ୍ର ନାଥଙ୍କ ଚର୍ଚ୍ଚିତ ଚିଟାଉ<br>ଅନୁବାଦ - ଅମିୟ ବସୁ ଓ ଭୂପେନ୍ ମହାପାତ୍ର | (ଅନୁବାଦ) |
| ୧୦. | ଖୋଳ | (ଗଳ୍ପ ସଂକଳନ) |
| ୧୧. | ଚନ୍ଦ୍ରସେଣାର ଚନ୍ଦ୍ରାଲୋକ | (ବ୍ୟଙ୍ଗ ଗଳ୍ପ ସଂକଳନ) |

### ଖୁବ ଶିଘ୍ର ପ୍ରକାଶ ପାଉଛି

| | | |
|---|---|---|
| ୧. | ହାତୀର ହିଷ୍ଟ୍ରି | (ଗଳ୍ପ ସଂକଳନ) |
| ୨. | ଏବେ ବି ରେବତୀ ଓ ଅନ୍ୟାନ୍ୟ ଗଳ୍ପ | (ଗଳ୍ପ ସଂକଳନ) |